ବୈକୁଣ୍ଠନାଥ ଗ୍ରନ୍ଥାବଳୀ



ଜୟପୁରାଧୀଶ୍ୱର କଳା ପ୍ରେମିକ ସାହିତ୍ୟ ସମ୍ରାଟ
ମହାରାଜ ଶ୍ରୀ ଶ୍ରୀ ଶ୍ରୀ ବିକ୍ରମଦେବ ବର୍ମା, ଡି. ଲିଟ୍.

# ସୂଚୀ

# ଶୁଦ୍ଧିପତ୍ର

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୨୧ | ୨୨ | ଚକ୍ରବାକ | ଚକ୍ରବାଳି |
| ୭୧ | ୮ | ମୋହୁଥିଲ୍ଲ | ଶୋହୁଥିଲ୍ଲ |
| ୭୪ | ୭ | ସମାନ ପଢ଼ନ୍ତ | ସମ ନ ପଢନ୍ତ |
| ୧୦୮ | ୧୫ | ଶୃଙ୍ଗଳ | ଶୃଙ୍ଖଳ |
| ୧୧୦ | ୧୨ | ପିୟୂଷ | ପୀୟୂଷ |
| ୧୧୮ | ୯ | ଅଦେଶ | ଆଦେଶ |
| ୧୨୧ | ୧୧ | ଶରଣି | ସରଣି |
| ୧୪୪ | ୪ | ଶିରଷି | ଶିରସି |
| ୧୪୫ | ୧୧ | ଗାହୁଁଥିଲ | ଗୁହୁଁଥିଲ |
| ୧୪୮ | ୧୮ | ରୁଣିତ | ରଣିତ |
| ୧୬୦ | ୧ | ଶିକତା | ସିକତା |
| ୧୬୮ | ୨୧ | ଜରେଦ୍‌ଗବ | ଜରଦ୍‌ଗବ |
| ୧୮୩ | ୧୦ | ନାରବେ | ନୀରବେ |
| ୧୮୯ | ୧ | ପ୍ରଭୃକ | ପ୍ରଭୃତ |
| ୨୧୭ | ୧୧ | ନିରୁପମ | ନିରୁପମ |
| ୨୧୮ | ୧୯ | ଶ୍ରୁ | ସ୍ରୁ |
| ୨୩୯ | ୧୨ | ନମି | ନମି |
| ୨୫୧ | ୪ | ଖସିପଡ଼େ | ଖସିପଡ଼େ ତୁଳ |
| ୨୫୩ | ୨୦ | ଦେଖତ | ଦେଖନ |
| ୨୫୮ | ୨ | ବାଣି | ବାଣୀ |
| ୨୭୫ | ୧୮ | ଭୁମିର | ଭୁମିରେ |
| ୨୭୨ | ୨ | ଅନ ସାଗର ବଦଳ | ଅନ ସାଂଗରବ ଦଳ |
| ୩୦୫ | ୨ | ଯୁଗଣ | ଯୁଗଳ |

# ଉତ୍ସର୍ଗ

ଏ ଜୀବନ ପଥେ କେତେ ଜଣାଶୁଣା ଦେଖା,
ଗଲ୍ ଯେ ମରମେ ଛନ୍ଦର ତେଜ୍ ତୋଳି,
ଏ ମୋର ଅଲୋକଲୁପ୍ତାର ସ୍ୱପ୍ନ ଲେଖା,
ଅରପିଲ୍ ପଥେ ! ନିଅ ଅବା ନାହିଁ ତୋଳି ।

ଜୀବନର ପଥେ ନିମେଷ-ମିଳନ-ସାଥି !
ମୌନ ମୋ ବୀଣା, କେତେ ମତେ ଗଲ ଛୁଇଁ;
ବିହ୍ୱଳ କଲ ଭୁଲାଇଲ କାଳରାତି,
ବନ୍ଦନା ଗୀତେ ଧନ୍ୟ ହୋଇଛି ମୁହିଁ ।

ମଧୁର ଜ୍ୟୋତ୍ସ୍ନା, ସ୍ୱପ୍ନ ଅଳସ ଆଖି;
ମଧୁର ପୀରତି କରୁଣ କାନ୍ତ ବାଣୀ,
ମଧୁର ନିମେଷ ବନ୍ଧନ ପ୍ରୀତି ରାଖି,
ଧନ୍ୟ ଏ ଭବ ଜୀବନ ପୀୟୂଷ ଖଣି ।

ଜୀବନ କ୍ଷୁବ୍ଧ ସିନ୍ଧୁ ବେଳାରେ ବୁଲି,
ଦେଖିଛି ଅମର ଅରୂପର ତେଜ କେତେ,
ବାସନା ମସୀରେ କଳୁଷିତ କାହିଁ ଭୁଲି,
କ୍ଷମ ଅପରାଧ ମିଳିତ ମୋ ପଥେ ଯେତେ ।



# ନବ-ଯୌବନ

ମୁଁ ଗୋ, ଆସିଅଛି ନବ ଯୌବନ
ନବ ଯୌବନ !
ମୁଁ ଗୋ, ମଧୁସହଚର ଆସିଛି ଭାସି,
ଭରଅଛି; ଜରେ କୁସୁମରାଶି,
ମୁଁ ଗୋ, ମଧୁ ଢୁଲେ ନିତ ହସଇ ରସଇ
ସ୍ୱପ୍ନେ ଭାସଇ
ସ୍ୱପ୍ନେ ଲସଇ
ସ୍ୱପ୍ନକୁ କରେ ଚୁମ୍ବନ !
ମୁଁ ଗୋ ଯୌବନ
ନବ ଯୌବନ !

ମଳୟ ତୀବ୍ର ନିଃଶ୍ୱାସ
ମୁଁ ଗୋ ନିଃଶ୍ୱାସ
ମୁଁ ଯେବେ ମଳୟ ପରଶେ ମାତଇ
ଜଗତ କହଇ
ନାହିଁ ମୋତେ ଛଳେ
ବିଶ୍ୱାସ ଅଗୋ ବିଶ୍ୱାସ !
ମୁଁ ଗୋ, ମୋ ବାରତା ଛାଲେ
ନୀରବ ଗାନେ,
ସକଳ ସୃଷ୍ଟି ସରଳ ପ୍ରାଣେ, .
ହସାଏ ରସାଏ ପୁଣି ମୁଁ ଭସାଏ
ଅସୀମ ସ୍ୱପ୍ନେ
ଚନ୍ଦ୍ର କିରଣେ
ଛଳ ଛଳ ଛଳ

ଜଳ ଦରପଣେ
ମୁଁ କି ନା ଜଗତବନ୍ଦନ;
ନବ ଯୌବନ
ମୁଁ ଗୋ ଯୌବନ ।
ତରଳ କାନ୍ତ ସ୍ତାଣିରେ
ମୁଁ ଗୋ ସ୍ୱପ୍ନଟି ପରି
ଭାସିଯାଏ;
ସ୍ନିଗ୍ଧ ଲଳିତ ଅଙ୍ଗଗନ୍ଧେ
ମାତିଯାଏ ।
କିଏ ଅବା ଜାଣେ ଗଭୀର ନୀରବେ
ଢାଳଇ ଯେତେ ମୁଁ ଚୁମ୍ବନ,
ଆପେ ମାତି ପୁଣି ମତାଏ ଆନକୁ
ଯୌବନ ମୁଁ ଗୋ ଯୌବନ !
ଭେଟିଲେ ଗୋଲାପୀ ଅଞ୍ଚଳ,
ମୁଁ ଗୋ, ଶିଶୁସମ ସଦା ଚଞ୍ଚଳ,
କେଉଁ ମଳୟ ପରଶେ ତରଙ୍ଗ ବଶେ
ସେ ଅଞ୍ଚ ଉଠିଲେ ଦୋହଲି,
ମେଲଦିଏ ମୋର ପ୍ରଣୟ-ପସରା
ସକଳ ଲଜ୍ଜା ଠେଲି ।
ମୁଁ ଗୋ, ଅଙ୍ଗେ ତାହାର ଲାଖିଯାଏ
ମୁଁ ଗୋ, ରମଣୀୟ ମଧୁ ଲୁଣ୍ଠିଯାଏ,
ପୁଣି ବଡ଼ ସରଧାରେ ଡାକିଯାଏ,
ଆଜ, ଆସ ଗୋ ଆସ ଗୋ ଆଦରିଣୀ ମୋର
ମଳୟେ ରଚିବା ଘର,

ମଧୁର ପ୍ରଣୟେ        ଭୁଲିଯିବା କ୍ଷଣେ
ସକଳ ଆପଣା ପର !

ସଖି ! ତୁମେ ହେବ ମୋର ନନ୍ଦନ,
ପ୍ରିୟ ନନ୍ଦନ;
ତୁମ, ମଧୁର ସ୍ୱପ୍ନେ        ବାହାରବା ସୁଖେ
ଆସିଅଛି ମୁଁ ଗୋ ଯୌବନ
ନବ ଯୌବନ !

ମୁଁ ଗୋ, ଉଚ୍ଛ୍ୱଳ ଉଠଇ        ଉଠିଗୀତି ଯର
ହାସ୍ୟ ହେନାର ଗନ୍ଧେ,
ମେଘ ଚଳେ ମୁଁ        ଶୂନ୍ୟ ଗଗନେ
ଲଳିତ ମଧୁର ଛନ୍ଦେ !
ସେହୁ ସ୍ୱରେ—
ମୋର ଅନ୍ତର
ହୁଏ ଥରହର !

ନ ଜାଣଇ ଅବା        କେଉଁ ମୋହନୀର
ମନ୍ତ୍ର ସେ ଗୋ
ମନ୍ତ୍ର !
ତହୁଁ, ଅଙ୍ଗେ ବିଜୁଳି ଚମକ ଫୁଟେ !
ବିଜୁଳି ପରି ମୁଁ ସୁରପଥ ଧରି
ଦିଗ ଦିଗନ୍ତେ ନିମେଷେ ଛୁଟେ !
ନ ମାନଇଁ ବାଧା, ବନ୍ଧ,
ସେବେ ଏ
ଚପଳ ଚିର ଅନନ୍ଦ !

ଖୋଜି ବୁଲେ କାହିଁ, କେଉଁ ସ୍ୱଭଜରେ
ଅହା ସେ ଅତୁଲ ନନ୍ଦନ !
ମୁଁ ଗୋ, ଯୌବନ !
କେବେ କେବେ ମୁଁ ଗୋ ଗୃହିଁ ରହେ ପ୍ରିୟ
ପଲ୍ଲୀବାଳାର ହଂସ ଗତି,
କକ୍ଷେ କଳସି ସରଳ ଗୃହାଣି !
ଝଲପଡ଼େ ଦେଖି ତରଳମତି ।
ସରଳ ସେନେହେ ନିମିଷେକ ଲାଗି
ବାହ୍ୟୁଳ ମୁଁ ଗୋ ବାହ୍ୟୁଳ,
ଢାଳଇ ତା କାନେ ତା ମରମ ବାଣୀ
ବିଦ୍ୟୁତ ଶର ଚଞ୍ଚଳ !
ଅସିଚ୍ଛୁ ଅଜ ମୁଁ ଯୌବନ,
ନବ ଯୌବନ !

ଅଙ୍ଗେ ତୋହର ପରଶି:ଦଣ୍ଡେ
ମଳୟ କରବ ବର୍ଷଣ ।
ସନ୍ଧ୍ୟା ମୋହର ସୁନ୍ଦରୀ
ତାର ପ୍ରଂଶେ ଉଠଇ ମାତ
ସେ ଗୋ, ମୋହ କରେ କେତେ ବାନ୍ଧଇ ନାତ
କୁସୁମ ଛାତକ ଛାତ
ବକୁଳ ମଲ୍ଲୀ କରବୀର
ମୋର, ଅନ୍ତର କରେ ଅସ୍ଥିର
ମୋ ଗଳା-ଭୂଷଣି ମଲ୍ଲୀମାଳାଟି
ବକୁଳ ମୋ କରକଙ୍କଣ

ଯହିଁ ଯାଏ ଯାର                    ମରମ ଦୁଆରେ
ବାଜି ଉଠେ ଖରେ,
ମଧୁ ରସଭରେ,
ବକ୍ଷ ଦୁଆରେ—
ଆସିଅଛି ଆଜ
ଯୌବନ ମୁଁ ଗୋ,
[୧୯୨୬]                    ଯୌବନ !



## ଚିଲିକାରେ ରାତ୍ରି

ଚିଲିକାର ଶୂନ୍ୟ ପରପାରୁ
ରାତ୍ରି ଧୀର ପଦେ ଚାଲି ଆସେ,
ସ୍ନିଗ୍ଧ ସେହି ଅସ୍ପଷ୍ଟ ଅନ୍ଧାରୁ
ଶତ ସ୍ୱପ୍ନ ଗଗନେ ବିଭାସେ ।
ଗମ୍ଭୀର ତା ସୌନ୍ଦର୍ଯ୍ୟମାଧୁରୀ
ସରଗର ସୁଧାଧାରା ସମ—
ଅଲୌକିକ, ମରେଁ ସଦା ଝୁରି
ତାହା ଲାଗି ବ୍ୟାକୁଳ ମରମ ।
ଝୁହୁଁ ଝୁହୁଁ ସ୍ନିଗ୍ଧ ସେ ଅଞ୍ଚଳ,
ବୁଲିଆସେ ସ୍ୱପନ ଚଞ୍ଚଳ ।
ନୀରବ ଯେ ସକଳ ନୀରବ !
ନିସ୍ତବଧ ସୌନ୍ଦର୍ଯ୍ୟ ଉତ୍ସବ ।



ଏ ଶୋଭାର ନାହିଁ ତ ମରଣ
ପ୍ରାଣସ୍ପର୍ଶୀ ସତ୍ୟ ସୁମଙ୍ଗଳ;
କର ଯୁବା ଆନନ୍ଦେ ବରଣ
ଦେଇ ପ୍ରେମ ପୂତ ଅଶ୍ରୁଜଳ ।

---

## ନିର୍ଜନ ଉପବନେ

ନିର୍ଜନ ଉପବନେ ଏକାକିନୀ ଫୁଲ ଗୋ
ଭୁଲ ତୋର ସୁନ୍ଦର ନିଜରୂପେ ଭୁଲ ଗୋ ।
ନୀରବେ ରହିବ ଗୃହ,
ମୋ ଗୀତଟି ଯିବ ଗାଇ,
ବଭୋର ପରଶେ ମୃଦୁ ସମୀରଣେ ଝୁଲ ଗୋ ।
ରୂପର ଉଖାସ୍ନି ମୁଁ ଗୋ
କୁସୁମରାଣି
ତୋଳ ନିତ ଗନ୍ଧେ
ଯାଏଁ ଗୋ ଭାସି ।
ନୀରବ ମୋହର ଭୋଗ,
ନୀରବେ ପରାଣ ଯୋଗ,
ରୂପେ ଛନ୍ଦେ ସୁଗନ୍ଧେ
ହରାଏଁ କୂଳ,
ରୂପସ୍ରୋତେ ମରିବାକୁ
ସଦା ଆକୁଳ ।
ମନ୍ଦେ ସମୀରେ ସହ
ଝୁଲ ଗୋ ଝୁଲ ।



# ପୌଷ ପବନ

ପରଶ ପଉଣ ପୌଷ ପବନ
ଛୁଲ୍ଲ କର ଏ ମରମ,
ସରଅଛେ ସବୁ ସଙ୍ଗୀତ ମୋର
ମଉଳଇ ମୋର କରମ ।
ସେଇ ଫୁଲ୍ ପର ପଡ଼ିବ ମଉଳି
ଶୀତଳ ଅଙ୍ଗେ ବୋଳି ଦେବ ଧୂଳି
ଝରି ପଡ଼ି କରୁ ଅକୁଳ ଏ ତୂଳି
ବଢ଼ଇ ଅସୀମ ଭରମ
ଛୁଲ୍ଲ କର ଏ ମରମ ।

ସେ କାକଳି ପର ଅସୀମ ଶୂନ୍ୟେ
ନୀରବେ ଲଭିବ ମରଣ,
ଭୁଲିବ ଯେସନେ ଭୁଲଇ ସନ୍ଧ୍ୟା
ଜନମର ସବୁ କଷଣ ।
ସୁନ୍ଦର ଏଥି କାହିଁ ନାହିଁ ମିଳେ
ସ୍ୱପ୍ନ-ପୁଲକ ନ ପରଶେ ତଳେ
ନିଃସ୍ୱ ଜନର ଅସୀମ ପିପାସା
ନିଭାଇବା ତୁମ ଧରମ,
ଛୁଲ୍ଲ କର ଏ ମରମ ।



# ନୈରାଶ୍ୟ

କେତେ, ସୁନ୍ଦର ମେଘ ମିଶିଛି ଗଗନେ
ରହିଛି ଚାହିଁ,
ପରାଣପରଶୀ ଉଷାର ମାଧୁରୀ
ନିଭିଛି କାହିଁ ।
ସୁନ୍ଦର ଫୁଲ ପଡ଼େ ନିତ ଝରି
କରୁଣ କଣ୍ଠେ ଗୀତ ଯାଏ ମରି
ପ୍ରାଣ-ପରକାଶୀ ପୁଲକ କାକଳି
ନାହିଁରେ ନାହିଁ
ସରବ ମଳିନ ଦଶଇ ନିମେଷେ
ରହିଛି ଚାହିଁ ।
ସମୀରଣ ଅଙ୍ଗ କରେ ନିତ ଏଥି
ହାହାକାର ,
ଉଚ୍ଛୁଳି ଉଠଇ ସୀମାହୀନ ବ୍ୟଥା
ଶତଧାର ।
ଅକୁଳ କଣ୍ଠେ ନ'ଧରଇ ଗାନ,
ସୁନ୍ଦର ଏଥି ଶର ଅବସାନ,
ନ ଶମଇ ତଳେ ତରୁଣ ପିପାସା
ନିତ୍ୟ ଗାଇ,
ରହିଛି ଚାହିଁ ।

———

## ସନ୍ଧ୍ୟା

ସନ୍ଧ୍ୟା ! ତବ ବ୍ୟଥାର ଦାନ
ଯାଚଇ ଅଜ୍ଞ ପ୍ରାଣ,
ଢାଳ ଢାଳ ଅମୃତ ସେ
ଶାନ୍ତ ଅବସାନ !
ବେଦନା ସ୍ପର୍ଶେ ମାତବ ଚିତ,
ସ୍ଫୁରବ ପ୍ରାଣପରଶୀ ଗୀତ,
ଶୁଣିବ ଗଛ-ପତର ଲତା
ଅକୁଳେ ଡେର କାନ,
ଯାଚଇ ଅଜ୍ଞ ପ୍ରାଣ ।

ରକ୍ତ ନିଃସ୍ୱ ଚିର ହତାଶ
ବେଦନା ମୋର ଧନ,
ବିଶ୍ୱ ସୁଖ ସ୍ୱପ୍ନ ହେଲେ
ନ ଲୋଡ଼େ କ୍ଷିପ୍ତ ମନ ।
ଦିବସ ଶେଷେ ସକଳ ଧ୍ୱନ,
କରୁଣ ଗୀତେ ସମର୍ପଣ—
କରିବି ସୁଖେ ଜୀବନ ପୂର୍ଣ୍ଣ
ପୀରତ ସ୍ଫୁତ ମ୍ଳାନ ।
ଶାନ୍ତ ଅବସାନ !



# ଉଷା ପ୍ରତି

ହତାଶ ମୁଁ ଗୋ ଜୀବନ ସାରା
ଜନମ ମୋର ବ୍ୟର୍ଥ
ଜୀବନ ଏକ ଅଶ୍ରୁଧାରା
ନ ବୁଝେଁ କିଛି ଅର୍ଥ ।

ଉଷା ! ଉଷା ! ନିଅ ହେ ଅଶ୍ରୁହାର
ନିଃସ୍ୱ ଜନ ଶତ ସମ୍ପଦ ସାର !

ଗାଇଛି କେତେ ବିକଳ ସ୍ୱରେ
ଏ ବୀଣା ମୋର ଅକୁଳ ଭରେ
କିଏ ବା ତାକୁ ଶୁଣିଛି ଥରେ ?
ପିପାସା ଆଶା ବ୍ୟର୍ଥ,
ନ ବୁଝେଁ ତେଣୁ
ଏଇ ଜୀବନ ଅର୍ଥ ।

ମୋ ଆଖି ଆଗେ ସନ୍ଧ୍ୟା ରବି
ଯାଇଛି କେତେ ବନ୍ଧୁ,
ବିକଳେ କେତେ ଡାକିଛି ତାକୁ,
ମରମ କଥା କହୁ,
ଉଦ୍‌ଭ୍ରାନ୍ତ ମୁଁ ହୋଇଛି ଦେଖି
ସକଳ କର୍ମ ମୋର ଉପେକ୍ଷି
ପକ୍ଷୀ ଭୁଲେ ଗାଇଛି ଯେତେ
ପବନେ ଗଲା ମିଶି
ଦେଖିଛି କେତେ ନିଶି ।

ଊଷା ! ଖାଲି ରହୁଛି ଅଶ୍ରୁଧାର
ହତାଶ ପ୍ରାଣ ଭଗ୍ନ ହାହାକାର ।
ମଳିନ ଗନ୍ଧ ତୋଳିଲି ଯେତେ
ଗନ୍ଧ ଫୁଲ ସାର,
ହାସ୍ନା ହେନା ବକୁଳ ମଲ୍ଲୀ
ଚମ୍ପକର ହାର ।
ସକଳ ମୋର ମଳିନ ଜାରଖାର,
ସକଳ ଗନ୍ଧେ ଭରୁଛି ହାହାକାର,
ସୌନ୍ଦର୍ଯ୍ୟ ଏ ଜୀବନେ ସଦା ବ୍ୟର୍ଥ
ଊଷା ! ତେଣୁ ବୁଝଇ ନାହିଁ
ଭଗ୍ନ ଜୀବନ ଅର୍ଥ ;
ରଚଇ କେତେ କଳ୍ପନାର
ମୁଗ୍ଧ ମଧୁ ଛନ୍ଦ
ଲେଖଇ ଛବି ପରାଣ ତାଳି
ଏ କି ହତାଶ ଗନ୍ଧ !
ସମୀର ପାଶେ କରୁଛି ବ୍ୟଙ୍ଗ
ଗଗନ କେତେ ଦେଖାଏ ରଙ୍ଗ
ଛିଣ୍ଡା ଡୁଳା ଧୂଳିରେ ଯାଏ ଲୋଟି
ସକାଳ ନେଇ ଅନ୍ତରାଳେ
କାନ୍ଦ ଉଠେ
ଭଗ୍ନ ପ୍ରାଣ ଗୋଟି ।
ତୁମ ଅରୁଣ ଅଞ୍ଚଳେ ଗୋ
ଆବର ମୋର ତନୁ,
ସକଳ କ୍ଷତ କାଅ ଗୋ ହର ମନୁ ।

---

## ଅରୁଣ

ଅରୁଣି ! ଡାଳ ପତ୍ରଣେ ପବନତା,
ନିଭି ଯାଉ ମୋ ଦୁଃଖ କ୍ଷତ ବ୍ୟଥା ।
ଅସିଛୁ ଅଙ୍କ ପଖାଳ ତନ୍ତୁ,
ସକଳ ମାୟା ଫୁଟାଇ ମନ୍ତ୍ର,
ଶୁଣିବ ବସି ଅରୁଣ-ବନ୍ଧୁ
ପତ୍ରଣପ୍ରିୟ କଥା,
ଡାଳ ହେ ପବନତା !
କାହାର ସ୍ନିଗ୍ଧ କିରଣ ଝଲ
ତରଳ ଜଳ ବକ୍ଷେ ?
ପକ୍ଷୀ ଶତ ଯାନ୍ତି ଉଡ଼ି
କେଉଁ ପ୍ରିୟର ଲକ୍ଷ୍ୟେ ?
କେଉଁ ସୁନ୍ଦର ଅସୀମ ଆଶେ;
ତରଣୀ ଦୂରେ ମୁଗ୍ଧେ ଭାସେ ?
ଗୌରବେ କି ଶାନ୍ତ-ସ୍ୱର
ପୁଲକ ମାଦକତା !
ଅସୀମ ତେଜେ ଭସାଇ ପ୍ରାଣ
ଭୁଲିବ ସବୁ ବ୍ୟଥା ।

---

## ଚତୁଷ୍ପଦ

— ୧ —

ଉଦାସ ନୟନେ ଚୋଲପ ରହିଛି ଚାହିଁ,
ସ୍ନିଗ୍ଧ ସୋହାଗେ ଡାକଯାଏ ଉଷା "ସହି !"
ପତର ଗହଳ ଖଞ୍ଜନ ଉଠେ ଗାଇ,
ଅଳସ-ସ୍ୱପ୍ନେ ବେଳା ମୋର ଯାଏ ବହି ।

—୬—

ଏ ଯେ ତୁମ କ୍ଷୀଣ କଣ୍ଠସ୍ୱର
ଥରି ଥରି ଦୂରୁଁ ଆସେ ଭାସି !
ପିପାସାରେ ପ୍ରାଣ ଜର ଜର
ନୀରବ ଗୋ କଲପନା ରାଶି ।
ବ୍ୟଥାର କି ଅତଳ ଅନନ୍ତ
ନୈରାଶ୍ୟର ନିଶବଦ ଶାନ୍ତି,
ଗଭୀର ସେ ସେନେହର ଛନ୍ଦ !
ସ୍ୱପ୍ନେ ହେଲେ ଅନବଦ୍ୟ କାନ୍ତି !
ସେ କ୍ଷୀଣ ସଙ୍ଗୀତେ ସେହି ସ୍ୱରେ
ମିଶୁ ଏ ମୋ କରୁଣ ଜୀବନ,
ହତାଶ ମୁଁ ଚିର ସୁଖେ ମରେଁ
ବହି ଶତ ବିଫଳ ସ୍ୱପନ ।



## କବି ପ୍ରେୟସୀ

—୧—

ତୁମେ, ଭାସିଯାଅ କାହିଁ ସନ୍ଧ୍ୟା ମଧୁର ସ୍ୱପନେ
ତୁମ, ମୁଖର ନୂପୁର ମନ୍ଦେ ବାଜଇ ମରମେ ।
ତୁମେ, ସେନେହ ସୋହାଗେ ଗୁହିଁ ଯାଅ,
ତୁମେ, ଅକୁଳେ ଗୀତଟି ଗାଇଯାଅ,
ମୁଁ ଗୋ, ନୀରବେ ଢାଳଇ ବ୍ୟଥାର ଅଶ୍ରୁ
ବ୍ୟଥାରେ ଅନାଏଁ ଗଗନେ,
ଭାସିଯାଅ କେଉଁ ସ୍ୱପନେ ।

ତୁମେ, ମୋହଲଗି ସିନା ଭରିଛ ପରାଣେ
ଗଭୀର ହତାଶ ଛନ୍ଦ,
ବେଦନା ବିମଳାନନ୍ଦ,
ତେଣୁ, ନିମେଷେ ଦେଖିଲେ କରୁଣ ରୂପଟି
ଗଳପଡ଼େ ବାଧା ବନ୍ଧ !
ଥାଅ ଥାଅ ଦୂରେ ପାଶେ ଅସ ନାହିଁ,
କରୁଣ ନୟନେ ଦୂରୁ ଯାଅ ଗ୍ଚାହିଁ,
ତୁମର ଧ୍ୱଅନେ ଦୁଃଖର ଗୀତ
ଗୁନ୍ଥିବ ବସି ଜୀବନେ
ସନ୍ଧ୍ୟା ମଧୁର ସ୍ୱପନେ ।

—୨—

ତୁମେ, ନବୀନ ଉଷାର ଗୋଲାପ ଗନ୍ଧବହ,
ମୁଁ ଗୋ, ଅସୀମ ସେ ପଥେ ଅନୁସରେ ଅହରହ,
ତରଳ ସେ ରୂପେ ହୁଏ ମୁଁ ଅମୂହର

ତୁମେ, ନିଶୀଥ ସ୍ୱପ୍ନ ! ଦଅ ନାହିଁ ଥରେ ଧରା ।
ତୁମେ, ଗନ୍ଧ-କୁସୁମ-ସୃଷ୍ଟି,
ତୁମେ, ଉଷାର ସ୍ନିଗ୍ଧ ଦୃଷ୍ଟି,
ତୁମେ, ଅମର ସ୍ୱପ୍ନାନନ୍ଦ,
ତୁମେ, ସୁପ୍ତ ଜୀବର ଛନ୍ଦ,
ତୁମେ, ଅଧୀର ସନ୍ଧ୍ୟାତାରା,
ତୁମେ, ମଳୟ-ମଦର-ଧାରା !
ତୁମେ, ମଧୁ ବସନ୍ତ ଚୁମ୍ବନ
ତୁମେ, ତୃଷିତ ନୟନ-ନନ୍ଦନ,

ମୁଁ ଗୋ, ପାଇ ପାଏ ନାହିଁ ପ୍ରୀତିଛଣା-ସୁଧା-ଅନ୍ତରେ
ତୁମେ, ବ୍ୟାପିଯାଅ କ୍ଷଣେ ଭଗ୍ନ ପରାଣ ଯନ୍ତରେ,
ମୁଁ ଗୋ, ମୁଗ୍ଧ ନୟନେ ଆକୁଳତା ଭରି ଚାହେଁ,
ମୁଁ ଗୋ, ସନ୍ଧ୍ୟା ସମୀପେ ବିହ୍ୱଳ ଗୀତ ଗାଏ,
ତୁମେ କର କିଆଁ ମୋତେ ଅସୀମ ପଥର ଯାତ୍ରୀ
ମୁଁ ଗୋ, ସଙ୍ଗୀତ ଗାଇ ଚାଲିଥାଏଁ ଦିବା ରାତି ।

—୬।—

ତୁମେ, ଭାସିଯାଉଥିଲ ନୀଳ ଆକାଶର ପଥେ,
ତୁମ, କ୍ଷୀଣ କଟିତଟେ ଆବୃତ ଘନ ମେଖଳା,
ତୁମେ, ସ୍ୱପ୍ନ ଚୁମ୍ବି ହସୁଥିଲ ମନମତେ,
ଅଗୋ, ନବଯୌବନ ଅମ୍ବରେ ନବ ଚପଳା !

ଚନ୍ଦ୍ର ମନ୍ଦାର ଗୋଲାପ ଗନ୍ଧ,
କଣ୍ଠ ତରୁଣୀ ତରଳ ଛନ୍ଦ,
ଝରୁଥିଲା ଯେବେ-ସମୀର ଅନ୍ଧ
ଚୁମ୍ବି ଅଙ୍ଗ,ତୋର ଆନନ୍ଦ !

ହସି ଚାଲିଥିଲ ଆପଣା ରୂପେ ଆନମନେ,
ଭୁଲି ଭୁଲି କେତେ ଦେଖୁଥିଲ ସୁଖ ସପନ !
ବକୁଳ ମଲ୍ଲୀ ହାସ୍ନା ହେନାର ସଙ୍ଗେ,
ଚହଟି ଉଠିଲେ ତରୁଣ ସ୍ୱର୍ଣ୍ଣେ ରଙ୍ଗେ,
ନବ ବିଳାସିନୀ ଛାଇ ହୋଇଥିଲ ବଦନ,
ବିହ୍ୱଳେ ଚାହିଁ ଗାଇଲ "ସ୍ୱର୍ଗ ! ନନ୍ଦନ !"

ମଧୁର ଆଜି ଜ୍ୟୋସ୍ନା ରାତି
ପ୍ରେୟସୀ ମୋ ଆସ,
ହାସ୍ୟ ହେନାର ଗନ୍ଧ-ବନେ
ଲଭିଛୁ ପ୍ରଣୟ ରାସ
ଗୋଲାପ କେତେ ସ୍ୱପ୍ନ ଦେଖେ,
ବାଉଳେ କବି ଛନ୍ଦ ଲେଖେ ,
ସ୍ୱପ୍ନର ଏ ସୃଷ୍ଟି ମେଳେ
ମଳୟ ମେଲେ ବାସ,
ଆସ ଗୋ ପ୍ରିୟ ଆସ ।

ଜ୍ୟୋସ୍ନା ଅଙ୍ଗେ ଢାଳିବ ବସି
ମୁଗ୍ଧ ତରଳ ଦୃଷ୍ଟି,
ସ୍ୱପ୍ନଭରା ଗଗନୁ ହେବ
ପ୍ରଣୟ-ଫୁଲ ବୃଷ୍ଟି ।
ସ୍ୱପ୍ନେବାଳା ଅଳସ ମୁଖେ,
ନିରେଖି ଥରେ ମରିବ ସୁଖେ,
ଜୀବନ ମୋର ପୂର୍ଣ୍ଣ ହେବ
ଦେଖି ସେ ମୃଦୁ ହାସ
ପ୍ରେୟସୀ ମୋ ଆସ ।

— ୫ —

ସୁନ୍ଦର ମୋର ରଞ୍ଜିତ ମେଘ
ସୁନ୍ଦର ମୋର ଗଗନ,

ସୁନ୍ଦର ନୀଳ-ସଲିଳ-ସୃଷ୍ଟି
ସୁନ୍ଦର ମୃଦୁ ପବନ ।
ସୁନ୍ଦର ଦ୍ରୁମ-ସଙ୍ଗୀତ,
ଅଗୋ, ସୁନ୍ଦର ଉଷା ଇଙ୍ଗିତ,
ସୁନ୍ଦର ମୋର ଅଲେକେ ଖେଳଇ
ନିତ୍ୟାନନ୍ଦ ଜୀବନ
ସୁନ୍ଦର ଏଇ ଭୁବନ ।
କୁସୁମ-ବିଳାସୀ ସନ୍ଧ୍ୟା ମୋର ଗୋ
ଧୀରେ ଚଳିଅସେ ସୁନ୍ଦର,
ଲଳିତା ରାଗିଣୀ ସୁନ୍ଦର ପୁଣି
ସମୀରଣ ଧୀର ମର୍ମର ।
ତୁମ ପାଶେ ବସି
ଲୋଡ଼ଇଁ ନାହିଁ ମୁଁ ମରଣ,
ମୁ ଗୋ , ଆନନ୍ଦ କରେ ଚୟନ ।
ନିତ୍ୟ ନବୀନ ସୃଷ୍ଟିରେ ନିତି
ରଚଇ ମୋହର ସ୍ୱପନ ।
ସୁନ୍ଦର ଅଜି ଭୁବନ ।

—୨—

ଏ ଜୀବନ ଗୋଟା ଧରି ବାଜଇ ଗୋ
ବ୍ୟର୍ଥତାର କରୁଣ ରାଗିଣୀ,
ତରୁଣ ନିଃଶ୍ୱାସେ ଛନ୍ଦେ ହାହାକାରେ
ଯୌବନର ଉନ୍ମାଦନା କିଣି ।

ଗଗନେ ପବନେ ମୋର ଭରି ହାହାକାର,
ମୋ ଲୋତକ ଭରେ ଘାସ କୁସୁମ ନୀହାର,
ଶ୍ୟାମଳ ସ୍ୱପନେ ମୋର ଝଲଇ ବେଦନା,
ବେଦନାର ସୃଷ୍ଟି ନିତ କରେ କଳପନା ।
ଶୁଣିବ ବେଦନା ମୋର ? ଅସ, ଅସ,
ସ୍ନିଗ୍ଧ ପଥ ରହିଛି ଅନାଇଁ,
ନିରେଖି ସେ ଛଳ ଛଳ ବେନି ଆଖି
ପୁଲକେ ମୋ ଛନ୍ଦ ଯିବ ଗାଇ ।

ସଂସାର କରୁଛି ମୋତେ କେତେ ଉପହାସ,
ମରମେ ସହୁଛି ଦୁଃଖ ପଦାଘାତ ତ୍ରାସ,
ମାତର ଗୋ ବନ୍ଧୁ ଦନ୍ଧୁଁ ଅଛି ଅଭିଳାଷ,
ଶୁଣିବ ମୋ ଗୀତ ତୁମେ ବ୍ୟାକୁଳ ପରଣେ—
ଚିର ଭଗ୍ନ ଅନ୍ତରର ଭାଷ,
ଅଛି ଏକ ଦୀନ ଅଭିଳାଷ ।

ପୂର୍ଣ୍ଣ ହେବ ଜୀବନର ବିପୁଳ କ୍ରନ୍ଦନ
ବ୍ୟର୍ଥତାର ଦୁରନ୍ତ ରାଗିଣୀ,
ସ୍ନେନେହେ କରିବ ଆର୍ଦ୍ର ଶତକ୍ଷତ ବ୍ୟଥା
ମାଧୁର୍ଯ୍ୟର ପ୍ରତିଦାନେ ଦୁଃଖ ନେବ କିଣି ।

— ୬ —

ଆଜି, କୁସୁମ ରାଜ୍ୟେ ଉଡ଼ିଯାଏ ମୋର ମନ,
କୁସୁମ ସ୍ୱପ୍ନ ଦେଖେଁ ବସି ଅନୁକ୍ଷଣ,
କୁସୁମ-ମଧୁରି ପିଇବାକୁ ମୁଁ ଗୋ ବାଇ,
ଛାଡ଼ିଦିଅ ପ୍ରିୟ ପ୍ରଣୟେ କାର୍ଯ୍ୟ ନାହିଁ ।

କେତେ, ଗୋଲାପ ମଲ୍ଲୀ ବକୁଳ,
ନବ, ଚମ୍ପକ ହେନା ଅତୁଳ,
ମୃଦୁ, କାମିନୀ ନାଅର୍କା ଗନ୍ଧ
କରେ, ରଜନୀ ଗନ୍ଧା ଅନ୍ଧ,
ମୁଁ ଗୋ, ଫୁଲ ଉପବନେ ଭ୍ରମର
ମୁଁ ଗୋ, ପରାଗର ରାଗେ ଅମର,
ଗ୍ଲଡ଼ଦାଅ ପ୍ରିୟେ ଗ୍ଲଡଦାଅ ବେକା କର
ନଶୀଥ ସ୍ୱପ୍ନ ଭୁଲ ଆଜ କର ପର ।
କ୍ଷିପ୍ର ପ୍ରାଣର ସୀମାହୀନ ଏତେ ଆଶା,
ନାଭ୍ରଇବ କାହିଁ କ୍ଷୁଦ୍ର ପ୍ରଣୟ-ଭାଷା ?
କୁସୁମ ଗନ୍ଧେ ରୂପେ ଆନନ୍ଦେ ଭାସେଁ
ମନ ବଲେ ଆଜ ମରବାକୁ ଫୁଲ ହାସେ,
ଛୁଟାଇ ଦାଅ ଗୋ ବନ୍ଧନ
ଡାକେ ମୋତେ ଦୂର ଅମରାବତୀର ନନ୍ଦନ ।

---

## ଶାରଦ ସ୍ୱର୍ଣ୍ଣ

ଅକାଶ ଆଜ ଶୁଭ୍ର ବେଶେ
ହେଲା ଚଞ୍ଚଳ,
ସମୀରଣେ ଖେଳି ବୁଲେ
ଏକା ଅଞ୍ଚଳ !
ଶେଫାଳିକା ଅମ୍ବହରା,
ଢାଳ, ଗନ୍ଧ ଚତୁର୍ଦ୍ଦିଗ ଭରା
ଆଜ ବିଶ୍ୱପ୍ରାଣି ପରଶି ଗଲା
ପୁଣ୍ୟ ମଙ୍ଗଳ !

ସେ ଯେ, କାଣ ଫୁଲେ ଭରନ୍ତୁ ତନୁ
ଶ୍ୟାମଳ ଶିରେ
ତାର, ମନ୍ଦହାସ ଖେଳି ବୁଲେ
ନଦୀ ଅସ୍ଥିରେ !
ମାଳତୀ ତାର କଙ୍କଣ,
ଷ୍ଟୁରେ, ଅଙ୍ଗୁ ଗନ୍ଧ ଚନ୍ଦନ,
ପାଗଳ ସେ ଯେ ଖେଳି ବୁଲେ
ଦାଳି ଅର୍ଗଳ ।

ଆସ ଆଜ ରୁଦ୍ଧ ଦ୍ୱାର
ମୁକ୍ତ କରି ଗୋ,
ହସ ଖେଳେ ଆପଣା ପ୍ରାଣେ
ନେବା ବରି ଗୋ ।
ବିଳମ୍ବ ଆଉ ନ କର ଗୋ
ନିରବେ ଅଉ ନ ଭର ଗୋ
ଏଇ ସମୀର ପଥ ଧରି
ଗୁଲ ସରି ଗୋ ।
ହସ ଖେଳେ ଆପଣା ପ୍ରାଣେ
ନେବା ବରି ଗୋ ।
ବଳକା ଅଜ ମାଳ ମାଳ,
ଲକ୍ଷ୍ୟ କରି ଚକ୍ରବାକ,
ଯାଆନ୍ତି ସରି ସ୍ୱପ୍ନ ପରି
ମୁଗ୍ଧ ବିହ୍ୱଳ,
ଅକାଶ ଅଜ ଶୁଭ୍ର ବେଶେ
ଖେଳି ଚଞ୍ଚଳ ।

———

# ପ୍ରୀତ ଆବାହନ

ତୁମେ, ହେଲା ହୋଇ ଅସ ଅରୁଣ ଉଷାର କିରଣ
ତୁମ ପଦସଞ୍ଚାରେ ଚମକି ଯିବହିଁ ସ୍ୱପନେ
ମୁଁ ଗୋ, ଭୁଲିଯାଏଁ ମୋର ହତାଶ ବିକଳ ଜୀବନ
ତୁମେ, ନିତି ନିତି ମୋତେ ଡାକିନିଅ ମଧୁବିଜନେ।
ଅସ ଅସ ମୋର ସୁଖ ଅବସାନେ,
ପ୍ରଷ୍ଫୁଟ ଗୋଲପ ଖୋସି ବେଣୀକାନେ,
ଭାଦର ବାଦଲେ ଉଡ଼ାଇ ଅଳକ,
ଫଗୁଣ ପବନେ ଜଗାଇ ପୁଲକ,
ତୁମେ ଅସ ଧୀରେ ଅସ,
ଦେଖିଲେ ସେ ରୂପ କାହିଁ ଯାଏ ମୋର ତ୍ରାସ।
ତୁମେ, ଶୀତଳ ଗଣ୍ଡେ ଢାଳିଯାଅ ଶତ ଚୁମ୍ବନ,
ତୁମେ, ପ୍ରଣୟର ମଦେ ଭୁଲିଯାଅ ବାଧାବନ୍ଧନ,
ତୁମେ, ଅସୀମାନନ୍ଦ ଅସୀମ ପ୍ରଣୟଭରା,
ତୁମ, ଗମ୍ଭୀର ହାସେ ମରେଁ ମୁଁ ଆତ୍ମହରା,
ମଧୁର ପ୍ରଣୟ! ମଧୁର ସ୍ୱପ୍ନ ପ୍ରିୟା,
ଅଶେଷାନନ୍ଦ ପୁଲକି ଉଠଇ ହିୟା!
ମରଣ! ମରଣ! ଅସ ନାହିଁ, ରହ ଦୂରେ!
ଅଶେଷ ପ୍ରଣୟ ଉତ୍ସବ ମୋର ପୁରେ!

[୧୯୨୪]



# ଗୋଲାପ ପିପାସା

ଏଇ ଗୋଲାପ-ପ୍ରାଣର ଅସୀମ ପିପାସା
କାହୁଁ ବା ତୃପ୍ତିବ ସୁନ୍ଦରି—
ତୁମେ, ଚାହିଁଯାଅ ଖାଲି ଚାହିଁଯାଅ,
କହିବାକୁ ବ୍ୟଥା ନାହିଁ ମୋର ଭାଷା,
ନିଶୀଥ ସ୍ୱପ୍ନେ ସଞ୍ଚରି—
ତୁମେ, ଗାଇଯାଅ ଖାଲି ଗାଇଯାଅ !

ଯେତେ ଏଇ ଆଖି ଭରେ ଲୁହଧାର,
ଯେତେ ଏ ପରାଣ କରେ ହାହାକାର,
ଯେତେ ପୁଣି କ୍ଷତ ବିକଳ ପରସ,
ଜୀର୍ଣ୍ଣ ଜୀବନେ ଦୀର୍ଘଶ୍ୱାସ,
କାହିଁ, କାହିଁ ତୁମ ଅନ୍ତରେ ଥାନ ?
ଚାହିଁଯାଅ ଖାଲି ଚାହିଁଯାଅ;
ମୋର, ଜୀବନର ସୁଖ ଶେଷ ଅବସାନ !
ପାଇ ଯେବେ ଥରେ
କରୁଣ ରସରେ—
ଗାଇଯାଅ ଖାଲି ଗାଇଯାଅ ।

ଏ ଅଳସ ବୀଣା ତୁମକୁ ଚାହିଁ ମୁଁ
ଲୋଟାଇ ଦେବି ଗୋ ଧୂଳିରେ
ସନ୍ଧ୍ୟା-ଗନ୍ଧ-ରୂପ-ଆନନ୍ଦ
ନ ଲେଖିବ ଏଇ ତୂଳିରେ !
ତୁମେ, ଚାହିଁଯାଅ ଖାଲି ଚାହିଁଯାଅ !
ତୁମ, କରୁଣ ଛନ୍ଦ ବାଇଯାଅ !

ଶୁଣିବ ! ଶୁଣିବ ଅକୁଳ ନୀରବେ,
ଶୁଣିଇ ଯେସନେ—
ଲୋତକ-ନୟନେ—
ନୀଳ ଘାସ ଫୁଲ,
ସନ୍ଧ୍ୟା ନୀରବ
ଛନ୍ଦ ଅତୁଳ,
ଶୁଣିବ ସରବ
ଗାଇଯାଅ ତୁମେ ଗୁହ୍ନିଯାଅ !
ସେଇ ସଙ୍ଗୀତ ଅଧୀରେ ଅସିଲେ ସର,
ମୁଁ ଗୋ ତୁମର ଚପଳ ଗୁହାଣିରେ ଯିବ ମର ।

## ବ୍ୟଥା ନିବେଦନ

ତୁମେ,କେସନେ ଜାଣିବ ଗୋ ଅସୀମ ପ୍ରୀତ ମୋର୍,
ଉଷାର୍ ଏ ସେନେହ ଅଶା ପିଆସା ଘୋର?
ତୁମେ ତ ରହ କେଉଁ ଦୂରେ ଗୋ,
ସନ୍ଧ୍ୟା ସ୍ୱପ୍ନ ସେ ପୁରେ ଗୋ ।
ମୁଁ ଗୋ ତୁମର ପଥ ଗୁହ୍ନି ଅକୁଳେ ଯାଏ ଗାଇ
ଶୟନେ ଜାଗରଣେ ଶାନ୍ତ ମିଳେ କାହିଁ ?
ନୀରବେ ମୋ ମରମେ ମରେ ଗୋ;
ତୁମ ସେନେହ ପ୍ରୀତ ଭରେ ଗୋ ।
ମରମ ତଳ କଥା କେହି ତ ଜାଣେ ନାହିଁ
ଉଦାସେ ପୁଛଇ କେ 'ମଳିନ କାହିଁ ପାଇଁ ?'
ଅକୁଳ ଜୋଛନାଟି ବାଦଲ୍ ତଳେ ଖେଳେ,
ଗୋଲାପ ପ୍ରାଣକଥା ସଢ଼େ ପବ୍‌ଗ ମେଳେ,

କେହି ତ ନ ଜାଣଇ ଥରେ ଗୋ,
ଗୋପନ ପ୍ରୀତି ପ୍ରାଣେ ମରେ ଗୋ ।
ତୁମେ ଏ ପାଖେ ଗଲେ ପରାଣ ପିୟୁ ଶର
ଗମ୍ଭୀର ସରମରେ ତଳକୁ ଝରେଁ ଶିର ।
ଅବର ଦଏ ସବୁ ବ୍ୟଥା ଗୋ,
ବିରହ ପ୍ରୀତି ମାଦକତା ଗୋ ।

ଏ ପଥେ ଗଲେ ତୁମେ ମଳୟ ବହେ ପ୍ରାଣେ,
ତୁମର ଦେହ ଗନ୍ଧ ଭାସଇ ଶତଗାନେ,
ସନ୍ଧ୍ୟା ହସେ ଖିଲ ଖିଲ ଗୋ
ଉଲ୍ଲସଇ ହୃଦତଳ ଗୋ,
ତୁମର ପ୍ରୀତିଲଭ ତଲେ ତ ଅଶା ନାହିଁ
ଖାଲି ମୁଁ ଯାଏ ଗାଇ ଗୋପନେ ରହେ ଚାହିଁ
ସବୁଠି ଦେଖେ ତୁମ ଛବି ଗୋ
ତୁମରିଲାଗି ମୁହିଁ କାନ୍ଦି ଗୋ ।

ବିଶ୍ୱାସ ଯାଉ ବହି ବେଦନା ଯାଉ ଦହି,
ପରାଣ ହେଉ କ୍ଷତ ସବୁ ମୁଁ ଯିବ ସହି,
ମରଣ ଆଗମନେ ଛଳ ଛଳ ନୟନେ,
ସୁନୀଳ ଆକାଶକୁ ଚାହିଁବ ଥିର ମନେ,
ଶେଷ ଗୀତଟି ମୋର ଗାଇବ ଶୁଭକ୍ଷଣେ
ତୁମେ ତ ଚିରଦିନ ମୋର ଗୋ
ଛୁଇଁ କି ପାରେ ପ୍ରୀତି ଡୋର ଗୋ ?



[୧୯୪୨]

# ବର୍ଷା ସଙ୍ଗୀତ

ଆକାଶେ ମାତିଛନ୍ତି ବଜ୍ର ବାଦଲ
ସାଇଁ ସାଇଁ ବହେ ପବନ;
ପୁଲକ ଉଠଇ ଚପଳା ଅଙ୍ଗେ
କି ଅବା ନବୀନ ଯୌବନ

ପ୍ରଳୟର ଏକ ଉନ୍ମାଦ ଡାକ
ଏକ ମୂର୍ଚ୍ଛନା ଥରେ ଆଖପାଖ,
କେଉଁ ମରୁଥଳ ଡାକେ ଆସ ଆଜି
ମୁକ୍ତ ବକ୍ଷ ଅଙ୍ଗନ !
ସାଇଁ ସାଇଁ ବହେ ପବନ ।

ବାହାରେ ଭିତରେ ଯୌବନ ଖେଳ
ବରଷାର ଧାର୍ ପ୍ରାନ୍ତରେ,—
ଛୁଟଇ ଯେସନେ ଅନନ୍ତ ସୁଧା
ନବ ଯୌବନ ମନ୍ତରେ ।

(ମୋର) ଅବଶ ପରାଣ ନୁହେଁ ସମ୍ଭାଳି
ଉନ୍ମାଦ ଶିଖା କିଏ ଗଲା ଜାଳି !
ବରଷା ସହିତେ ଅନ୍ତର ଖେଳେ
ମୁକ୍ତ ସକଳ ବନ୍ଧନ !
ସାଇଁ ସାଇଁ ବହେ ପବନ ।

[୧୯୨୩]



# ପ୍ରଣୟୀର ସ୍ୱପ୍ନ

ଯହିଁ, ସନ୍ଧ୍ୟା ସ୍ନିଗ୍ଧ ଅଳସ ନୟନେ ଗ୍ଭହେଁ,
ଯହିଁ, ମଳୟ ଅସୀମ ପ୍ରଣୟର ଗୀତ ଗାଏ,
ଯହିଁ, ନିତ୍ୟ ନବୀନ ଯୌବନ ବୀଣା ବାଏ,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଯହିଁ, ଗନ୍ଧ-ବକୁଳ ସମୀରଣେ ପଡ଼େ ଝରି
ଯହିଁ, ହାସ୍ନା ହେନାର ନିଃଶ୍ୱାସ ଉଠେ ଭରି
ଯହିଁ, ନିତ୍ୟ ମୁକ୍ତ ନବୀନ ପ୍ରଣୟତରୀ,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଯହିଁ, ସନ୍ଧ୍ୟା ପବନେ ଗୋଲାପ ପଡ଼େ ନା ଲୁଟି ;
ଯହିଁ, ସୌରଭାକୁଳ ମାଳତୀ ମଲ୍ଲୀ ଫୁଟି,
ଯହିଁ, ନିତ୍ୟ ପ୍ରଣୟ ଷଟ୍‌ପଦ କରେ ଲୁଟି,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଯହିଁ, ଅକାଳରେ ହେଲେ ବହେ ନାହିଁ ଥରେ ଶୀତ,
ଯହିଁ, ପ୍ରଣୟୀ କଣ୍ଠୁ ପ୍ରଣୟିନୀ ଶୁଣେ ଗୀତ,
ଯହିଁ, ନ ଫେରଇ ଆଖି କ୍ଳାନ୍ତ ଲୁହଇ ଶତ,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଯହିଁ, ଶ୍ୟାମ ପ୍ରାନ୍ତରେ ଗ୍ଭହିଁ ରହେ ଘାସ ଫୁଲ,
ଯହିଁ, ପ୍ରଣୟ କଣ୍ଠେ ଉଛୁଳେ ତଟିନୀକୂଳ,
ଯହିଁ, ନିର୍ଜ୍ଜନ ବନେ ନିର୍ଝର ବ୍ୟଥା ଠୁଳ,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଯହିଁ, ସମୀରଣ ଯାଏ ଗନ୍ଧେ ପଗ୍ରଗ ବୋଲି
ଯହିଁ, ପ୍ରଣୟୀ ସହିତେ ପ୍ରଣୟିନୀ ଖେଳେ ଦୋଳି,
ଯହିଁ, ପାଦପ ଲତାରେ ଝଲୁଇ କୁସୁମ ଥୋଲି,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଯହିଁ, ସନ୍ଧ୍ୟା ଗଗନେ ଝଲଇ ଇନ୍ଦ୍ରଧନୁ,
ଯହିଁ, ଭାସିଆସେ ମଧୁ କୋକିଲ କଣ୍ଠ ବନୁ,
ଯହିଁ, କୋମଳ ସ୍ୱରଟି ମଞ୍ଜୁଳ ନ ପଡ଼େ ମନୁ,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଯହିଁ, ସ୍ୱର୍ଗ ମର୍ତ୍ତ୍ୟ ଅସୀମାନନ୍ଦେ ନନ୍ଦନ,
ଯହିଁ, ମୁକ୍ତ ପ୍ରଣୟ ମାନେ ନାହିଁ ବାଧା ବନ୍ଧନ,
ଯହିଁ, କ୍ଳାନ୍ତ ବିଷାଦାନନ ମାନ ଝରଇ ଚୁମ୍ବନ,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଯହିଁ, ଗଗନେ ପବନେ ଅସୀମ ସ୍ୱପ୍ନ ଭରା,
ଯହିଁ, ନାହିଁ କୋଳାହଳ ବ୍ୟଙ୍ଗ ତୀବ୍ର ଖରା,
ଯହିଁ, ମୁଗ୍ଧ ନୟନେ ପ୍ରଣୟ ଅମୃହରା,
ଯହିଁ, ମଦରଗନ୍ଧେ ଯୌବନ ଦଏ ଧରା,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଆସ ପ୍ରଣୟିନୀ ସେ ଦେଶେ ଯିବା ଗୋ ଆସ,
ତୁମ ପାଶେ ତଳ ପିଇବ ବକୁଳ ବାସ,
ଦେଖିବା ସ୍ୱପ୍ନ ପ୍ରଣୟ ଅମର ହାସ,
ଭୁଲିବା ମରଣ ବେଦନା ବିକଳ ପ୍ରାସ !

[୧୯୨୪]



# ବନ୍ଦୀ-ସ୍ମୃତି

ଲତା ଲତା କାହିଁ କୋକିଳ ଉଠଇ ଗାଇ,
ମଳୟ ପବନେ ଅଜ ସେ ହେଲଣି ବାଇ,
ତା ପଛେ ମାତଇ ଛଇଲ କଜଳପାନ୍ତ,
ମନେ ପଡ଼େ ମୋର କେଉଁ ସ୍ୱପ୍ନର ସ୍ମୃତି !

କେଉଁ ସ୍ୱପ୍ନର ସନ୍ଧ୍ୟା ମୋ ଅବସାନ,
ସେ ପ୍ରଭାତ ଲାଗି କାନ୍ଦି ଉଠେ ମୋ ପ୍ରାଣ,
ପ୍ରଣୟୀ ଯେସନେ ପ୍ରଣୟ-ସ୍ୱର୍ଣ୍ଣ ଲାଗି
ଜନନୀ ଯେସନେ ରହେ ଶିଶୁ ଲାଗି ଜାଗି ।

ମନେ ପଡ଼େ କେଉଁ ଭୀଷଣ କାନନ ଭୂଇଁ
ବଙ୍କ ସେ ପଥେ ଏକା ବୁଲୁଥାଏ ମୁହିଁ,
ଲତା ନିକୁଞ୍ଜେ ମଳୟ ପହଁର ଯାଏ,
'କୁହୁ କୁହୁ କୁହୁ' ଅଥୟ କୋକିଳ ଗାଏ ।

ନିରଜନ ବନେ ରଚେ ମୋ ସ୍ୱପନ ସୃଷ୍ଟି,
ଭାସମାନ ପଦ୍ମ ପରାଗ ଗନ୍ଧେ ବୋଳି,
ସରଳ ସେନେହେ ଲାଖି ରହେ ମୋର ଦୃଷ୍ଟି
(କେତେ) ଶରଧାରେ ଯାଚେଁ କାନନ କୁସୁମ ତୋଳି ।

ସ୍ୱାଧୀନ ସ୍ୱପ୍ନ ସ୍ୱାଧୀନ ପ୍ରଣୟ ମୋର
ଜାଣି ନାହିଁ ଅଜ କାଏ ଗୋ ଭଙ୍ଗାଇ ଗଲା
ଛିନ୍ନ କଲା କେ ପୁଣି ସେ ସ୍ୱପ୍ନ ଡୋର
କେଉଁ ସଙ୍ଗୀତ ଉଚ୍ଛ୍ୱାସେ କର ମଲା !



# ପ୍ରୀତି-ଅନୁଭୂତି

ତୁମେ ମୋର ଚିର ଜୀବନ ତରୁଣି ସ୍ୱପନ,
ତୁମେ ମୋର ନବ କାବ୍ୟ ଅରୁଣି ବସନ,
ତୁମେ ମୋର ପ୍ରିୟ ବକୁଳ ମଦିର-ଗନ୍ଧ,
ତୁମେ ମୋର ନବ ଗୋଲାପ-କରୁଣାନନ୍ଦ ।

ତୁମେ ମୋ ନିତ୍ୟ କୋକିଳ କଣ୍ଠସ୍ୱର,
ତୁମେ ମୋ ସତ୍ୟ ମନୋହର ମନୟୂର,
ତୁମେ ମୋ ସନ୍ଧ୍ୟା ମୁଗ୍ଧ ଅଳସ ନୟନ,
ତୁମେ ମୋ ଚିତ୍ତ କେତେମତେ କର ହରଣ !

ତୁମେ ମୋର ନବ ନୀରଦ ଅଙ୍ଗେ ଚପଳା,
ତୁମେ, ମଳୟ-ଅଙ୍ଗ-ମୁଗ୍ଧ-ବକୁଳ-ମେଖଳା,
ତୁମେ, ଲହରୀ ଛନ୍ଦ
ନିତ୍ୟାନନ୍ଦ,
ମୁଁ ଗୋ, ତୁମରି ସେନେହେ
ମୁଗ୍ଧ ଅନ୍ଧ,

ତୁମେ, ନବ-ଯଉବନ-ମୁକ୍ତା-ମାଣିକ-ମୋତି
ତୁମେ, ନିର୍ଗଣ ବିଶ୍ୱେ ଦିବ୍ୟ ଅମର ଜ୍ୟୋତି !
ତୁମେ ତୃଷ୍ଣା ମରମେ ସ୍ୱର୍ଗ ଗଙ୍ଗାଧାରା,
ତୁମେ ମୋର ଦୂର ନୀଳ ଗଗନର ତାରା !
ତୁମେ, ଛଳ ଛଳ ଜୁହିଁ ମାଳତୀ ଗନ୍ଧ-ବନେ,
ପୁଣି, ଜ୍ୟୋସ୍ନା-ସପନ-ଅମର-ସିଂହାସନେ,

ତୁମେ, କେତେ ରୂପେ ମୋର ଅନ୍ତରେ ଯାଅ ଗାଇ,
ମୁଁ ଗୋ, ମୁଗ୍ଧ ପରାଣେ ଗଗନକୁ ରହେ ଚାହିଁ !
ନାହିଁ ଅବସାଦ,
ନାହିଁ ପରମାଦ,
ସଂଶୟ, ଭୟ,
ଦ୍ୱନ୍ଦ୍ୱ ବିବାଦ,
ଅସୀମ ପ୍ରଣୟେ ଚିତ୍ତ ବୃତ୍ତି ଲୟ !
ତ୍ୟାଗ ମନ୍ତ୍ରେ କରେଁ ମୁଁ ଗୋ ସବୁ ଜୟ !
ଆସ ନାହିଁ ପଛେ ଥରେ ହେଲେ ମୋର ବାସେ,
ଆସ ନାହିଁ କେବେ ମୋ ସୁଖ-ସ୍ୱପ୍ନ ନାଶେ ।

ନୀରସ ମର୍ତ୍ତ୍ୟ ଦିଅ ନାହିଁ କେବେ ଧରା,
ମୁଁ ଗୋ, ଦୂରୁ ଥରେ ଚାହିଁ ହୋଇବି ଆତ୍ମହରା ।
କଳ୍ପନାତୀତ ସୁଦୂର ସ୍ୱପ୍ନ ସ୍ପର୍ଶ,
ଅଗୋ, ଢାଳି ଯାଉ ନିତି କରୁଣ ଛନ୍ଦ ହର୍ଷ !

ମୁଁ ଗୋ, ନୀରବ ସେନେହେ ଢାଳି ଦେଉଛି ଏ ମତ,
ନୀରବ ଲୋତକେ ପୀରତିର ପରଶତ !

---

## ବ୍ୟଥା-ମାଧୁରୀ

ମଳୟ ଆଜ ପ୍ରାଣେ ଦିଅଇ କେତେ ବ୍ୟଥା
ମାତର ତୁମ ବ୍ୟଥା ମଧୁର,
ଶତ ମଳୟ ଛୁଟେ ଏ ପଥେ ଚଳି ଗଲି !
ଚାହିଁଛି ମୁଁ ବିରହବିଧୁର ।

ବକୁଳ ତରୁ ଶିରୁ ପଡ଼ିଲା ଝରି,
ବିଷମ ଲଜ୍ଜେ ମୁଁ ଗୋ ଗଲିଟି ସରି ।
ସପନ ପରି ଆସି          ସପନେ ଗଲ ଚଲି
ଗଭୀର ସ୍ନେହ କରି ବ୍ୟକତ
ମଧୁର ରୂପ ଗୋଟି          ଅସୀମ ଅନୁରାଗେ
ମନୁ କି କରିପାରେଁ ତ୍ୟକତ ?
ସୁନ୍ଦର ସତ୍ୟ ପ୍ରୀତି ପାଇଛୁ ଆଜ !
ଅସୀମ ଆଶା ସ୍ୱର ଉଠଇ ବାଜ !
ମଧୁର ଏଇ ଧରା          ତୁମରି ଲାଗି ପରା
ମଧୁର ଜନମେଷର ମିଳନ
ମଧୁର ଏଇ ପଥେ          ଜାତ ଗୋ ଜାରେଙ୍ଗିବା
ଅସୀମ କ୍ଷଣିକର ସପନ ।
ଯାଅ ଯାଇଛ ପୁଣି          ଆସିବ କେତେ ମତେ
ଅସୀମ ପରାଣର ଭରସା
ନୀରସ ଏ ହୃଦୟେ          ମଳୟ-ଗଗନରୁ
ବକୁଳ ଚନ୍ଦେ ଗୋ ବରଷା !
ଯାଇଛ ଯାଅ କିଛୁ ଭାବନା ନାହିଁ;
ପୂର୍ଣ୍ଣ ଗୀତ ମୋର ଯିବ ଗୋ ଗାଇ ।



# ମ୍ଳାନ-ଫୁଲ

ଯହିଁର ନାହିଁ ଥରେ ମଉଳି ପଡ଼େ
ମଳୟ ଉପବନ ଫୁଲଟି,
ସଜଳ ତା ସୁଷମା ସକଳ ସଉରଭ
ଧୂଳିରେ ଅଜି ହୁଏ ଟୁଳଟି ।
ଜୀବନେ ଅଉ କିଛି ନ ଦେବ ନାହିଁ
ଇତର ଲୋକପରି ଯାଅ ଗୋ ରହିଁ ।
ସେତିକି ଏ ଜୀବନ ପାଥେୟ ତାର
ସେତିକି ଜୀବନର ଧନ ଗୋ,
ଅସୀମ ଅନ୍ଧାରେ ହତାଶ ହାହାକାରେ
ଅମର ଅଲୋକର କ୍ଷଣ ଗୋ ।
ସେତିକି ପ୍ରତିଦାନ ପାରିବ ନାହିଁ ?
ବିଫଳି ବ୍ୟଥା ତାର ଯାଉଛି ଗାଇ ।
କାହିଁକି ଦେଖାଇଲ ସ୍ୱପନ ଲୋକ ?
ଏତେ ଯେନେହ ଏତେ ପୀରତି ?
କାହିଁକି ନିଠୁର ହେ କୁସୁମ ସୁକୋମଳ
ପଷାଣ ଗୋଟି ଦେଲ କରତି ?
ପ୍ରଣୟ ସୁଖ ଆଶା ତରଳ ମଧୁଭାଷା
କାହିଁକି ଢାଳିଗଲ ଯତନେ ?
କାହିଁକି, 'ଅସ ଅସ ଡାକଇ ମଧୁମାସ'
ଯୋହାଗେ କହିଗଲ ଗୋପନେ ?
କାହିଁକି ସେହି ମନ୍ଦ ମଧୁର ହାସ ?
ସକଳ ସ୍ମୃତି ଅଜି ଦଅଇ ତ୍ରାସ

ତୁମର ପୂଜାରେ ଯେ ଅରପି ଥିଲା ମନ
ତରୁଣ ଦେହ ଯଉବନ ଗୋ,
ଫୁଲକୁ ଯେଉଁ ଥରେ ହସିଗେ ହତାଦରେ
କହିଲ "ନାହିଁ ପ୍ରୟୋଜନ" ଗୋ ।
କହିଲ ନାହିଁ ପଦେ ମଧୁର କଥା,
ଗମ୍ଭୀର ବ୍ୟଥାରେ ସେ ନୋଇଁଲା ମଥା ।
ଆଜ ସେ ଅନାଦୃତ ଏକାକୀ ବନ୍ଧୁ ହେ
କାହିଁକି ଷଣେ ବହେ ମଳୟ,
କାହିଁକି କଲ୍ପନା ଛଳନା ହାହାକାରେ
ଭରମେ ତୋଳେ ସ୍ୱର ନିଳୟ ?
ମୁରଲୀ ଷଣେ କମ୍ପା ଯାଏ ଗୋ ଡାକ
କାହିଁକି ମରେ ପ୍ରାଣ ପ୍ରଣୟ ଗୁଣି ?
ଝଡ଼ିଗଲଣି ତାର ସକଳ ଗଉରବ
ଆଜ ସେ ଦୀନ ହୀନ ପ୍ରାଣୀଟି,
ତେବେ ବିଷମ ଆଶା ଆକୁଳ କରେ
ଫଗୁଣ ପାରୁନାହିଁ ଜାଣିଟି ।
ମର୍ତ୍ତ୍ୟେ କାହିଁ ମିଶି ପାରେ ସେ ନାହିଁ
ସକଳ ପୂର୍ଣ୍ଣ ତା' ଗଲେ ଗୋ ଗୁହିଁ !
ତୁମେ, କେସନେ ଭୁଲିଗଲ ସରଳ ପ୍ରୀତ
ଗମ୍ଭୀର ଜୀବନର ଦାନ ଗୋ ।
ଲକ୍ଷ ହତାଦରେ କାହିଁ ତ ହେଲେ ଥରେ
ଭୁଲେନା ତା ମଉଳା ପ୍ରାଣ ଗୋ
ଜୀବନେ ଲୋଡ଼ା ତାର କିଛୁ ତ ନାହିଁ,
ଅଦୂରୁଁ ଥରେ ଖାଲି ଯାଅ ନା ଗୁହିଁ ।



# ଗୋପ ବାଳକର ପ୍ରୀତି ଅନୁଭୂତି

ଦେଖିଲେ ଥରେ ତାର      କଜଳ କଳା ଆଖି,
ପଥିକ ପ୍ରୀତି ଫାନ୍ଦେ      ପଡ଼ିଣ ଯିବ ଲଖି ।
କଳା ସେ କଳା ହେଉ      ଶୋଚନା କିଛି ନାହିଁ
ମୁଁ ଗୋ ତାହାରିପାଇଁ      ସେ ତ ମୋହରିପାଇଁ ।

ଦେଖଇଁ ନିତି ତାକୁ      କୁଟୀର ପଥ ପାଖେ
ମତ୍ତ ମରାଳ ପରି      ଚଳେ କଳସୀ କାଖେ
ଦେଖିଲେ ମୋତେ ସେ ଗୋ ଲାଜରେ ମରେ ବୁଡ଼ି
ତଳକୁ ପୋତି ମଥା      ଫେରାଇ ନିଏ ଭୁରୁ ।

ଲଳିତ ଯଉବନ      ତା ଦେହୁଁ ପଡ଼େ ଫାଟି,
ଶ୍ୟାମଳ ଶାଢ଼ୀ ଖଣ୍ଡି      ଯତନେ ପିନ୍ଧେ ଅଣ୍ଟି ।
ଚିଲିକା ପ୍ରାନ୍ତରେ ମୁଁ      ବଇଁଶୀ ଦେଲେ ବାଇ
ସକଳ ଲାଜ ତେଜି      ମୋ ପାଶେ ଆସେ ଧାଇଁ ।
ନିବିଡ଼ ଚୁମ୍ବନେ ମୁଁ      ହୃଦୟେ ଧରେ ଟାଣି,
ନୀରବ ପ୍ରୀତି ଅନ୍ତେ      ବିରହ ଦିଏ ହାଣି ।

[୧୯୨୫]

# ଗୋପ ବାଳାର ଅଭିଯୋଗ

ତୁମକୁ ମୋହ ରାଣୀ      ଝାଡ଼ ପଣନ୍ତ କାହ୍ନ,
ଜାଗିବେ ପୁରନାରୀ      ପାରିବେ ସବୁ ଜାଣି ।

ଛି, ଛି, ତୁମର ରୀତି      ନ ଗଲା କାଳେ ଢାଳେ,
ମୋ ପୋଡ଼ା କରମକୁ      ପଡ଼େଁ ମୁଁ ତୁମ ପାଲେ ।

ଦେଖିଲି ଗିରି ଶିରେ    ମଳିନ ଶଶଧର,
ଗଲେଣି ବୁଢ଼ି, ଅଳି    ନ କର ହରବର ।

ପୂରୁବ ଦିଗୁଁ ପୁଣି    ସିନ୍ଦୂରି ଅସେ ଫାଟି
ଶୁଭଇ ତରୁ ମେଳୁ    ଖଞ୍ଜନ କାଳ ପାଟି ।

ଚିଲିକା କୋଳୁଁ ଧୀରି—    ଶୀତଳ-ସମୀରଣ
ଉଠି ଅସଇ ହୁଅ    କମ୍ପଇ ଘନ ଘନ ।

ଛୁଟି, ଛୁଟି, ଏ ଚୁମ୍ବନ !    ମିନତି, ଥାଉ ଥାଉ !
କପୋଳ ଅରୁଣିମା    ନିଭିବ ନାହିଁ ଅଜି ।

ମଳିନ କର ଗଣ୍ଡ    ଅଧର କେଶ ବେଶ,
ତେବେ ତୃପତି ନାହିଁ    ତୁହିଁରି ପ୍ରୀତି ଶେଷ ।

[୧୯୨୫]

## କଳ୍ପନାମୟୀ

ଚିର କଳ୍ପନାମୟି !
ତୁମ, ଉଜ୍ଜ୍ୱଳ ରୂପ—    ଅରୁଣ-ଆଲୋକେ
ହସିଥିଲା ମୋର ମନ୍ଦ୍ରି ।
ଉଜ୍ଜ୍ୱଳ ଉଷା ତରୁଣ ଜୀବନେ,
ପୁଣ୍ୟ-ତାରକା ଚପଳ ସ୍ୱପନେ,
ତୁମରି ପରଶେ    ଜୀବନର ଗାଥା
ଛନ୍ଦେ ଯାଉଛୁ କହି
ଚିର କଳ୍ପନାମୟି ! ୧ ।

ରୂପର ପିପାସା          ଜଗାଇଲ ପ୍ରାଣେ
ବହାଇଲ ଲୋତକଧାର !
ସ୍ୱପ୍ନମୟି ଗୋ ଚିର ସୁନ୍ଦର,
ଧନ୍ୟ କଲ ଏ ମରୁ ଅନ୍ତର,
ବୋଲିଦେଲ କାହିଁ          ମଧୁ ମଳୟର
ନବ ମଲ୍ଲିକା ବାସ,
ଦେଖିଛି ମନ୍ଦ ହାସ,
ଭୁଲିଛି ଜୀବନେ          ଶତ ବିଫଳତା
ଭୁଲିଛି ଗୋ କ୍ଷତ ତ୍ରାସ । ୨ ।

ଅଗୋ, ଉତ୍ସବମୟି !
ମୋ ତରୁଣ ମନ          ରମ୍ୟ କାନନେ
ତୁମେ ଗୋ ସର୍ବଜୟୀ ।
ରୂପର ଅମର          ସେ ପୀୟୂଷ ରାଖି,
ଅପଲକ ମୋର          ମୁଗ୍ଧ ଏ ଆଖି,
ଧନ୍ୟ ଜୀବନ ଧନ୍ୟ ସ୍ୱପନ—
ଧନ୍ୟ କବିତା କବି,
, ତୁମ ରୂପ ବିଭା ଲଭି,
ମନେ ନାହିଁ ମୋର          ଦୁଃଖର ଦିବା
କେସନେ ଯାଇଛି ବହି,
ଅଗୋ ଉତ୍ସବମୟି ! ୩ ।

ଅଗୋ କୌତୁକମୟି !
ହେ ଚିର ଚପଳ          ଚିର ଚତୁରେ
କବି ପ୍ରାଣ ଯାଏ ଦହି ।
ସନ୍ଧ୍ୟାର ମେଘ !          ପୀରତର-ରାସ !
ମନ୍ଦ ସେ ହାସ          ସୁମଧୁର ପ୍ରାସ,

ସୁଦୂର ଗଗନ ଇନ୍ଦ୍ରଧନୁ ଗୋ
ପଡ଼ ନାହିଁ କେବେ ଧରା,
ତୁମଲାଗି କବି ପରା—
ଖୋଜଇ ଅକୁଳେ ପ୍ରାନ୍ତର ବନ
କ୍ଷୁବ୍‌ଧ ଅମ୍ଭ-ହରା !
ଅକୂଳ ଜୀବନ ଶ୍ୟାମଳ କ୍ଷେତେ
ଥରେ ଗୋ ମଳୟ ବହ,
ଲୁଚ କୌତୁକମୟି ! । ୪ ।

ହେ ଚିର ପୁଣ୍ୟମୟି !
କବି ଯୌବନେ ପୌଷ ପବନ
ଆଜି ଖରେ ଯାଏ ବହି !
ଝରେ କଣଳୟ, ସୁପ୍ତଛନ୍ଦ,
ଶୂନ୍ୟ କାନନେ କୁସୁମ ଗନ୍ଧ,
ଶୂନ୍ୟତା ଚିତ— ମନ୍ଦିରେ ଆଜି
ବେଦନା ଅଶ୍ରୁ ପୂଜା;
ରୂପ-ରହସ୍ୟ ପଡ଼େ ନାହିଁ ଛଳେ ବୁଝା !
ସବୁ ଅସ୍ଥିର, ସବୁ ନଶ୍ୱର,
ସକଳ ମେଳେ ଗୋ ତୁମେ ସୁନ୍ଦର,
ହସୁଛ ଜୀବନ ଅରୂପ ପଦ୍ମ !
ଅତୀତର କଥା ଭୁଲି,
ଅଣିଛୁ ଅର୍ଘ୍ୟଥାଳି,
ସ୍ୱପ୍ନଲୋକର ଅଶ୍ରୁ ହାସ୍ୟ
କହ ନେବ ଅବା ନାହିଁ ?
ଅଗୋ କଳ୍ପନାମୟି !



# ଅରୂପ-କୁସୁମ

ଆଜି ଇନ୍ଦ୍ରଧନୁର ସପ୍ତରଙ୍ଗେ
ତୁମର ରୂପ ଝଲିଲା
ଅରୂପ କୁସୁମ ତୋଳିବାକୁ
ମନ ବଳିଲା ।
ଝରେ ଝର ଝର ବର୍ଷା ବିନ୍ଦୁ,
ଉଚ୍ଛୁଳେ ପୀରତି କନକ ସିନ୍ଧୁ,
ଆଜି ନାହିଁ ମୋର ଭାଷା କେସନେ ସଜନି
କହିବି ପୀରତି ଜଳିଲା !
ଅସୀମ ପିପାସା ! ଆକାଶ କୁସୁମ
ତୋଳିବାକୁ ମନ ବଳିଲା ।

ତୁମର ବିରହେ ସୃଷ୍ଟି ଅଲେକେ
ଅମୃତ ଆଶା ଖେଳେ !
ଆଗୋ, ମଧୁର ବର୍ଷା ମେଳେ !
ମୁଁ ଗୋ, ବନବିହଙ୍ଗ ଏକା ଏ କୁଟୀରେ
ଧରେ ତାନ ଅବହେଳେ !
ସେ ଗୋ, ମେଘ ମଲ୍ଲାର ଅବା ଜାଣେ ନାହିଁ,
ତୁମର ସେ ନାମ ବହୁଲେ ଗାଇ,
ନିମୀଳିତ ଆଖି ଦେଖଇ ଗଗନ—
ଭୁବନ ଧୈର୍ଯ୍ୟ ଟଳିଲା,
ଅପରୂପ ରୂପ ପାଦପ
ଲତାରେ ଝଲିଲା !



## ଉଷାଲୋକେ

ଅଳସ ଉଷାର ଆଲୋକେ ଝଲଲ
କାହାର କନକ ଅଙ୍ଗ;
କ୍ଳାନ୍ତ ପରାଣ ସେ ରୂପେ
ରହିଲ ଲଙ୍ଗି !

ଅପେ ଅ୍ଟପ ଅଳ ସବୁ ବନ୍ଧନ,
ସକଳ ଦୈନ୍ୟ ଗ୍ଳାନ କନ୍ଦନ,
ଗଲଗଲ ଧୀରେ ଯେସନ ନୀହାର
କ ପୀରଭ ସୁଧା ଗୁଙ୍ଗି !
କାହାର କନକ ଅଙ୍ଗ ।

ସେତ, କ୍ଷଣିକର ଆଶା, ସେନେହ, ପୀରତ,
କ୍ଷଣିକ ସ୍ୱପନ ମାୟା,
ମୋର, ବିକଳ ପରାଣ ଖୋଜ ବୁଲେ ସେହ
ଅକୂଳ ନୟନ ଛାୟା !

ସେହ, ତରୁଣ ପରାଣ କରିବାକୁ ପାନ
ଦବା ନିଶି ତୋଳେ ମୋ କରୁଣ ଗାନ,
(ମୁଁ ଗୋ) ପୂର୍ଣ୍ଣ କରିବି ସେ ଆଲୋକ ତେଜେ
ଜୀବନେ ରହେ ଯା ବାକି,
ରୂପ ପାରିବାରେ
ସେ ପୀରତ ସୁଧା ଗୁଙ୍ଗି ।



—୪୦

# ରୂପଲହରୀ

ଭୁବନେ ଖେଳଇ ରୂପର ଲହରୀ
ଗଗନୁ ଝରଇ ଅରୂପ ମଧୁ
ସବୁ କଥା ଭୁଲି ଆସ ଏ ବିଜନେ
ପିଇବା ବସି ଗୋ ଜୀବନ ବନ୍ଧୁ ।
ଯାଏ ଯୌବନ କେତେ କଥା ଭୁଲି,
ପୂରେ ନାହିଁ ଦିନେ ଚିତ୍ତ ଏ ଥାଳି,
"ସଫଳ କର ତୋ ଜନମ !" ଡାକଇ
ନଦୀ ଅରପାରୁ ଚକୋର ବଧୂ;
ସନ୍ଧ୍ୟାରୁ ଝରେ ଅରୂପ ମଧୁ ।

ଅସୀମ ଏ ରୂପ ସତ୍ୟ ନିତ୍ୟ,
ମିଥ୍ୟା ସକଳ ସପନ;
ଜୀବନର ବ୍ୟଥା କ୍ରନ୍ଦନ ଭୁଲି
ସଜନି କରିବା ବରଣ ।
କାହା ରୂପେ କହ ବିଭୋର ସନ୍ଧ୍ୟା,
ବକୁଳ ମଲ୍ଲୀ ରଜନୀଗନ୍ଧା ?
କାହା ରୂପେ ବାଇ ଅଙ୍କ ଏ କୋକିଳ
ଗାଇଯାଏ ଗୀତ ଅଶାର ଛନ୍ଦୁ,
ଭୁବନେ ଖେଳଇ ରୂପର ଲହରୀ
ଗଗନୁ ଝରଇ ଅରୂପ ମଧୁ ।



# ନବ ବର୍ଷାନୁଭୂତି

ନବୀନ ବରଷାରେ ତୁମର ଅନୁଭବ ମଧୁର,
ମଧୁର ପୁଣି ସ୍ୱରସୋହାଗୀ ଏ ଗୃତକ ବଧୂର ।
ମଧୁର ମନ ମତେ,
ଏ ବାତାୟନ-ପଥେ—
ଶୁଣିବା ଦୂରପଥ ବଧୂର,
ତୁମର ଅନୁଭବ ମଧୁର !

ବରଷା ଝର ଝର ଘନ ତିମିର ନଭୁଁ ଝରଇ,
କେତେ ବାସନା ଜାଗି ତରୁଣ ମରମରେ ମରଇ !
ସମୀର ଅବିରଳ,
ହସଇ ଖଳ ଖଳ,
ନବୀନ ପ୍ରୀତିସମ ଥରଇ !
ବାସନା ମରମରେ ମରଇ ।

ପୀରତି-ବେଦନା-ପ୍ରାଣ ବରଷା କୋଳେ ଏକ ହୁଏ ଗୋ,
କୁଟୀରେ ବସି ବସି ବେଦନା ନୟନେ ନୀର ଭରେ ଗୋ,
ବରଷା ଅନୁଭବ,
କବିତା ନବ ନବ,
ବିରହେ ଗଲେ ସହଚର ଗୋ,
ଭୁଲେଁ ସାନ୍ତ୍ୱନା ଯତ୍ନ କର ଗୋ ।

ସେନେହ-ସିକ୍ତ ନେହେ ଦେଖନ୍ତୁ ଚପଳାର ଚଳଣି,
ଅନ୍ଧାର ମେଘ କୋଳେ ଯୁଗଳ ପ୍ରାଣ ଏକ ସଜଣୀ,

ଭୁଲି ସଂସାର ମାୟା,
ବେଦନା ଦୁଃଖ ଛାୟା,
ତରୁଣ-ପୀରତିର-ବରଣ-ସୁଖ-ଭୋଗ, ସଜନି !
ବରଜ ସମୀରଣେ ଯେସନ ସ୍ୱପ୍ନାବେଶେ ରଜନୀ ।।



## ଅଭିସାର-ସ୍ମୃତି

ସେ ତ ଆସିଥିଲା ଦିନେ ଏସନ ନୀରବ ରାତିରେ,
ମୋର ତରୁଣ ମନଟି ଅଧୀରେ ଉଠିଲା ମାତିରେ ।
ଆସିଲା ଯେସନେ ନିଶାର ସପନ,
ଲୋତକପୂରିତ କଜଳ ନୟନ,
ସେ ବା, ମଳିନ-ମଳୟ-କୁସୁମ-ବେଦନା
ବହି ଆଣିଥିଲା ଛାତିରେ,
ଆସିଥିଲା ଦିନେ
ଗଭୀର ନୀରବ ରାତିରେ ।।
ଟକେଉଁ ବିରହର ରୁଦ୍ଧ ଦୁଆରେ
ଡାକିଲା ଚକୋର ଭିଖାରୀ,
ଅବୋଧ ଚଞ୍ଚଳପାତି କାହା ପାଶେ
ଘନ ଘନ କଲା ଗୁହାରି ?
ବିକଳ ଜୋଛନା ! ଢାଳିଲା ସେ ଗୀତ,
କୋମଳ ହୃଦୟ ହେଲା ତା ଅଧୀର,
କହିଲା···“ଚବି ଗୋ ଗାଇବି କି ଥରେ
ବେଦନାର ରାଗ ଚଢିରେ
ଅଜି ଏ ଗଭୀର ରାତିରେ ?”

ଛୁଇଁଲି ବୀଣାର କରୁଣ ତାରଟି
ଝରିଲା ଗଗନୁ ଲୋତକ,
ବସିଥିଲା ପାଶେ ପାଷାଣୀ ସମୀରେ
ଉଡ଼ୁଥିଲା ତାର ଅଳକ ।
ଥିର ହେଲା ଗୀତ କରି ହାହାକାର !
କଣ୍ଠହାର ସେ ଦେଲା ଉପହାର,
ଶୂନ୍ୟେ ମିଶିଲା ହତାଶ ଯେସନେ
ଚିର କଳ୍ପନା ସାଥିରେ !
ଅସିଥିଲା ପାଶେ
ଗମ୍ଭୀର ନୀରବ ରାତିରେ !



## ନବ ବର୍ଷା ସଙ୍ଗୀତ

ପାଚିଲେ କଲଣି ନବୀନ ବର୍ଷା
ଛଳନ୍ତ ମନ !
ମଳୟ ଯେସନେ ଜୋଛନା ଗନ୍ଧେ
କୁସୁମ ବନ !
କ୍ଲାନ୍ତ ନୟନେ ଦୂରେ ନିରେଖିବା
ମିଥ୍ୟା ! ସତ୍ୟ ଖୋଳି ଭାସିଯିବା !
କ୍ଷିପ୍ତ ପାଗଳ ସମୀରଣ ଡୁଲେ !
ଡାକନ୍ତି ଘନ,
ଉପେକ୍ଷା କର ବିଷାଦ କ୍ଳାନ୍ତ
ଛଳନ୍ତ ମନ !

ଦଳିତ ପରାଣି,          ଯୌବନ ମୋର,
ଗାଅ ରେ ଅଜ !
ଯୌବନ ମୁହିଁ          ନିତ୍ୟ ଅମର !
ଜର୍‌ପଦେ ମୁଁ କି ପଡ଼ିବ ଭାଜ ?
ଜୀବନ କାହିଁରେ ଜୀବନ କାହିଁ ?
ଏ ଭୁବନ ତଳେ,
ବଜ୍ର ବାଦଲେ,
କହ କାହିଁ ତଳେ,
ସେ ଅଲୋକ ମିଳେ ?
ଚିର ଅନନ୍ଦ, ଜୀବନ କାହିଁ ?
ସ୍ଥୂଲ୍ କଳ୍ପନା ପବନ ସନ୍ତତେ
ଏଇ ମୃତ ଦେଶେ,
ଜୀବନ ନାହିଁ ଗୋ,
ଜୀବନ ନାହିଁ ।
ଗାଅ ଗୋ ଦଳିତ ବୃକ୍ଷ ଲତିକା
ନଦୀ ପର୍ବତ ପୁଲକ ପ୍ରାଣେ,
ବର୍ଷା ଅସିଛୁ ବକ୍ଷେ ଅଜ ରେ
ଅସିଛୁ ଅପାର କବିର ଗାନେ ।
ଗୋଲାପ ପ୍ରାଣର ବୁହଁରୁ କି ଥରେ
ମଳିନ କ୍ଳାନ୍ତ ନୟନ ମେଲି ?
କବିତା ରସିକ ହାସ୍ୟ ହେନାର
ଦୁଆରେ ବର୍ଷା କରଇ କେଳି !
ଖେଳେ ସେ ଗଗନେ ପବନେ ଅଜ,
କବିତା ଛନ୍ଦେ ପଡ଼ଇ ଭାଜ,

ସ୍ୱପ୍ନ-ବର୍ଷେର ଧରଣୀ ଗନ୍ଧେ
ରସିଛୁ ଆଜ !
ବିଶ୍ୱ ମୁକ୍ତ ସକଳ ରନ୍ଧ୍ରେ,
ନବ ଆନନ୍ଦେ, ।
ଅମରର ଗୀତ
ଉଠଇ ବାଜି !
ସକଳ କଣ୍ଠେ ଜୀବନ ! ଜୀବନ !
ଅସୀମ ପୀରତ କାହିଁ !
ବନ୍ଧନ ସବୁ ମୁକ୍ତ କର ଗୋ
ଦୂରଦେଶେ ଯିବା ଧାଇଁ !
ବିଶ୍ୱ ତନ୍ତ୍ର ଏକଇ ଛନ୍ଦ,
ଏକଇ ପୁଲକ, ପ୍ରୀତ ଆନନ୍ଦ;
ଶୁଣ ଶୁଣ କବି ମୂର୍ଖ, ଅନ୍ଧ !
ଏକଇ ପାଗଳ ଦଶେ,
କାହାର କ୍ଷୁଷ୍ଣ କ୍ଷିପ୍ର ସ୍ୱରଟି
ସାନ୍ଦ୍ର ବାଦଲେ ମିଶେ !
ସଙ୍ଗୀତ ମେଳେ ପୀରତର ମେଳେ
କବିତାର ଅନୁଭବ, .
ଆରେ ବର୍ଷାର ଉତ୍ସବ !
କୋଳାହଳ ଭେଦ ଉଠଇ ଗଗନେ
ପିପାସା ଆଶାର ରବ ।
ଗାଅ ଗାଅ କବି ଜୀବନର ଗୀତ,
ଆନନ୍ଦ କର କର ଗୋ ଚକିତ,
ପ୍ରେୟସୀ ଆଜ ତାଳଦିଏ ତାର
ସକଳ ଧନ !
ନବ ବର୍ଷାରେ ନବ-ଆନନ୍ଦ-
ନିମନ୍ତ୍ରଣ !



# ଅନୁଶୋଚନା

ପାଶୋରିବି ବୋଲି ବିଫଳ ଜୀବନେ
ଭାଳଇଁ ଥରକୁ ଥର,
କାହିଁ ପାଇଁ ପୁଣି ଯଉବନେ ବାଜେ
ଗମ୍ଭୀର କରୁଣ ସ୍ୱର !

କାହିଁକି ଗଗନେ ହସଇ ସନ୍ଧ୍ୟା,
ଫୁଟଇ ମଲ୍ଲୀ ରଜନୀଗନ୍ଧା,
ମୁଁ ଯେ, ଶୂନ୍ୟତା ମେଲେ ରଚିବି ସ୍ୱପ୍ନ
ନିତି ନିତି ପ୍ରୀତି ଭର !
ପାଶୋରିବି ବୋଲି
ଭାଳଇଁ ଥରକୁ ଥର ।

ମୁଁ ଯେ, ଶ୍ରାବଣ ରଜନୀ ସ୍ୱର୍ଣ୍ଣେ ହୃଦୟ
କରିବି ଅଶ୍ରୁସିକ୍ତ,
କ୍ଷିପ୍ର ସମୀରେ ଚପଳା ହାସ୍ୟେ
କହିବି "ରିକ୍ତ ରିକ୍ତ !"

ଜୀବନରେ ଯାହା ନୁହଁଇ ହେବାର
ବିଫଳ ତା ଲଗି ଏତେ ହାହାକାର
ହତାଶର ଗୀତେ ପୂର୍ଣ୍ଣ ଜୀବନ !
ସେ ଅଶାନ୍ତି ମନୋହର !
ପାଶୋରିବି ବୋଲି
ଭାଳଇଁ ଥରକୁ ଥର !



# ବିଦେଶିନୀ

ଶାନ୍ତ ସନ୍ଧ୍ୟା    ହସଇ ମଧୁରେ
    ମୁକ୍ତ ନୀରବ ସରଣୀ
ବିଦେଶିନୀ ଆଗୋ   ମେଲ ଦିଅ
    ତବ ତରଣୀ ।
        ଯୌବନର ଏ ମଧୁର ଯାତ୍ରା !
        ପରଶଇ ନାହିଁ ବିଷାଦ ମାତ୍ରା !
      ଯହିଁ ଅଭିଳାଷ   ମୌନେ ଚଳ ଗୋ
        ହସଇ ବିଶ୍ୱର ଅବନୀ ।
        ମେଲ ଦିଅ ତବ ତରଣୀ ।

ନବ ଯୌବନ   ଫାଟି ପଡ଼େ ସବୁ
    ଆଜ ଏ ମୁଗ୍‌ଧ ସନ୍ଧ୍ୟାରେ,
        ଯେସନ ଗନ୍ଧ—
    ମଲ୍ଲୀ ରଜନୀଗନ୍ଧାରେ !
ମୁଁ ଗୋ, ଭୁଲି ଆପଣାକୁ   ପିଏଁ ସେହି ସୁଧା
  ନୀରବେ ବସି ଏ ଅନ୍ଧାରେ ।
 ହେ ଅପରିଚିତା ! ବିଦେଶିନି
(ତୁମେ) ସ୍ୱପ୍ନ ? ସତ୍ୟ ? ମାୟାବିନୀ ?
(ମୋର) ଅନ୍ତର ମନ      ଗାଉଛି ଅଧୀରେ
        ତୁମରି ମଧୁର ଆଗମନୀ !
        ମନ୍ଦ ମଧୁର ସୁରଧୁନୀ,
        ତୁମେ ମାୟାବିନୀ !

ଝଲଇ ମଧୁରେ କୋମଳ କପୋଳେ
ଅସ୍ତ ରବିର ଚୁମ୍ବନ;
ନିମୀଳିତ ଅଖି ଅମୃତ ହାସ
ପରଶି ଅବା କ ସ୍ପନ୍ଦନ !
ସେଇ ହାସେ ପ୍ରାଣ ଭସାଇବାପାଇଁ,
ଅକୂଳ ଗଗନ ସମୀରଣ ବାଇ,
ପକ୍ଷିକଣ୍ଠ ଖରେ ଉଠେ ଗାଇ
ଅଧୀରେ ଆସଇ ରଜନୀ
ମେଲଦିଅ ତୁମ ତରଣୀ !
ସମୀରେ ଦୋଳଇ କବରୀ, ଅଙ୍ଗେ
ରହେ ନାହିଁ ନୀଳ ଅଞ୍ଚଳ,
ତରୁଣୀ ରୂପର ନିମେଷ ସ୍ପର୍ଶେ
ସକଳ ବିଶ୍ୱ ଚଞ୍ଚଳ !
ଚଞ୍ଚଳ ପ୍ରାଣ ଯେସନେ ଚପଳା
ଗମ୍ଭୀରେ ଚଳେ ମାତର ସରଳା
ତରୁଣ କମଳ ବନେ ମୋ କମଳା
ଚଳ ଗୋ କନକବରଣି !
ମାଡ଼ିଆସେ ଭୀମ ରଜନୀ !
ଗାଇବି ବସି ମୁଁ — ମୁଗ୍ଧ ସ୍ୱପ୍ନେ ?
ଛନ୍ଦ ନୁହଇ ସ୍ଫୁରଣ,
ଅଙ୍କାଡେ କରୁଁ ଖସିଛୁ ଚନ୍ଦ୍ର
କରିଛ ଏ ମନ ହରଣ ।
କୋମଳ ଅଙ୍ଗ କୁସୁମ ଗନ୍ଧେ
ମୁଗ୍ଧ ପରଶ ସ୍ପନ୍ଦିତ ।

ଝୁଣ୍ଟୁ ମୋ ମନ-ମଳିନ-ଗଗନ
ସ୍ୱପ୍ନେ ହେଲଣି ରଞ୍ଜିତ ।

ଆଜ ତୁହେଁ ଗୀତ ! ରୂପ ପାରିବାରେ
ଯୌବନ ଅରପଣ !

ଆଜ ଦେବା ଖୋଲି ମୁକ୍ତ ପରାଣେ
ସଞ୍ଚିତ ସବୁ ଧନ !

ନାଅ ନାଅ ତୁମେ ତରୀ ଧୀରେ ବହି,
ସ୍ୱପ୍ନଘାଟରେ ବାନ୍ଧିଲେ ସହି,
ଖସିପଡ଼େ କାନ୍ତୁ  କୁସୁମଟି ଧୀରେ
ଖୋଞ୍ଜି ଦେବ ଅଗୋ ରମଣି ?
ଢୁଲ ଢୁଲ ଦୂରେ
ଆସଇ ରୁଦ୍ର ରଜନୀ !



## ଅଶ୍ରୁ ଉପହାର

ନିତ ନିତ ବସି ତୁମର ବିରହ
ଅଶ୍ରୁରେ ଗଢେଁ ହାର,
ଏତକ ମୋହର ଜୀବନର ତୁଳେ
ଅନ୍ତିମ ଉପହାର ।

ପାଇ ନାହିଁ ଆଉ କିଛି ତ ଜୀବନେ,
ଭରମିଛି କେତେ ତରୁଣ ସପନେ,
ସକଳ ହର୍ଷେ  ସୁଖ-ଆନନ୍ଦେ
ବାଜେ ଉଠେ ହାହାକାର !
ଅଶ୍ରୁରେ ଗଢେଁ ହାର ।

ଏକଇ ଜୀବନ ବିଫଳ ଗୋ ମୋର
ତହିଁ କାର ଲଭ ହାନି ?
ମୁଁ ତ, ଛୁଟାଇ ଦେଇଛି ସକଳ ମମତା
ଶୁଣିବି ବୋଲି ସେ ବାଣୀ ।

ମୁକ୍ତ ପବନେ ବଢ଼ାଏ ମୋ କର,
କହେ ପ୍ରିୟତମ ଧର ଧୀରେ ଧର !
ଜୀବନର ଶର କଣ୍ଟକ-ପଥେ
ଛିଣ୍ଡିଯାଏ କ୍ଷୀଣ ତାର,
ଅଶ୍ରୁରେ ରଚେଁ ହାର !
(ସମାଧି-ସ୍ମୃତି)

[୧୯୨୫]



## ପ୍ରଶ୍ନ

ଜୀବନଟା କି ଖାଲି ଅକୂଳ ନୟନରେ
ଚାହିଁବା ?
କୁଟୀରେ ଏକା ବସି ଉଦାସ ଗୀତ ନିତ
ଗାଇବା ?
ପାଗଳ ବେଶ ସାଜି,
କ୍ଷିପ୍ତ ଘନ ଆଜି
ଉଦାସେ କହି ଯାଏ ଯାହାକୁ ଖୋଜୁ
ସେ ତୋ କାହିଁ ବା ?
ସକଳ ଭୁଲି ଆସ ପାଗଳ ଗୀତ ଆଜି
ଗାଇବା ।

ସୁଦୂର ଅତୀତରେ ଭରମ ହେଲ
ଥରେ ଜୀବନେ;
ଅଜ କି ନ ଫେରିବ ଶାନ୍ତ ସୁଖ
କ୍ଷଣ-ସପନେ ?
ଦଳିତ ଏ ପର୍ବଣେ ସେ କର ଯିବ ନାହିଁ
ପରଶି ?
ଧନେ କି ସୁଶୀତଳ ବାଦଲ ଯିବ ନାହିଁ
ବରଷି ?
ସଞ୍ଚିତ ଅଖି ଜଳ,
ତହିଁ କି ନାହିଁ ଫଳ ?
ସୁଖର ଅଶା ଭର ପ୍ରିୟର ଅନୁରୂପ
ଧାୟିବା ?
ଜୀବନଟା କି ଖାଲି ଅକୁଳ ନୟନରେ
ଗୁହିଁବା ?

—୧୯୨୫— (ସମାଧି-ସ୍ମୃତି)



# ମୁକ୍ତ ସେନା

ମୁକ୍ତ ସେନା ! ମୁକ୍ତ ସେନା !
ଦୁଃଖ କି ଭାଇ ? କି ଅବା ଭୟ ?
ନାୟକ ତୋହର ଅନ୍ତର ଶର
କରାଳ ମୃତ୍ୟୁ କରନ୍ତୁ ଜୟ ?
ଗର୍ବେ ନିଶାଣ ଅଜ ତୋଳି ଧର !
ମୃତ୍ୟୁ ଦୁଃଖେ ଫୁତ୍କାର କର !

ପୋଛ ରେ ଅଶ୍ରୁ ଅଟ୍ଟହାସ୍ୟେ
ମିଳିତ କର ତୋ ଶକ୍ତିଚୟ;
ଭୈରବେ ଗାଅ, ଗମ୍ଭୀରେ ଗାଅ,
ସତ୍ୟକୁ କିଏ କରିବ ଜୟ ?
ନାହିଁରେ ଭୟ !
ତୋହର ତ୍ୟାଗର ଭସ୍ମ ଉପରେ
ଉଡ଼ିବ ସତ୍ୟ ଧ୍ୱଜା !
ଅରେ, ଭୈରବ ଭେରୀ ବଜା !
କମ୍ପି ଉଠ୍ ରେ ଶୀତଳ ରକ୍ତ
କମ୍ପୁ ମିଥ୍ୟା ମଜ୍ଜା ।
କହ କହ ନତ ନ କରିବୁଁ ଶିର
ଦେଖିବୁଁ ରେ ରକ୍ତ ନୟନର ନୀର
ନ ଟଳିବ ପାଦ ମୁକ୍ତି ମାର୍ଗୁ
ନ ଟଳିବ କେବେ ଲକ୍ଷ୍ୟ ଲୟ;
ସତ୍ୟକୁ କିଏ କରିବ ଜୟ ?



## ସ୍ମୃତି

୧—ସେ ତ, ଚପଳା ସହିତେ ଗଲଣି ବାଦଲେ କେଉଁଠି,
ଆଜି, ଦେଖିଛୁ ତା କ୍ଷୀଣ ଉଜ୍ଜ୍ୱଳ ଚନ୍ଦ୍ର ଗୋଟି ।
ଗଣ୍ଡେ ତାହାର ଚୁମ୍ବନ ଦାଗ
ଛୁଟିଥିଲା ପଛେ ନବ ଅନୁରାଗ
ପ୍ରଣୟ ପାଗଳ କାହାର ସେ ରୂପ ? ବନ୍ଦୀ ତା ମରମଟି !
ଦେଖିଛୁ ତା କ୍ଷୀଣ ଉଜ୍ଜ୍ୱଳ ଚନ୍ଦ୍ର ଗୋଟି ।

ଖେଳାଇଲ୍ପ ପଲ୍ଲବେ ଲୁପ୍ତ ଅଶାନ୍ତି
ସେଇ ଦୂର ଅତୀତର;
ନବ ଯୌବନେ ବାଜଥିଲ ଯେବେ
ମିଳନ ମଧୁର ସ୍ୱର !
ନାହିଁ, ନାହିଁ, ସେ ତ ତୁଟେ଼ହିଁ ପାଇବାର !
ଖାଲି ଗାଇବାର, ଖାଲି ଗୁହିଁବାର,
ନ ଗୁହିଁ ଉଦାସେ ଲୁଚଲି ସଫଳ
ଜୀବନ ପୂର୍ଣ୍ଣ କୋଟି;
ଦେଖିଛୁ ଥରେ ତା ଉଜ୍ଜ୍ୱଳ ତନୁ ଗୋଟି ।



୨— ଶ୍ରାବଣ ମେଘ ଅଜ କ୍ଷିପ୍ର ପର ଦୂରେ
ଯାଉଛି ଧାଇଁ,
ସକଳ କଥା ଭୁଲି ଦୁଆର ପାଖେ ସେ ତ
ଥିବ ରେ ଗୁହିଁ !
ଲୋତକେ ଛଳ ଛଳ, ପୁଷ୍ପେ ଲୋଟୁଥିବ
ଅଯତ୍ନ ଗନ୍ଧ
ଘନ କାଳିମାବୃତ, ଉଜ୍ଜ୍ୱଳ ସଦ୍ୟ ସ୍ଫୁଟେ—
ଯୌବନ ଅବା !
ଶ୍ରବଣେ ଖସିଥିବ କନକ ଅବତଂଶ
ବଳୟ କରୁଁ,
ତରୁଣ ହୃଦୟଟି ପାଲଟି ଥିବ ପୁଣି
ନିଦାଘ ମରୁ !

ପେଶଲ କଟି ତାର ସ୍ତନ ଜଘନ ଭାର
ନ ପାରି ସହି
ବାତାୟନ ସମୀପେ ଲତିକା ସମ ପଡ଼ି
ଥିବ ସେ ଲଇଁ ।

ଅବା ସେ ଭାବୁଥିବ ଜୀବନ କଥା ତାର
ନୟନ ବୁଜି,
କବି ତୋ କଳପନା ପ୍ରଖର ହେଲେ ଅବା
ପାରିବୁ ବୁଝି ।
ବରଷା ଅଜି ନବ ତରୁଣୀ ପ୍ରାଣେ ଯେତେ
ଲଗାଏ ବ୍ୟଥା,
ସବୁ ସେ ସହୁଥିବ ସରଗ ଶଶୀ ସମ
ସରମନତା ।

ପରାଣି ସହଚରି ନାହିଁ ତା ପାଶେ କେହି
କହିବ ଧୀରେ
କୋମଳ କଥା ପଦେ—କପୋଳୁ ପୋଛିବୁ ତୁ
ଲୋତକ କି ରେ ?
ନୁହେଁ ସେ ଆନ ଜନ, ଯଉବନର ତାର
ଉଜ୍ଜ୍ୱଳ ମଣି
ତୋହର ପ୍ରିୟ ସେ ତ ମାନସେ ପରମାଦ
କାହିଁକି ଗଣି ?

କରୁ ସେ ଅବହେଳା ଫେରାଇ ନେଇ ମୁଖ
ତୋହର କଥା
ନ ଥାଉ ପ୍ରାଣେ ତାର ସଫଳ ହେଉପଛେ
ତୋ ଅକୁଳତା ।

ତା ଶୁଭ କଲପନା ତାହାର ସୁଖ ଚନ୍ତା
କି ଦୋଷ ସେଥି ?
ନିର୍ବାହ ନିବେଦନ କରିବା ଶିବ ପାଶେ
ମଧୁର ଏଥି ।

କେତେ କେ କରେ ପାପ ଅନ୍ୟାୟ ଅତ୍ୟାଚାର
କରମ ଘୋର,
ତୋ ପ୍ରିୟଜନ ଲାଗି ଏତିକି ଅଧିକାର
ନାହିଁ କି ତୋର ?
ସକଳ ଭୟ ଭୁଲି କର ତୁ ନିବେଦନ
କରୁଣ ଗାନେ
ନିଠୁର ବାରବାର ଦଅନା ପରମାଦ
ଅବଳା ପ୍ରାଣେ ।



୩—ତାର, କନକ ଆଖି     ତାର କଜଳ ଆଖି
ଝର ଝର ବରଷାରେ     ଯାଉଛି ଡାକି ।
ବାତାୟନ ପଥେ ଦୂର ଶୂନ୍ୟ ବେଲାକୁ ଚାହିଁ,
ନୀରବ ନୟନ ତାର ଗାଉଥିଲା ନାହିଁ ନାହିଁ,
ଅସ୍ତ ଗଲେଣି ରବି     ମନ୍ଦରେ ଅସେ ନାହିଁ
ଚପଳ ଏ ସମୀରଣ ତାର ସାଖି !
ତାର କଜ୍ଜଳ ଆଖି,
ଝର ଝର ବରଷାରେ     ଯାଉଛି ଡାକି ।

ଝାଉଁ ବନେ ଶୁଭୁଥିଲା  ତାର ସମବେଦନାର
ହାହାକାର କରୁଣ ଶ୍ୱାସ,
ଭଗ୍ନ ଲହରୀ ଗୀତେ      ସିନ୍ଧୁ ଅସୀମ ପାରେ
ତା ବେଦନା ମଳିନ ଆଭାସ !
ପକ୍ଷୀଗୀତେ ଲଭିଥିଲା  ତା ହତାଶ ନାହିଁ ନାହିଁ
ନବେ ରୂପ ମଳିନ-ସୁଷମା
ଶ୍ରାବଣ ପୟୋଧର        ମଳିନ ଇନ୍ଦୀବର
ବହେ ତାର ନୟନ ଉପମା !

ବେଳାନଳ କେବେ ଆସି ପୋଛୁଥିଲା ଲହଧାର,
ଚଞ୍ଚଳ ଈପ୍‌ସିତରେ      ଚୂର୍ଣ୍ଣ ଶଙ୍କୁର ସାର,
ମରମ ପରଶି ତାର ଯୌବନ ହାହାକାର
ଛନ୍ଦେ ମୋ ରହିଗଲା ଗୁପତେ ଲଭି !
ତାର କନକ ଆଖି !
ଝର ଝର ବରଷାରେ ଯାଉଛି ଡାକି ।

---

୪—ସେ ରୂପର କାହିଁ ତୃପ୍ତି ସଜନ
ମାଧୁରୀର କାହିଁ ଶେଷ ?
ତୃଷିତ ପରାଣେ କରିଛ ତ ତୁମେ
ସ୍ୱପ୍ନର ସମାବେଶ !
ଯେବେ ଗୋ ଅସୀମ ହେବ ଏ ଜୀବନ,
ନିର୍ନିମେଷ ଏ କ୍ଳାନ୍ତ ନୟନ,

ସୁଦୂର ହେବ ଗୋ ଭୀଷଣ ମରଣ
ଶାନ୍ତ ପରାଣେ ଲେଶ ।
ସେ ରୂପର କାହିଁ ତୃପ୍ତି ସଜନ
ମାଧୁରୀର କାହିଁ ଶେଷ ?

ଜାଣିଛୁ ଅସୀମ ଛନ୍ଦ ସୂଚନା
କରି ସେ ପରାଣ ଅତଳ,
ହେ ଶରଶୁଭ୍ର ବିମଳ !
ସନ୍ଧ୍ୟାର ରାଗେ ମଉଳି ଯିବ ଗୋ
ପୀରତଲେହୃତ କମଳ !

ତା ପରେ ଦୁଃଖ ହତାଶ ମୋହର
ତୁମର ମଧୁର ହାସ,
ତୁମର ଗୋ ଆଶା ପୀରତ ମୁକ୍ତ
ମୋ ମରମେ ଶର ପ୍ରାସ !
ପିଅନ୍ତ ଯେବେ ସେହି ରୂପ ଗୋଟି
ଅଧୀରେ ବକ୍ଷେ ଥରେ ହେଲେ ଲୋଟି
ଧନ୍ୟ ଜନମ ମୋର ଶତକୋଟି
ବେଦନାର ସମାବେଶ;
ସେ ରୂପର କାହିଁ ତୃପ୍ତି ସଜନ
ମାଧୁରୀର କାହିଁ ଶେଷ ?



୫—ଉଜଳ ମେଘର ଶୀତଳ ପବନ ଲଗିଲା,
ମୋର ଶୁନ୍ୟ ପରାଣେ ପୀରତିର ବ୍ୟଥା ଜାଗିଲା ।
ବହୁ ଦିବସର ସଞ୍ଚିତ ଲୁହଧାରା ସେ
କାହାର ଆଘାତ ଆଜି ଗୋ ପରାଣ ପରଶେ !
ଅକୁଳ ଏ ମୋର ଯୌବନ କିବା
ବରଷା ଦୁଆରେ ମାଗିଲା ।
ଶୀତଳ ପବନ ଲଗିଲା !

ସେ ଦିନ ତ ମୋର ଦୁଆରେ ଅକୁଳ ବରଷା;
ସେ ଦିନ ତ ତାର ଝରିଲା ପୀରତିଭରସା;
ସେ ଦିନ କବିତା ଛନ୍ଦ ଦେଲି ମୁଁ ମେଲି;
ସେ ଦିନ ପବନେ ଅଳକେ ଆଶାର କେଳି;
ଇନ୍ଦ୍ରଧନୁ ସେ ଯୌବନ ପଟେ
ନିଭିଗଲା କାହିଁ ସହସା !
ଦୁଆରେ ଅକୁଳ ବରଷା ।

ଯାଇଛି ଆଜି ଗୋ ଯୌବନ ଚିର ସ୍ୱପନ,
ମଳିନ କବରୀର ବିଜୟ ମାଲ୍ୟ ଭୂଷଣ,
ରିକ୍ତ ଜୀବନେ ନାହିଁ ନାହିଁ ଛଳେ ଶୋଚନା !
ନାହିଁ କଳ୍ପନା ! ସେ ଲାଗି ନାହିଁ ଗୋ ବେଦନା !
ଯାଇଛି ଯା କାହିଁ ଛୁଇଁ ଯାଏ ହୃଦ ?
ବରଷାରେ ସେ ମୋ ଦୂଷଣ !
ଯୌବନ ମୋର ସ୍ୱପନ ।

[ ୧୯୨୫ ]



୭—ତୁମେ ଅସ ଆଜ ବରଷା ସନ୍ଧ୍ୟାରେ ଭାସି,
ତୋଳି ନିଅ ମୋର ମଳିନ ବାସନା ରାଶି,
ଭୁଲିଯାଏ ଘାସେ କଜଳ ବାଦଲ ଘାର,
ରୂପର ତୋଫାନ କରେ ଆଜ ମୋତେ ବାଉ,
ସ୍ୱପ୍ନମୁଗ୍ଧ ଚିର ବାଞ୍ଛିତ
ଚିର କଳ୍ପନାବାସୀ !
ଯାଅ ତୁମେ ପୁଣି
ବରଷା ସନ୍ଧ୍ୟାରେ ଭାସି ।

ଭାଦର ମେଘର ପବନ ଖେଳଇ କେତେ,
ତଟିନୀ ସଲିଳେ ପୁଣି ଶ୍ୟାମ ଧାନକ୍ଷେତେ,
ସବୁଟି ପୁଲକ, ଚିର ଆନନ୍ଦ ହର୍ଷ,
ଭଗ୍ନତରୁଣ କେବଳ ଏଥି ବିମର୍ଷ
ଚିର ନତଶିର ବିଫଳତା ପ୍ରାଣେ
କଶାଘାତ କରେ କେତେ !
ପବନ ଖେଳଇ କ୍ଷେତେ ।

ଶାରଦ ଆଗମେ କ୍ରନ୍ଦନ ହାହାକାରେ—
ରହିବ ଶୂନ୍ୟେ ? ନ ବଳଇ ମନ ବାରେ !
ଏ ସୁଷମା ସୁଖୁଁ ବଞ୍ଚିତ ହେବାପାଇଁ
ପିପାସା-ଆକୁଳ ମନ ମୋର ମାନୁନାହିଁ ;
ପୀରତ ସ୍ପର୍ଶେ ଯୁକ୍ତ କର ଗୋ
କ୍ଷିପ୍ତ ଏ ମେଘ ଧାରେ;
ଅନ୍ତର ହାହାକାରେ !

———

୬— ପୀରତ ଅଁସିଲ ଅଧରେ ମୁରଲୀ ଧର
ବେନି କାନେ ତାର ପ୍ରଭାତ ଗୋଲାପ କଳି !
ଗୋଲାପର ହାର ତା ଶିରଭୂଷଣ,
ତା ବେନି ନୟନେ ମୁଗ୍‌ଧ ଭୁବନ,
ବଡ଼ ଚପଳ ସେ ତନ୍ନୁ ଉଠୁଥିଲା ଥର;
ପୀରଛ ଅସିଲ ଅଧରେ ମୁରଲୀ ଧର ।
ତା କଟୀ ମେଖଳା କର କଙ୍କଣ
ମୋହୁଥିଲା କେତେ ଫୁଲେ,
ଅଣା ଶତଦଳ ଫୁଟୁଥିଲା ଅହା
ତା ପାଦ ପରଶ ମୂଲେ,
ତାକୁ, ଦେଖିଦେଲେ ଥରେ
ସବୁର ମନ ତ ଭୁଲେ,
ଶୋହୁଥିଲା କେତେ ଫୁଲେ । ୧ ।

ଛଳ ଛଳ ମେଘ ଦୂର ନଭକୋଣୁଁ
ତା ରୁପେ ପଡ଼ିଲା ଲଇଁ,
ଉଲସି ଉଠିଲା ମହୀ;
ଅବନତ ତରୁ କାନେ କାନେ କବା
ସମୀରଣ ଗଲା କହି ।
ଗାଇଲା ସେ ଗୀତ କହୁଲା ଅପଥ ।,
କହ କବ ତୋର ଅନ୍ତର ବ୍ୟଥା,
ଅଧରୁ ରକତ ଥୋପି ପଡ଼ୁଥିଲା
ପଡ଼ୁଥିଲା ଗୀତ ଝର,
ପୀରତ ଅସିଲ ଅଧରେ ମୁରଲୀ ଧର । ୨ ।

୬୧—

ଜୀବନଟାକୁ ସେ ଗାଇଲା ପୀରତ
ସୁଖ-ଆନନ୍ଦ-ଛନ୍ଦେ,
ଡାକଲା ସେ ଲାଗି ଭରଦେବ ଆସ
ମୁଗ୍ଧ କୁସୁମ ଗନ୍ଧେ ।
ଭାହିଁକ ଅକୂଳ ନୀରସ ଭୁବନ ଦ୍ୱନ୍ଦ୍ୱେ ?
ଝରଇ ଗଗନୁ ନୀରବ ପୀରତ
ରଙ୍ଗିଣୀ ମନ୍ଦେ ମନ୍ଦେ !
ପୀରତ ବୁଝଇ ନାହିଁ ମନକଥା,
ଗମ୍ଭୀର ହତାଶେ ନୁଆଁଇଲି ମଥା;
ବହିଗଲା ଲୁହ ଭିଜିଲି ଅନ୍ତରେ
ଧୂଳିରେ ଲୋଟନ୍ତ ମନ !
ପୀରତ ଆସିଲା ମଧୁର ମୁରଲୀ ଧର । ୩ ।



୮—ଦୂରର ଯା ତାର ଅନ୍ତରେ ଅନୁଭବ;
ସେହି ତ ରକ୍ତ ଜୀବନର ଗଉରବ ।
ସେଥିଲାଗି ସିନା ଆଶା ଶତଦଳ,
ଯୌବନ ଲଭେ ଶୁଭ୍ର ବିମଳ,
ନ ଥାଏ ପରାଣେ ଶତ ବାସନାର ରବ;
ଦୂରର ଯା ତାର ଅନ୍ତରେ ଅନୁଭବ !
ଶାନ୍ତ ମଧୁର ଶାରଦ ଗଗନ
ମୁକ୍ତ ଶ୍ୟାମଳ ପ୍ରାନ୍ତର,
ପବନ ମେଲେ ଆନନ୍ଦ ଗୀତ
ନୀରବେ ପରଶେ ଅନ୍ତର ।

ସନ୍ଧ୍ୟା ଗଗନ ସୁନ୍ଦର କବା
ଅଶାର ରକ୍ତେ ରଞ୍ଜିତ !
ଜୀର୍ଣ୍ଣ ମୋ ବୀଣା ଗଗନକୁ ଚାହିଁ
ଗାଇବ କି ଅଜ ସଙ୍ଗୀତ ?
ଚିର ଜୀବନର ଯେତେ ବିଫଳତା,
ବିଶ୍ୱର ଶତ ଶତ କ୍ଷତ ବ୍ୟଥା,
ଧନ୍ୟ ସକଳ ! ଶୋଚନା ନାହିଁ ତ ଲବ !
ଦୂରର ଯା ଚିର ଅନ୍ତରେ ଅନୁଭବ ।



୯— ଅପଣାର ବୋଲି ରଖିଛୁ ଯାହା ମୁଁ ପ୍ରାଣେ,
ଦେଇପାରେଁ ମୁଁ ଗୋ ଦେଇପାରେଁ ଦୀନ ଗାନେ !
ଦେଇପାରେଁ ସବୁ ସଜଳ ନୟନେ,
ଚିରଦିନଲାଗି ଶୂନ୍ୟ ଏ ମନେ—
ନ ଚାହିଁବି ପଥ ଅଉ ଅଶା-ଅଭିମାନେ !
ଅପଣାର ବୋଲି ରଖିଛୁ—ଯାହା ମୁଁ ପ୍ରାଣେ ।
କହୁନାହିଁ ମୁଁ ତ ସେ ଅସୀମ ସୁଖେ
ହେବ ବୋଲି ଖାଲି ଭାଗୀ,
ନାଅ ନାଅ ଅଜ ଅଦରର ଧନ
ଜୀବନ ରହେ ଯା ଲାଗି ।
ଜାଣିଛୁ ମୋହର ଶୂନ୍ୟ ଅସନ !
ଗଗନ ପବନ ଥିବ,
ନ ଡାକିବେ ଥରେ କୁସୁମ କାନନ
ନ ଉଠିବ ଅଉ ରବ !

ସେହି ଦାନେ ମୋର ପୂର୍ଣ୍ଣ ଜୀବନ,
ସନ୍ଧ୍ୟାର ରାଗେ କମଳ ଯେସନ,
ପୂର୍ଣ୍ଣ ମୋ ସୁଖ ଜୀବନର ବ୍ୟବଧାନେ;
ଦେଇପାରେଁ ମୁଁ ଗୋ ଦେଇପାରେଁ ଘାନ ଗାନେ !

——

୧୦—ଯିବ ? ଯିବ ଯେବେ ମେଲାଣି ଦେବି ମୁଁ ହସି,
ଦୁର୍ବଳ ସମାନ ପଡ଼ିବି ମୁଁ ଗୋ ଲସି ।
ମାତର ଜନମେ ନାହିଁ କି ମମତା—
ଏ ରୂପେ ? ଏ ଅଖି ଦେଉନାହିଁ ବ୍ୟଥା ?
ଯାଅ—ଚଲେ ପଛେ ଅଶ୍ରୁ ଗଣିବି ବସି ।
ମେଲାଣି ଦେବି ମୁଁ ହସି ।

ଦେବ ବୋଲି ଅଜି ତରୁଣ ମୁଗ୍‌ଧ ପ୍ରାଣ,
ଧରିଅଛୁ ଦେଖ ମୁକ୍ତ ଉଦାର ଗାନ !
ଯେସନେ ଶାନ୍ତ ସିନ୍ଧୁ ଗଗନେ ଗ୍ରହି,
ଅବସାଦ ମାୟା ନୟନେ ମୋହର କାହିଁ ?
ଯାଅ, ଯାଅ, ସୁଖେ ! ଉଜ୍ଜ୍ୱଳ ତୁମ ମୁଖ !
ତୁମରି ସୁଖେ ଯେ ଅସୀମ ମୋହର ସୁଖ !
ମୋ ପୀରତି ନୁହେଁ ପାପକଳୁଷିତ,
ନୁହଇ ତ କେବେ ବାସନାଦୂଷିତ,
ଲଭିଯାଅ ମେଧେ ତରୁଣୀ ହୃଦୟ-ଶଶି !
ମେଲାଣି ଦେବି ମୁଁ ହସି ।

——

୧୧— ଶାରଦ ଜୋଛନା ଗ୍ରିତ ଧୀରେ ଅଟେସ ପାହ୍ନ ଗୋ
ବ୍ୟଥିତ ଚକୋର କାହିଁ କାନ୍ଦେ ?
କ୍ଳାନ୍ତ ନୟନେ କର ଦୂରପଥ ଗ୍ୱହିଁ ଗୋ
କରୁଣ ସ୍ୱରଟି ତାରେ ବାନ୍ଧେ ।

ଶାନ୍ତ ନୀରବ ଏହ ଧରା ଗୋ
ପୂର୍ଣ୍ଣ ତରଳ ମଧୁ ଜୋଛନା;
ଆଜ ତୁମ ଅଭିସାର ପଥ ଗୋ
କ୍ଷୁବ୍ଧ ପରାଣ କରେ କଳନା !

ମୁକ୍ତ ଗଗନେ ଗ୍ୱହିଁ ଯୌବନ ମାଗଇ
ଜାଗ୍ରତ ତୃଷ୍ଣା କ ଅଶା ଗୋ,
ଅଙ୍ଗେ ଶୀତଳ ବାଆ ମନ୍ଦେ ମୋ ଲାଗଇ
ମୋ ପୀରତ ପାଏ ନାହିଁ ଭାଷା ଗୋ ।

ଶାନ୍ତ ତାରକା ଦୂରେ ଗାଉଅଛୁ ସଙ୍ଗୀତ
ପୀରତର ସତ୍ୟର ଛନ୍ଦ,
ସ୍ନିଗ୍ଧ ଲତିକା ତରୁ ପ୍ରୀତିରସେ ରଞ୍ଜିତ
ପ୍ରାଣଭରା ପୁଲକ ଅନନ୍ଦ ।

ବ୍ୟଥିତ ଚକୋର କିବା ଶୋଚନା ?
ସତ୍ୟ ସେ ନୁହଇ ରେ ଛଳନା !
ସୁମଧୁର ବ୍ୟଥାର ଅନଳେ ସେ,
ଶାନ୍ତ ଯେ ମୃତ୍ୟୁ ପରଶରେ !
ପବିତ୍ର ଅନ୍ତର ବଳେ ସେ
ଦୁଃଖୀ ସେ, ନୁହଇ ହରଷରେ !

ଅଙ୍ଗେ ଵିମଳ ଛବି ଖେଳଇ
ଅରୁଣ ଅଧରେ ତାର ହାସରେ;
ତରଳ ପୀରତି ପ୍ରାଣ ଗଳଇ
ବାଣ୍ଟେ ତା ପ୍ରୀତ ପରକାଶରେ ।
ପୀରତି ନୟନ ତାର ଉଜଳ,
ଧରନ୍ତି ସେ ଶର ଆଶା କମଳ,
ଧନ୍ୟ ଜୀବନ ତୋର ଧନ୍ୟ ନାରୀଣା ଘୋର,
ଜନମ-ବେଦନା ତୋର ସଫଳ !
ଜାଗ ମୋର ଯୌବନ ଜାଗ ରେ !
ଅଙ୍ଗେ ଶୀତଳ ବାଆ ଲାଗଇ !
ତରୁଣୀ ପରାଣ ଅନୁରାଗରେ
ତୋ ବେଦନା ଦୁଆରେ ସେ ମାଗଇ !
ସଂଶୟ ଶୋଚନାଟି ଠେଲ୍ ରେ,
ଦିଅ ମରମର ଗୀତ ମେଲ୍ ରେ;
ଦିଅ ଦିଅ ପୀରତର ଅଗ୍ନି ସେ,
ଦିଅ ସବୁ ସତ୍ୟର ବହ୍ନି ସେ ।
ଅମର ଜୋଛନା ରାତି ଯାଏ ଧୀରେ ପାହି ରେ
ବ୍ୟଥିତ ଚକୋର ନାହିଁ କାନ୍ଦେ !
ଦୀପ୍ତ ନୟନେ କବା ଦୂର ପଥ ଚାହିଁ ରେ
ପୀରତି ସ୍ୱରଟି ତାରେ ବାନ୍ଧେ !



୧୨— ଦୂର ଦେଶେ ଦିଶେ କାର କନକ ତରୀ,
କିଏ ସେ ଗୋ ଜଣା ପଡ଼େ ତୁମର ପରି ।

ଶାନ୍ତ ତଟିନୀ ଜଳ,
ନୀରବରେ ଢଳ ଢଳ,
ସନ୍ଧ୍ୟାର ରାଗ ନଭୁଁ ପଡ଼ଇ ଝରି,
ତୁମେ ଅବା ବହି ନିଅ କନକ ତରୀ !

ସ୍ୱାର୍ଥ ବେଦନା ମୋର ପରଶେ ଜାଳେ,
କେସନ ତୁମର ସାଥି ଲଭଇଁ ଭାଳେ ।
ନୀରବେ ରୂପର ଭୋଗ,
ନୀରବେ ପରାଣ ଯୋଗ,
ନାହିଁ ମୋ କରମେ ! ତନ୍ତୁ ଉଠଇ ଥରି,
ଦୂର ଦେଶେ ଦଶେ ତୁମ କନକ ତରୀ ।

ନାହିଁ କାନେ କହି କିବା ଅଫୁଟା କଥା;
ନୟନରେ ଶୁଣେ ଗିରି ମଧୁର ବ୍ୟଥା ।
ବିରହ ବ୍ୟଥାଟି ଜାଳି,
କେଉଁ ଦୂରେ ଯାଅ ଗ୍ଲାଳି,
ମୃଦୁ ହାସେ ଫୁଟେ ଫୁଲ ଅବନୀ ଭରି;
ଦୂର ଦେଶେ ଦଶେ ତୁମ କନକ ତରୀ !



୧୩— ମଧୁର ନୀରବ ନିମେଷ ମିଳନ,
ମଧୁର ନୀରବ ନିମେଷ ସ୍ପର୍ଶ;
ସେଥିକି ଜୀବନେ ଅସୀମ ଭରସା !
ସେଥିକି ତ ଆଶା ଅମର ହର୍ଷ !
ନିମେଷ ମିଳନେ ଅନ୍ତର ଖୋଲି,
କାହା ପାଖେ ଧାଏଁ ଦୁଇ କର ତୋଳି,

ଅନ୍ତର ପାଶ୍ବ କର ନାହିଁ ଦୂର,
କାହା ପାଶେ ଗାଏଁ ମୁଁ ଗୋ ବିମର୍ଷ !
ମଧୁର ପୀରତ ନିମେଷ ସ୍ପର୍ଶ ।
ସେ ମଧୁ ମିଳନେ ପଶାଇବ କର ?
ଢାଳିବ ଲୋତକ ମୁକ୍ତାବିନ୍ଦୁ,
ତୁମରି ପରଶ ବେଳାରେ ଲେଟିବ
ମୁଁ ଚିର ଅକୂଳ ଗଭୀର ସିନ୍ଧୁ !
ମୁଦିବ ନୟନ, ପରଶିବ ସୁଖେ,
ଅଶାର ଆଲୋକ ଖେଳିବ ଏ ମୁଖେ,
ନ ରହିବ ଦୂରେ ଅନ୍ତର ପ୍ରିୟ
ତୃଷ୍ଣା-ଜୀବନ-ଚିର-ଅଦର୍ଶ !
ମଧୁର ପୀରତ ନିମେଷ ସ୍ପର୍ଶ !

---

୧୪—

ମଳୟ ଯେବେ ସିନ୍ଧୁ ବିଶ୍ବ ପ୍ରାଣ ଦ୍ଵାରେ ବହିଲା,
ସନ୍ଧ୍ୟା ତାରି ଯେବେ ତରୁଣୀ କାନେ ଧୀରେ କହିଲା,
"ଜାଗରେ ଜାଗ ଯୁବା !"... ଅଳସ ନୟନେ ମୁଁ ଶୁଣିଲି—
ସକଳ ହରଷରେ ମିଶାଇ ତୁମ ବ୍ୟଥା ଗାଇଲି ।
ଗୋଲାପ ଯେବେ ଲୁଚି ପବନେ ପ୍ରୀତ ଦେଲା ମିଶାଇ,
ହାସ୍ଯ ହେନା ଯେବେ ଜୋଛନା ତନୁ ଦେଲା ନଚାଇ,
ଅକୂଳ ପିକ ଗୀତ :— ସ୍ଵପ୍ନ-ରଥ ବନ୍ଧୁ ! ଅଇଲି—
ମଧୁର ଗୀତେ ତାର ମିଶାଇ ତୁମ ବ୍ୟଥା ଗାଇଲି ।
ବିଶ୍ଵ ବିହ୍ଵଳ ଗନ୍ଧେ କଲା ଯେବେ ବକୁଳ,
ନ ଜାଣେ କାହିଁ ପାଇଁ ବିଜନେ ବସି ହେଲି ଅକୂଳ,

ଚକୋର ପ୍ରିୟା ଅଗେ    ଗାଇଲା "ନଦୀ ପାରେ ରହିଲା !"
ଶୂନ୍ୟେ ଚାହିଁ ଏକା    ତୁମର ବ୍ୟଥାଟି ମୁଁ ଗାଇଲି ।

---

୧୫ —

ମେଲାଣି ବେଳ ହେଲା !    "ଯିବି ମୁଁ !" ବୋଲି ଧୀରେକହିଲି;
ସୁଦୂର ଅଭିସାର-ଉଦାସ-    ଚାହାଣିଟି ବହିଲି ।
"ଯିବ କି ଚାଲି ସତେ ?"—    "ଯାଅ !" କହିଲି ମୋର ବାରତା,
ମାତର କାହିଁ ପାଇଁ    ଛଳେ ତ ତୁଟେ ନାହିଁ ମମତା ?
ଅମର ସେହି ହାସ    ସୁଷମା ନିରୁପମ ମଧୁର,
ମିଳଇ କାହିଁ ଭବେ ?    ଭୁଲି ପରାଣ ଚିର ଆତୁର !
ପାଷାଣି ପରାଣରୁ    କେମନେ କରିବି ମୁଁ ଅନ୍ତର ?
କେମନେ ଭୁଲିବି ମୁଁ    ଅମର ପ୍ରୀତି ଚିର ସୁନ୍ଦର ?
ଜୀବନେ କେତେ ନିଶି    ଚାହିଁଛୁ ନିରଳସ ନୟନ,
ଶୂନ୍ୟ ତୁମ ପଥ,    ପୂର୍ଣ୍ଣି ଏ ସୁଦୂରର ମିଳନ ।
କେତେ ମୁଁ ଦିନୁ ଦିନ    ବିଫଳ ବ୍ୟଥା ଗଣି ଚାହିଁବି ?
ନବୀନ ଯୌବନ    ପାଶେ ଆକୁଳେ କେତେ ଗାଇବି ?
ବରଷା ବାଅ ଦୂରେ    ପ୍ରବଳ ବେଗେ ଯାଏ ବହି ଗୋ,
ଧୀର ତଟିନୀ ନୀର    ସୁଷମା ପାରେ ନାହିଁ ସହି ଗୋ !
ସହିବ ଅବସାଦ    କେମନେ ତୁମ ଜୀବ ହତାଶ ?
ଜୀବନେ ନାହିଁ ଯେବେ    ତୁମର ପୀରତିର ଆଶ୍ୱାସ !

(ସମାଧି-୨ୟ ଛ



# ସନ୍ଧ୍ୟା ମେଘ

ଅଜ, ସନ୍ଧ୍ୟା ଗଗନ ସହୁ ସୁନ୍ଦର,
ରଞ୍ଜିତ ମେଘ ଗତ ମନ୍ଥର ।
ଦୂର ଫୁଲ ଉପବନୁ ଧୀରେ ବହେ ସମୀରଣ,
ନିର୍ଜନ ତୀରତରୁ ସପନ ନିମଗନ,
ଶାନ୍ତ ଶ୍ୱଭ୍ରେର ସହୁ ଶ୍ୟାମଲ ଗିରିବନ
ବନ୍ଧନ ନ ମାନଇ ଅନ୍ତର ;
ସନ୍ଧ୍ୟା ଗଗନ ସହୁ ସୁନ୍ଦର ।

ଅସ ଅସ ସଜନି ରେ ସୁଖେ ଦେବା ଭସାଇ
ଯମୁନା ସଲିଲେ ନବ ଯୌବନ,
ସ୍ପନ୍ଦନ କଲଣି ଗୋ ଶ୍ୱଶ୍ୱ ପରାଣ ମନ
ସ୍ୱପ୍ନରସିକ କବ କନ୍ଦନ ।
ଏଇ ଶୁଣ ଦୂରୁ ଆସେ ସମୀରଣେ ଥରି ଥରି,
କୁସୁମ ସୁରଭି ଅବା ନବୀନ ପ୍ରଣୟ ପରି,
ଲଜ୍ଜା ସରମ ଭୁଲି ଯୌବନେ ନେବା ବରି
ସୁରବାସି-ବାଞ୍ଛିତ ମନ୍ତର ;
ସନ୍ଧ୍ୟା ଗଗନ ସହୁ ସୁନ୍ଦର ।

[୧୯୨୪]



## ମୁକ୍ତ ସ୍ୱପ୍ନ

ବନର ମୟୂର ନଗର ସୌଧେ
ବସି ଭାବଲେ ମନେ ମନେ,
ପ୍ରଭାତ ପବନେ ଦକ୍ଷିଣା ମେଘ
ଭାସିଆସେ ଅନୁକ୍ଷଣେ ।

ଭାବଲେ କାହିଁ ମୋର କାନନ ଭୂଇଁ,
ଉଡ଼ି ଯିବ ଅଜ ସେ ଦେଶେ ମୁହିଁ,
କଳା ମେଘ ନଭେ ଯାଏ ପହଁର,
ପାଦପ ଲତିକା ଉଠଇ ଥର,
ଉଡ଼ିଯିବ ମୁ ଗୋ ଉଡ଼ିଯିବ ।
କିଏ ପାରିବ ଧରି ?

ବନ୍ଧ ତୋହର ଚରଣଯୁଗଳ
ବିଫଳ ସ୍ୱାଧୀନ ସପନ !
ମୁକ୍ତି ? ସେ ତୋର କଳ୍ପନା ସିନା
କାହିଁ ବା ସୁଦୂର କାନନ ?

ବନର ମୟୂର ଅକୁଳ ନୟନେ
କଜଳ ମେଘକୁ ଚାହିଁ,
ଭାବଲେ ମନେ ମନେ ନବୀନ ବର୍ଷା
ସଙ୍ଗୀତ ଦେବ ଗାଇ ।
ଗର୍ଜେ ବଜ୍ର ଗଗନଭରେ,
ଚପଳ ଦାମିନୀ ପୁଲକେ ଥରେ,

ବହଇ ଶିକର ଶୀତଳ ବାଆ,
ତୀରତରୁ ସୁଖେ କହଇ ଅହା !
ଭୁଲଇ ମୟୂର ଅସୀମ ମୁକ୍ତି
ସଙ୍ଗୀତେ ସତେ ନାହିଁ ମୋ ରାହା?

'ବନ୍ଧ ତୋହର ଚରଣ ଯୁଗଳ, ବିଫଳ ମୁକ୍ତି ସପନ;
ମୁକ୍ତି ସେ ତୋର କଳ୍ପନା ସିନା ! କାହିଁ ସେ ସୁଦୂର କାନନ !'
ବନର ମୟୂର ଦେଖଇ ସ୍ୱପ୍ନ ଦୂର ବନ ତରୁଶାଖେ,
ଶ୍ୟାମ ପ୍ରାନ୍ତରେ ବିରହିଣୀ ପ୍ରିୟା ଅକୁଳ ପରାଣେ ଡାକେ !

ଦୁଃଖୀ ବିରହ ବାରତା କହୁ;
କ୍ଷିପ୍ର ଜଳଦ ଯାଉଛୁ ବହୁ,
ବନ ଆନନ୍ଦ ପୀରତ ସୁଖ,
ଭୁଲି ଉଜ୍ଜ୍ୱଳ ମୟୂର ମୁଖ !
ଛୁଟିଲ ଉଡ଼ିଯିବ ଚୁମ୍ବିବ ପ୍ରିୟା
ବଦନ, କି ମୋର
ଶୋଚନା ଦୁଃଖ ?

'ବନ୍ଧ ତୋହର ଚରଣ ଯୁଗଳ ବିଫଳ ମୁକ୍ତି ସପନ
ମୁକ୍ତି ? ସେ ତୋର କଳ୍ପନା ସିନା ! କାହିଁ ସେ ସୁଦୂର ଗଗନ !'
ଭୁଲଇ ମୟୂର ବିଫଳ ସ୍ୱପ୍ନ ? ବିଫଳ ଏ ମୋର ଜୀବନ ?
ଯହିଁ ନାହିଁ ଶୁଭେ ମୁକ୍ତିର ଗୀତ ଅନୁକୂଳ ବହେ ପବନ !

ମରଣ ଗୋ ତୁମେ ରହିବ ଦୂରେ,
ମୁକ୍ତିର ଗୀତ ପରାଣେ ପୂରେ !
ବାଜୁଛି ବାଜିବ ଯିବ ମୁଁ ଉଡ଼ି,
ଆସିଅଛୁ ଏଥି ମୋ ପଥ ଛୁଡ଼ି !

କଳ୍ପନା ନୁହେଁ ସତ୍ୟ ସେ ମୋର ସ୍ୱପ୍ନ ପୁରୀ !
ସେ ଦେଶର ନବ ରବି ଶଶାଙ୍କ ଯାଏ ନା ବୁଡ଼ି !
ଡାକ ଡାକ ପୁଣି ଅକୁଳେ ପିଯ୍ୱା;
ସମୀରଣ କର ଦଗ୍‌ଧ ହିଆ !
ହସି ଉଠ ଦୂର ପାଦପ ଲତା,
ଶ୍ୟାମ ଗିରି ଭୂଇଁ ଜଗାଅ ବ୍ୟଥା !
ଅମର ମୁକ୍ତି ! ଅମର ସ୍ୱପ୍ନ ! ନତ କରେ କିଏ ଏ ମୋର ମଥା ?
ପାଗଳ ! କ୍ଷିପ୍ତ ! ହେ ଜଳଦ କହ ସେ ଦେଶ କଥା !
ବାଇ ମୋହର ଚରଣ ଯୁଗଳ ? ବିଫଳ ମୁକ୍ତି ସ୍ୱପନ ?
ମୁକ୍ତି ? ସେ ମୋର ଜୀବନର ସତ୍ୟ ! ବନ୍ଧନ ହେବ ମୋଚନ ।
[୧୯୨୭]



# ରୂପ କଥା

ଭାଦର ନୀଳାକାଶ ବାଦଲ ରଙ୍ଗେ ଅଙ୍କ ଧୋଇ;
ମେଘର ଶତ ଫାଙ୍କେ ଅରୁଣ ଥରେ ଯାଏ ଅନାଇଁ ।
ଏସନେ ତା ନୟନ
ପରଶି ଯାଏ ମନ,
ପାଦପ ଲତା ଯଥା ସମୀରେ,
ତରୁଣୀ ଥରି ଉଠେ ଅଧୀରେ ! ୧ ।
କଜଳ ଦୂର ମେଘ ନୀରବ ଅଙ୍ଗ ତାର କଜଳ
କୋମଳ ଶ୍ୟାମ ଘାସେ ଶିଶିର ବିନ୍ଦୁ ସେ ସଜଳ
କଜଳ ବେଣୀ ଗୋଟି,
ହେଳାରେ ପଡ଼େ ଲୋଟି,

ଅଧରୁ ଥୋପି ପଡ଼େ ରକତ,
ବାଧୁଲି ଲଜେ ମରେ ନିରତ ! ୨ ।
ତା'ହାସେ ଶାରଦର ଶୁଭ୍ର ଶେଫାଳିକା ଝରଇ,
ଭରିଏ ଗଙ୍ଗାର ଧବଳ କାଶ ବନ ଥରଇ;
ନାବିକ ତରି ବହେ,
ତା ଗୁଣି କେତେ କହେ,
ସାଧବ ଘର ଝିଅ ମିଥିଲା ପୁରେ ତାର ସଉଧ;
ଯେ ଦେଖେ ଭୁଲିଯାଏ ଉଦାସୀ ସମ
ଧଳା ବଉଦ । ୩ ।
ଦୂରଦେଶର ରାଜା ଯେତେ ଯେ ଆସିଲେ ତା ଆବାସେ,
ତା ରୂପ ମୋହେ ସବୁ ଫେରିଲେ
ନତଶିରେ ହତାଶେ;
ଯୋଗୀ ସେ ଥିଲା କାହିଁ,
ଆସିଲା ଗୀତ ଗାଇ,
ଦୁଆରେ ବୀଣା ତାର ବଜାଇ,
ତରୁଣୀ ଧୃତି ଦେଲା ହଜାଇ । ୪ ।
ଉଷ୍ଣବୋଲା-ତନୁ ବସନ ଗଇରିକ ମୋହିଲା,
ବରଣିମାଳା ଗଳେ ଲମ୍ବାଇଲା ନବ ଛଇଳା ।
ମୁଗ୍ଧ ମୁଖେ ଚାହିଁ,
କହିଲା ଗାଇ ନାହିଁ,
ଆଜ କେ ଗୀତ ରୂପପରତ !
ବୁହାଇ ଦେଲା ପ୍ରାଣେ ଅମର ପୀରତିର ସରିତ ! । ୫ ।
ମିଥିଲା ରାଜପଥେ ଯୁଗଳ କର ଧରି ଚଲିଲେ;
ମିଥିଲା ପୁରନାରୀ ଝାପରି କରି କେତେ କହିଲେ ।

ଯୋଗୀ ସେ କହେ ହସି
ଯେସନେ ଶୋହେ ଶଶୀ
"ମରଣ ଛାୟା ମୋର ପରାଣ ଘେରିଥିଲା ସୋହାଗି !
ଜାଣିଛି ମରଣକୁ ପୀରତି ରୀତିରେ ଆଜି ତୋ ଲାଗି !" ୭।

[ ପାଟଣା, ୧୯୨୭ ]



## ଯୌବନ ପୂଜା

ପୌଷ ଜାଗେ,
ଶିଶିର ଲାଗେ,
ପରାଣି କରେ କ୍ରନ୍ଦନ;
ଏ ତନୁ ମୋର,
ନବୀନ କର,
ଶ୍ୟାମଳ କର ଯୌବନ ! । ୧ ।
ଅଧର ଭରି
ମଦିରା ଝରି
ପଡ଼ୁ ଗୋ ସାରା ଭୁବନେ;
ଅଳସ ଆଖି
ପୀରତି ଚାଖି
ବାହରୁ ଶର ସପନେ ! । ୨ ।
ସପନ ଲୋକ,
ବେଦନା ଶୋକ,
ପରଶେ ନାହିଁ ଲବେ ଗୋ;

ମଧୁର ବ୍ୟଥା,
ପୀରତି କଥା,
ନାହିଁ ନ ଥିବ ଭବେ ଗୋ । ୩ ।
ଶ୍ୟାମଳ ଧରା,
କୋମଳ ଖରା,
ପିପାସୁ ପ୍ରିୟ ଗୁହାଣି;
ନ ସରେ ସୁଖ,
ନରେଖି ମୁଖ,
ବରଲେ ଦବା ରଜନୀ ! । ୪ ।
ବକୁଳ ମଲ୍ଲି
ସୁରଭି ଢଳି
ପଡ଼ଇ ନୀଳ ଗଗନୁ;
ଉଠଇ ଗାଇ
ପୀରତି ବାଇ
କୋକିଳ ଦୂର କାନନୁ । ୫ ।
ଅଳସ ଚିତ
ତରୁଣୀ ଅତି;
ସେ ଡାକେ ଗୁହେଁ ଚମକି;
ଅଲପେ ହସେ
ତରୁଣ ରସେ
ପରାଣ ଉଠେ ପୁଲକି । ୬ ।
ପରାଣ ସ୍ଫୂର୍ତ୍ତି
ହୋଇଲା ପୂର୍ତ୍ତି
ଜୀବନ ପୂଜା ମହତ,

ନୟନେ ମୋର
ସପନ ବୋଳ
  କପୋଳେ ଲାଜ ରକତ ! ୭ ।
ନିମେଷେ କର
ପରଶେ ପର
  ଦେବତା କରେ ବନ୍ଦନ;
ଶ୍ୟାମଳ କର
ନବୀନ କର
  ଅମର ନବ ଯୌବନ । ୯ ।

କୁସୁମପର
ମୋ ଦେହ ଭର
  ମାଧୁରୀ କର ସଞ୍ଚାର
ଶ୍ୟାମଳ କର
ରୁଚିର କର
  ମଳିନ ଜୀର୍ଣ୍ଣ ସଂସାର ।୮।

[ ପାଟଣା, ୧୯୨୭ ]



# ମୁକ୍ତିସେନା ସଙ୍ଗୀତ—

ଜୀବନ ଦୀପ ନିଭିଲା, ଧରା      ତମିର କଲା ଗ୍ରାସ,
ପରାଣ ଢେଉ ବାଜିଲା ଶରେ      ମୃତ୍ୟୁ ଅଟ୍ଟହାସ !
ତୁମର ଚିର ବିଜୟ ବାନା      ଧରିବୁ କାହା ବଳେ ?
ଅନ୍ତରର ଦେବତା ଅହେ      ପ୍ରଦୀପ ନାହିଁ ଜଳେ ।

ଆରତି ଶଙ୍ଖ ନ ଉଠେ ବାଜି, ଦେବତା ତୁମ ଦେଉଳେ ଅଜି,
ହସଇ ମୃତ୍ୟୁ ଦୈନ୍ୟ-ବ୍ୟଥା ଛୁଇଁ ପ୍ରାଣ ତଳେ,
ପ୍ରଦୀପ ନାହିଁ ଜଳେ ! ।୧।

ତୁମର ବାଣୀ ବହିବୁ ଶିରେ ଭରସା ନାହିଁ ପାଇଁ,
ତମିର ଘୋର କ୍ଷୁବ୍ଧ ସିନ୍ଧୁ ! କେମନେ ତରି ଯାଇଁ ?
ତରଙ୍ଗେ ତେଜ ଉଛିହାସେ, ଭରସା ନାହିଁ ପରାଣେ ଅସେ,
ଶ୍ରାବଣ ରାତି ଅସଇ ଘୋଟି ମୀରବେ କୂଳେ ରହି !
ଭରସା ନାହିଁ ପାଇଁ ।୨।

ଚିର ଜୀବନ କର୍ଣ୍ଣଧାର ! ଆଦେଶ ପୁଣି କିବା ?
ଶକ୍ତି ନାହିଁ, ଧୈର୍ଯ୍ୟ ନାହିଁ ! ଲୁପ୍ତ ଅମ ଦିବା ।
ଅନ୍ଧ ଖୋଲି ଅଶ୍ରୁହାରେ କରୁଛୁ ନିବେଦନ,
ଭଗ୍ନ ଜାନୁ, ଅସ୍ତ୍ର ହୀନ, ସକଳ ଅଭିଜନ ।
ତୁମର ବାଣୀ ବଜ୍ର ସମ ନେବାକୁ ଶିରେ ହେବୁ କି କ୍ଷମ ?
ଉତ୍କ୍ରାନ୍ତ ପରାଣେ ପୁଣି କରିବୁ ତୁମ ରଣ,
ସକଳ ଅଭିଜନ ।୩।

ଅମର ତୁମେ ଅଜୟ ତୁମେ ଜୀବନ ରାଜା ଚିର,
ଏ ବାଣୀ ପ୍ରାଣେ ସତ୍ୟ ହେଉ ପତାଇ ଦେବୁ ଶିର !
ତୁମର ସତ୍ୟ ଦୀକ୍ଷା କରି ମୃତ୍ୟୁ ଯେବେ ଅସେ
ବରଣି କରି ନେବୁ ହେପ୍ରିୟ ଚିର ବିଜୟୋଲ୍ଲାସେ !
ତୁମର ବାଣୀ ମର୍ମେ ଫୁଟୁ, ଅବିଶ୍ୱାସ ଦୁଃଖ ତୁଟୁ,
ମୁକ୍ତି ପଥ ସରଳ ହେବ ସକଳ ନିବନ୍ଧନେ !
ପରାଣ-ପ୍ରିୟ ଅମର ତୁମେ ଏ କଥା ରହୁ ମନେ ।



# ପ୍ରଭାତ ସ୍ୱପ୍ନ

ବନ୍ଧୁ ସଜଳ ନୀଳ ଆଖି,
ଉଦର ଆକାଶ ତାର ସାକ୍ଷୀ,
ପ୍ରଭାତ ଶୀତଳ ପବନ ପରଶେ
ପରାଣ ଦୁଆରେ ଯାଏ ଡାକି ।
ବନ୍ଧୁ ସଜଳ ନୀଳ ଆଖି ।୧।

ଶୁଭ୍ର ଶିଉଳି ପଡ଼େ ଝରି,
ବିରହ ମଳିନ ହାସ ପରି,
ଏ ଦୂର ବିଦେଶେ କାହାର ସପନେ
କ୍ଷୁବ୍‌ଧ ପରାଣ ରହେ ଲାଖି ।
ବନ୍ଧୁ ସଜଳ ନୀଳ ଆଖି ।୨।

ତା ବେଦନା ବହେ ଭାଦ୍ରବର୍ଷା,
ନୀଳ ଧାନ କ୍ଷେତ ଉଚ୍ଛ୍ୱସି,
ସମୀର ଲହରେ ତା ଚପଳ ଗତି
ପରାଣର କଥା ରହେ ବାକି ।
ବନ୍ଧୁ ସଜଳ ନୀଳ ଆଖି ।୩।

କିଏ ଗୋ ବଇଁଶୀ ଉଠେ ବାଇ,
ବନ୍ଧୁ ପଥଟି ଚାହିଁ ଚାହିଁ
ନୀଳ ଧାନକ୍ଷେତ କରଇ ଅଧୀର,
ତରୁଣୀ ଶ୍ୟାମଳ ପ୍ରୀତି ରଖି
ବନ୍ଧୁ ସଜଳ ନୀଳ ଆଖି ।୪।

ନୀରବ ନୟନେ ପଢ଼େ କଥା
ସେ ଲାଗି ଜୀବନେ ଏତେ ବ୍ୟଥା

ମାତର ସେ କଥା ହୁଏ ନାହିଁ କୁହା
ଛନ୍ଦ କବିତା ସବୁ ଫାଙ୍କି;
ବନ୍ଧୁ ସଜଳ ନୀଳ ଆଖି । ୫ ।

ଏ ରୂପର ନବ ନବ ଖେଳା,
ତନ୍ଦ୍ରା ଅଳସେ ବହେ ବେଳା;
ଶ୍ରାବଣ ମେଘର ରଞ୍ଜିତ ରାଗ
କିଏ ଗୋ ପରାଣେ ଯାଏ ମାଖି !
ଦୂର ପରବାସେ ମଧୁର ବିରହ
ବନ୍ଧୁ ସଜଳ ନୀଳ ଆଖି । ୬ ।

[ ପୁରୁଲିଆ, ୧୯୨୮ ]

## ଗୋଲାପର ବ୍ୟଥା

ଦିବସ ମୋର ବିଫଳ ଗଲା ନ ହେଲା କହି ଜୀବନ କଥା,
କ୍ଷଣକ ପ୍ରୀତି ଭରସା କରି ମରମେ ମଲା ମରମ ବ୍ୟଥା ।
କୁସୁମ ଦଳ ଗୋଟିକି ଗୋଟି,
ସନ୍ଧ୍ୟା କୋଳେ ପଡ଼ିଲେ ଲୋଟି,
ବିଚାରିଲେ ମୁହିଁ କା ପଥ ଚାହିଁ ମୁଦିବି ବେନି
ନୟନ ପତା ।୧।
ଦେଖିଛ ତାକୁ ଥରେ କି କବି ?
ପୂନିଅଁ ଶଶୀ ସାଗର ଛବି ।
ମରାଳ ଛଳ ଅଳସ ଢଳ ସ୍ନିଗ୍ଧ ଆଖି —
ସରମ-ନତା । ୨ ।

ଯେସନେ ସନ୍ଧ୍ୟା ପରଶେ ଭୁଇଁ,
ଶ୍ରେଷ୍ଠ ମଳୟ ଯାଏ ଗୋ ଛୁଇଁ
ଜୋଛନା ଜଳେ ପଖାଳି ପାଦ ସେ ଅସେ ଲଜେ
ନୁଆଇଁ ମଥା । ୩ ।

ଗୁହାଁଲେ ସେ ତ କମଳ ଫୁଟେ
ସବୁଜ ଖେତେ ସମୀର ଛୁଟେ,
ରୁପ ସାଗରେ ଖେଳଇ ଢେଉ ହସଇ ଚନ୍ଦ୍ର
ପାଦପ ଲତା । ୪ ।

ଶେଫାଳି ସମ ଝରିଲେ ହାସ,
ନ ରହେ ପ୍ରାଣେ ବେଦନା ତ୍ରାସ
ଥରଇ କାଶ ସୁରଭି ଶ୍ୱାସ ଲୁଚଇ ଯେତେ
ପ୍ରୀତି ମମତା । ୫ ।

ସଫଳ ମୋର ମଧୁର ବାସ,
ଅଧରେ ଫୁଟି ମରଇ ହାସ,
ବଜନ ପୁଷ୍ପ ବରହେ ତାର କି ଶମଶାନ
ଜାଣିବ ଟକା ତା ।୬। ।

[ ପୁରୁଲିଆ, ୧୯୨୮ ]



## ଦୋଳ ପୂର୍ଣ୍ଣିମା

ଫଗୁଣ ପୁନିଅ ଚାନ୍ଦ !
କାହିଁ ସଜନ ବାନ୍ଧ,
ପୀରତି ନବଢ଼ ଭୁଜ ବନ୍ଧନେ
ଲଯ୍ୟ ହେଉ ଅବସାଦ !
ଫଗୁଣ ପୁନିଅ ଚାନ୍ଦ ।

ବିଶ୍ୱ କଣ୍ଠୁ ଆଜି,
ସଙ୍ଗୀତ ଉଠେ ବାଜି !
ଏକଇ ଛନ୍ଦ ଗୀତ,
ଆଦର ମମତା ପ୍ରୀତ !
ବିହ୍ୱଳ କବି ଗାଏ,
କଳ୍ପନା କାହିଁ ଧାଏଁ,
ଅନ୍ତରେ ପୂରି        ବାହାରେ ଖେଳଇ
ଜୋଛନାର ଆହ୍ଲାଦ !
ଫଗୁଣ ପୂନିଅ ଚାନ୍ଦ !

କେଉଁ ସଜେ ଆଜି        ପରଶି ଗଲାଣି
ସ୍ୱପ୍ନର ମଳୟର ବାଣୀ
ଶୂନ୍ୟେ ଭ୍ରମଇ        ଅମୃତ ପରି
ପିଅ ଗୋ ସଜନି ଛାଣି ।
ଜୋଛନା ପ୍ଲାବନେ        ସକଳ ମର୍ତ୍ତ୍ୟ
ପଡ଼ୁ ନାହିଁ କିଛି ଦୃଷ୍ଟି
ମୁକ୍ତ ପବନେ        ଗଗନେ ଭୁବନେ
ନବ ବସନ୍ତ ପୂଜା !
ଗୋଲାପ ମଦିର-ରାଗେ,
ତୁମେ ନବ ଅନୁରାଗେ,
ରଞ୍ଜିତ କର ପ୍ରାଣ,
ଆଣ ଗୋ ଅବିର ଆଣି,
ଦିଅ ବୋଳି ମୋର ଦେହେ,
ନବ ବସନ୍ତ ସ୍ନେହେ !

ଅନ୍ତରଭର ବାସେ,
ମନ୍ଦ ମଧୁର ହାସେ !
ମାତ ଉଠୁ ପ୍ରାଣି     ବିଶ୍ୱ ସମ୍ପତେ
ଭୁଲି ସଂଶୟ ବାଦ !
ଫଗୁଣ ପୂନିଅ ଚାନ୍ଦ !
ଆଜି ଜୋଛନାରେ     ଫୁଟିଛି ଗୋଲାପ
ଫୁଟିଛି ମଧୁର ମଲ୍ଲୀ
ଯୌବନ ବନେ     ନବ-ବସନ୍ତ-
ଉତ୍ସବ ନୁହେଁ କଳି ।
ଭୁଲ ଭୁଲ ସବୁ     ସଂଶୟ ଦୁଃଖ
ଆନନ୍ଦ ନିଅ ବରି ।
କ୍ଷଣିକର ପ୍ରୀତି—     ପୁଲକେ ନିଅ ଗୋ
ଜୀବନ ଅମର କରି !
ଉଙ୍କାଡ଼ କର ଗୋ     ମାଧବୀ ଜୋଛନା
ନାହିଁ ଭୟ ପରମାଦ
ଫଗୁଣ ପୂନିଅ ଚାନ୍ଦ ।
କୋକିଳ ଉଠଇ ଗାଇ,
ବକୁଳ ଗନ୍ଧେ ବାଇ.
ପବନେ ତା ଚପଳତା
ପୀରତି ମଧୁର ବ୍ୟଥା,
ତରୁ କଣ୍ଠଲଗ୍ନେ ଲତା—
ପାଦପର ମାଦକତା
ଅଚଳନ ଆଜି     କିଂଶୁକ ବନେ
ଗରବେ ଡୋଳିଛି ମଥା !

ନାହିଁ ନାହିଁ ଅବସାଦ !
ଫଗୁଣ ପୂନଅ ଗୁନ୍ଧ !
ବିଶ୍ୱର ନରନାରୀ,
ସକଳେ ଆମେ ଗୋ ଅଳି !
ବୃଦ୍ଧ ତରୁଣ ଯାତ୍ରୀ,
ଉଠ ଆନନ୍ଦେ ମାତି !
ନବ ବସନ୍ତେ କବି,
ରଞ୍ଜିତ ବାଳ ରବି,
ଅହ୍ୱାନ କରେ ମଧୁ ଉତ୍ସବେ
ଖୋଲ ଗୋ ଦୁଆର ଖୋଲ !
ଅଜି ପୀରତିର ଦୋଳ ।

ଆସ ଗୋ ଆସ ଗୋ ଶିଶୁ,
ତୁମ ସଙ୍ଗୀତ ମିଶୁ,
ଏ ମୋର କ୍ଷୁବ୍ଧ ପ୍ରାଣେ,
ଉଚ୍ଛଳ ଜୀବନ ଗାନେ,
ଫୌଷ ମରଣ ଭୟ,
ଅବହେଳେ ଅଜି ଜୟ ।
ମୁକ୍ତ କର ଗୋ ପ୍ରାଣ,
ଭର ବସନ୍ତ ଗାନ,
ମଞ୍ଜୁ କୁସୁମ ଗନ୍ଧ,
ମନ୍ଦ ମଳୟ ଛନ୍ଦ,
ଉଜ୍ଜ୍ୱଳ ଦିଗ ଭାଗ,
ଜୀବନ ଦେବତା ଜାଗ !

ନବୀନ କୁଞ୍ଜେ ଶୁଭଇ କାହାର
ମନ୍ଦ ମୁରଲୀ ନାଦ !
ଫଗୁଣ ପୂନିଅ ଚନ୍ଦ ।

[ ପୁରୁଲିଆ, ୧୯୨୯ ]

---

## ରାଜ-ଜେମା

ରାଜାର ତନୟା ସ୍ୱପ୍ନ ରାଜ୍ୟେ
ସଙ୍ଗୀତେ ତାର ବାସ,
ଏଇ ପଥେ ଯାଉଁ ତାଳଗଛ କେତେ
କୁସୁମ ଧବଳ ହାସ !
ନ ଥିଲା ତା ଅବକାଶ !
ତା ଦେହ ଗନ୍ଧେ ପ୍ରାଣ ମନ ବାଇ,
ସୃଷ୍ଟି ତରୁଣୀ ରହିଲା ଅନାଇ,
କହିଲା ଅଧୀରେ "ମୁଗ୍ଧ ମୁଁ ତୁମଠାଇଁ !"
କହିଲା ସେ "ନାହିଁ ନାହିଁ ।"
"ବିଫଳେ କାହିଁକି ଆସ ?"
ନ ଥିଲା ତା ଅବକାଶ ।
ରାଜାର ତନୟା ବୁଢ଼ିଗଲା ଯେବେ
ଖସିଲା ତା ଗଭା ଫୁଲ;
ତରୁଣ ମନ ଆକୁଳ !
ଅଧୀର ପରାଣେ ନେଲା ତା ଗୋଟାଇ,
ବକ୍ଷେ ଜଡ଼ି ସେ କହିଲାତ "ନାହିଁ,

ନାହିଁ ଅଜ୍ ଏତେ ସୁନ୍ଦର ସମତୁଲ,
ଚିର ଅମୃତ ଏ ମୋ ପୀରତିର ଫୁଲ !"
କହେ କେମା ପୁଣି "କଣ୍ଠେ ପ୍ରୀତି କାହିଁ ?"
"ପୀରତି କୁସୁମ ନାହିଁ ।"
ରାଜକେମା ଅହା ଛାଡ଼ି ଗଲା ତାର
କନକ ନୂପୁର ଗୋଟି;
ତା ପାଦ ପରଶେ ଜଙ୍ଗର ପରାଣେ
ଉଜଳ ତାରକା କୋଟି !
ତରୁଣି ତା କରେ ଯତନେ ଖଞ୍ଜି,
କାହାରୂପ ଭାବେ ରହେ ସେ ମଜ୍ଜି,
କେମା କହେ "ଅଗୋ କନକ ବଳୟ କାହିଁ ?"
"ମଳିନ ଅଙ୍ଗରେ ପୀରତି ଫୁଟଇ ନାହିଁ ?"
ମୁଗ୍ଧ ତରୁଣି ଗାଇଲା ତା ବୀଣା ଧରି;
ମାଧବୀ କଣିଥେ ଅବା ଯଜ୍ଞବନ ପରି;
ଗାଇଲା ଅମର ରୂପର ଭକାଶ,
ତୁମରି ସେ ଲୀଳା ତୁମରି ସେ ହାସ,
ଧନ୍ୟ ଅଜ ମୁଁ ଅସିଛି ଅତିଥି ତବ !
ଗାଇଯିବ ଗୀତ ସୁନ୍ଦର ଅଭିନବ ।
ହସି କହେ କେମା ତୁହି,
"ବନ୍ଦୀ ମୁ ତୁମ ଠାଇଁ ।"
"କାଅ କବ ମୋର କଣ୍ଠର ଅଭରଣ ।
କିଏ ଶିଖାଇଲା ସଙ୍ଗୀତ ବିମୋହନ ?"

[୧୯୨୯] 

# ଆରତି

୧— ଅନ୍ତରେ ମୋର ଆରତି,
ତୁମ ଜୟ ମୋର ଭାରତୀ,
ତୁମରି ବିଜୟ ନିଶାଣ ଧରି ମୁଁ
ଲଭେଁ ଗୋ ପରାଣେ ଶକତି ।୦।

ଦୁଃଖେ ମୋର ଗୋ ମାଗ ତୁମ ଦାନ,
ଅନ୍ଧାରେ କହ ଗାଇବାକୁ ଗାନ !
ନିଃସ୍ୱ ହେଲେହେଁ ତୁଚ୍ଛ ପରାଣ
ଅରପେ ବିନୟ ଭକତି ।
ଅନ୍ତରେ ମୋର ଆରତି ।୧।

ଏ ମରତେ ନାହିଁ ଯଦି ମୋର ଥାନ,
କାହା ମନ୍ଦିରେ ନାହିଁ ଆସନ,
ଅଛୁ ପ୍ରିୟ ତବ ପ୍ରୀତି ଆହ୍ୱାନ,
ହେ ମୋର ଜୀବନ ମୁକତି ।
ଅନ୍ତରେ ମୋର ଆରତି ।୨।

ଶାନ୍ତ ତଟିନୀ ଅନାଏ ଗଗନେ,
ସନ୍ଧ୍ୟା ତାରକା ନଭ ଅଙ୍ଗନେ,
ନୀରବ ମୁଗଧ ତୀର ତରୁ ସମ
ପଦ୍ମରେ ଢାଳିବି ପ୍ରଣତି ।
ଅନ୍ତରେ ମୋର ଆରତି ।୩।



୨— ଯହିଁ ଫେରେ ମୋର ଦୃଷ୍ଟି,
ତୁମର ରୂପର ସୃଷ୍ଟି !
ଜୀବନ ଦେବତା ତୁମର ପ୍ରକାଶ,
ମୁକ୍ତ ଆକାଶ ଝୁରୁ କାଶ ହାସ ।
ଜୀବନର ଯେତେ ବିଫଳ ପ୍ରୟାସ
ବେଦନା ତୁମର ତୁଷ୍ଟି;
ଏ ସକଳ ଯେଣୁ ମୋର ରଚନ ନୁହେଁ
ତୁମର ରୂପର ସୃଷ୍ଟି ।୧।

ପ୍ରଭାତ ଆଲୋକ ଯାଏ ଗୋ ମିଳାଇ,
ପ୍ରାନ୍ତର ବନ ନଦୀ କହେ ଯହିଁ
ନାହିଁ ଗୋ ଦେବତା ଦୈନ୍ୟ ମ୍ଲାନ
ଅତୀତ ଜୀବନ ସ୍ମୃତି ।
ମୋ ଜୀବନ ପୂଜା ମଳିନ କୁସୁମେ
ତୁମର ରୂପର ସୃଷ୍ଟି ! ।୨।
ମିଳନ ପ୍ରଥମ ଅସ୍ଫୁଟ ହାସ,
ମରଣର ବ୍ୟଥା ବିଚ୍ଛେଦ ତ୍ରାସ,
ଜାଣେ ଯା ତା ଲାଗି କାହିଁକି ପ୍ରୟାସ ?
କାହିଁକି ଲୋତକ ବୃଷ୍ଟି ?
ଜୀବନ ସଙ୍ଗେ ପ୍ରୀତି ଆନନ୍ଦ
ତାଙ୍କର ରୂପ ସୃଷ୍ଟି ! ।୩।



୩ — (ଝୈବେ) ଅନ୍ତର ଗାଏ ସର ଅସିଲଣି ବେଳ,
ଯୁଗଳ·ପରାଣ ଯେନ ଲଗାଅ କି ଖେଳ ?
ପ୍ରୀତିରେ ପରାଣ ଆହା ଦଅ ଭରି,
ଅନ୍ତର ବୀଣା ଧୀରେ ଉଠେ ଥରି,
ବିନୟେ ଗୋ ମୋର ଅବନତ ହୁଏ ଶିର ।
ହେ ମୋର ଦେବତା ଢାଳଇଁ ଅଶ୍ରୁ ନୀର !
ମିଳନର ରାଗେ ବିରହ ଗୋ ଯାଏ ମିଳି,
ଜୀବନ ସ୍ପର୍ଶେ ମୃତ୍ୟୁ ହୁଅଇ ଲୀନ ;
କି ମଧୁରେ ଡାକ ବସିଲେ ଦୁଆର କଳି
ଅମା ଅନ୍ଧାର ଭେଦି ହସେ ଶୁଭଦିନ ।
ଗାଏଁ ଜୀବନର ଗାଥା;
ହେ ମୋର ଜୀବନ ଦାତା !
ତୁମର ଆଲୋକେ ବିକଶୁ ଜୀବନ
ଶୁଭ୍ର କମଳ ସମ,
ତୁମ ବିଶ୍ୱାସେ ଦୁଃଖ ଦୈନ୍ୟ
ସହିବାରେ ହୁଏ କ୍ଷମ ।
ଜୀବନ ନିକଟେ ନିଅ ମୋତେ କହି
ହେ ମୋର ଜୀବନ ପ୍ରିୟ !
ଆଜି କି ଆଦେଶ ଦିଅ ?
ନାହିଁ ସଂକୋଚ, ନାହିଁ ନାହିଁ ଭୟ,
ତୁମର ପ୍ରୀତିରେ ପରାଣ ବିଳୟ,
ଜାଣେ ମୁଁ ଜୀବନ କରିବାକୁ ଅରପଣ;
ଅଜାଣତେ ମୋର ଏ ସକଳ ଆୟୋଜନ !

ଦିଅ ଗୋ କର୍ମ ଭାର;
ତୁମର ଆଜ୍ଞା ସାର !

ପବିତ୍ର କର ସୁନ୍ଦର କର
ଏ ମୋର କ୍ଷୁବ୍ଧ ପ୍ରାଣ !
ସକଳ କର୍ମେ ଗାଏ ମୁଁ ତୁମର ଗାନ !
ତୁମର ଯୋଗ୍ୟ କରି ନିଅ ମୋତେ
ଦିଅ ଗୋ ତୁମରି ଦୀକ୍ଷା
ଜୀବନ ଯଜ୍ଞେ ଶତ ଆନନ୍ଦେ
ଏତିକି ମୋହର ଭିକ୍ଷା ।

[ ଡିସେମ୍ବର, ୧୯୬୯ ]

୪—

ଆଜି ଦେବ ବୋଲି କେଉଁ ଦୀକ୍ଷା,
ଲଗାଇଲ ଏ ପରୀକ୍ଷା ?
ହେ ପରମ ପ୍ରିୟ ଅନ୍ତରତମ
ମାଗିବକି ଆଜି ଭିକ୍ଷା ?
କେତେ ରୂପେ ଭାବେ ନେଇଛ ପରଖି,
ଦୁଃଖ-ଅକୂଳ ପଡ଼େଁ ଯେବେ ଥକି,
ଦୈନ୍ୟ ମାଗିଛ ଜୀବନର ଦାନ
ମୋ ଜୀବନ ପ୍ରହେଳିକା !
ଲଗାଇଲ କି ପରୀକ୍ଷା !
ନିର୍ମଣ ବାତ୍ୟା ଏ ଜୀବନେ କେତେ
ବିକଳ କରୁଛି ପ୍ରାଣ,
ଅଟେ ଚରଣେ ଆନନ୍ଦ ହାସେ
ଗାଇବାକୁ କହ ଗାନ !

—୯୦

ପଗ୍‌ଣେ ପଗ୍‌ଣ ଦିଅ ଗୋ ମିଳାଇ,
ସେନେହ ପ୍ରୀତିରେ ଦୁଃଖ ସେ ନାହିଁ,
ଅଶ୍ରୁ-ଅକୁଳ-ପଗ୍‌ଣୀ ବିଜୟେ
କରେ ତୁମର ପ୍ରତୀକ୍ଷା !
ତୁମର ଇଚ୍ଛା ପୂର୍ଣ୍ଣ କର ଗୋ
ଏତିକି ପାୟରେ ଭିକ୍ଷା ।
[ ଡିସେମ୍ବର, ୧୯୬୯ ] ——

୪—

ରୁଦ୍ର ହେ ମୋର ପ୍ରିୟ,
ଅଶ୍ରୁ ବେଦନା ଦିଅ !
ମରଣ ସମାନ ଅସ୍ତୁ ଛନ ଘୋଟି,
ବକ୍ଷ ପରଶି ହେଲେ ଯାଉ ଲୋଟି,
ସିତ ଉପହାସେ ପଜୁଷ ପବନେ !
ଜୀବନର କୂଳେ ରହି—
ତୁମ ଜୟ ଯିବି ଗାଇ ।
ତରଳି ଅସିଲ ତେଜ ଅଗଣିତ
ବକ୍ଷ ମୁଁ ଦେବି ପାତି
ଅଟଗା ଦରିଦ୍ର ସାଥି !
ଅଲେକ ବନ୍ଧୁନେ ଖୋଜୁଅଛି ଯହିଁ
ଅମା ଅନ୍ଧାର ରାତି !
ତୁମର ପରିଚ ବରସା ମୁଁ କର,
ଅକୁଳ ସାଗରେ ବାନ୍ଧ ନେବି ତରୀ
ଯେତେ ରୂପେ ଅସ ସୁନ୍ଦର ଶିବ
ମୋର ଶର ବରଣୀୟ ।
ରୁଦ୍ର ହେ ମୋର ପ୍ରିୟ ।



୨— ପ୍ରଭାତ ଅଲୋକେ ସୁନ୍ଦର ପ୍ରତିଭାତ !
ଚିର ଅମୃତ ହେ ମୋର ଜୀବନ ନାଥ ।
ଜୀବନ ସହିତେ ଉଠିଲ ହେ ଥରି
ମଳୟ ପରଶେ କଣଳୟ ସରି !
ଅମୃତ ଶତଦଳ ।
ନାଅ ମୋ ଅଶ୍ରୁଜଳ ।
ପ୍ରଭାତ ସହିତେ ସକଳ ସୃଷ୍ଟି ବନ୍ଦେ,
ତଟିନୀ ଅକାଶ ନୃତ୍ୟ ନବୀନ ଛନ୍ଦେ;
ଭ୍ରମର ପଦ୍ମରେ ଜୀବନର ଜୟ ଗାଏ,
ନୀଳ ପରବତ ମୁଗ୍‌ଧ ନୟନେ ଚ୍ଛହେଁ !
ନାବିକ ଚଳାଏ ତରି
ତୁମ ଜୟ ଗାନ କରି !
ପୂରୁବ ଗଗନେ ଗାଏ ତବ ଜୟ ସୂର୍ଯ୍ୟ,
ମଳିନ ମୃତ୍ୟୁ ତବ ପଦତଳେ ପୂଜ୍ୟ ।
ଚୌଦିଗେ ଅଜି ପୂର୍ଣ୍ଣର ଏ କ କାନ୍ତି !
ଏକ ଗୋ ମାଧୁରୀ ଶାନ୍ତି !
ତଟିନୀ ବକ୍ଷେ ଶାନ୍ତ ସୁଷମ ଛିଇ !
ତେସକେ ପୂର୍ଣ୍ଣ ସ୍ୱରୂପ ରହିବ ବୁହି;
ଦେବ ମୋ ମୁକ୍ତ ପ୍ରାଣ,
ଚିର ଦରିଦ୍ର କ ଦେବ ମୁଁ ପ୍ରତିଦାନ ?



୬— ଜୀବନ ପଥ ଯେବେ ଯାଏ ହଜି
ଅକୂଳ ବେଦନାରେ ବୁଲେଁ ଏକା,
ବନ୍ଧୁର ପ୍ରାଣ କା'ର ରହେ ମଜି
ଖୋଜଇ ହେବ ବୋଲି ଥରେ ଦେଖା !
ଖୋଜଇ ପଡ଼ଷର ଶାଳବନ
ଶଇଳ ନଦୀ କୂଳ ଧାନ କ୍ଷେତ,
ଶୂନ୍ୟ ଜନପଦେ ସମୀରଣ
କି ଭାଷା କହୁଯାଏ ଜାଣେ ସେତ ।
ଦିବସ ଶେଷେ ରବି ଯାଏ ବୁଡ଼ି
ଯାଏ ଯେ ଉଡ଼ି ବାସେ ମୂକ ପକ୍ଷୀ,
ପଶ୍ଚିମେ ଚାଏ ମୁଁ ଗୋ ପଥ ହୁଡ଼ି
ଜୀବନ ପଥେ ଏକା ଗଲି ଥକି ।
ହୁଡ଼ିଲେ ହୁଡ଼େଁ ପଛେ କି ଶୋଚନା ?
ଦେବ କି ନାହିଁ ଥାନ ଚିରି ଲତା ?
ଶତ ଲୋତକ କରି ବରଷଣି
ଏ ଦେଶେ ଢାଳି ଯିବ ମୋର ବ୍ୟଥା ।
ମୂକ ଶଇଳ ଏଥି ରହ ଚାହିଁ,
ଶାନ୍ତ ଏ ଆକାଶ ବିମୁକତ;
ଭାବନା ପ୍ରାଣେ ଆଜ କାହିଁପାଇଁ
ରଚିବ ମୋ ସପନ ଏଥି ଶତ ।
ବରଷ କୁଟୀରଟି ବିଭୋଳରେ
ବନ୍ଧୁ ପଥ ମୋର ଥିବ ଚାହିଁ,
ସନ୍ଧ୍ୟା ଗୋଧୂଳିର ଆଲୋକରେ
ନିତି ଏ ପଥେ ଯାଏ ବୀଣା ବାଇ ।

ସୁଦୂର ପଥିକ ଗୋ ନାହିଁ ଦେଖି ?
ଭୂଷଣ ଶିଖାହୀନ ରୂପ ତାର ?
ଲୁହ ରକତେ ପ୍ରୀତ ଯାଏ ଲେଖି,
ସୃଷ୍ଟି ବ୍ୟଥା ତାର ଗଳାହାର ।
ମନ୍ଦହାସେ ପୁଣି ତା ଅଧର
ଥରଇ ପ୍ରଣୟ କି ଅନୁରାଗେ ?
ଫୁଟେ ଅମର ଗୀତ ଜୀବନର
ଫୁଟେ କମଳ ଶତ ଦଗ ଭାଗେ ।
ଧନ୍ୟ ହୁଏ ନିଖିଳର ବ୍ୟଥା
ଝର୍ଣ୍ଣ ସ୍ୱନର ତାର ଜାହ୍ନବୀ,
ଶାନ୍ତ ସବୁଜର ମାଦକତା
ବହୁ ସେ ନିତ ଆସେ ମୋର ଭବ !



୮— ମଧୁ ମଳୟର ଦ୍ୱାରେ,
ସୁନୀଳ ତଟିନୀ ଧାରେ,
ନିରେଖିଲି କାର ଶୁଭ୍ର ମୂରତି,
ଚରଣେ ପରଶି ଢାଳିଲି ପ୍ରଣତି,
ଗାଇଲି 'ହେ ମୋର ଅରୂପ ଶକତି
ଆଜି ତବ ଅଭିସାରେ—
ଆସିଛୁ ବଧୂର ପ୍ରଣୟିନୀ ତବ
ସୁନୀଳ ତଟିନୀ ଧାରେ !
ମଧୁ ମଳୟର ଦ୍ୱାରେ ।

ଶୁଣିଛୁ ଅଜ ଗୋ ସ୍ନିଗ୍ଧ ସେ ଡାକ,
ତରୁ ମର୍ମରେ ! ମୁହିଁ ନିର୍ବାକ,
ଚାହିଁଛି ସୁଦୂରେ କି ଭରସା ରଖି
ଗଳିତ ଅଶ୍ରୁଧାରେ,
ମଧୁ ମଳୟର ଦ୍ୱାରେ ।

ଡାକ ପୁଣି ମତେ ବସନ୍ତ ସଖା,
ଭୁଲେଁ ଅବହେଳେ ମୃତ୍ୟୁ ଶଙ୍କା;
ସକଳ ମଳିନ କୁତ୍ସିତ ଭୁଲି,
ତଟିନୀ ପର ମୁଁ ପଡ଼ିବି ଉଛୁଳି,
ସୁନ୍ଦର ତବ — ରୂପ ରସେ ମଜି
ଯାଉ ମୋ ଚିତ୍ତ ପୀରତିରେ ହଜି
ଅଜି ! ଏ ତଟିନୀ ଧାରେ,
ମଧୁ ମଳୟର ଦ୍ୱାରେ !

ଅଦୂରେ ଶୋଭଇ ଅମ୍ର ମୁକୁଳ,
ତା ସମ ପରାଣ କଲି କେ ଅକୁଳ ?
ଜଡ଼ିତ କର ଗୋ ପ୍ରେମ-ଦୁକୂଳ
ବିରହିଣୀ-କର୍ବ-ଅଙ୍ଗେ;
କୁସୁମର ଅଶା ଭର ଏ ଚିତ୍ତେ
ମରଣକୁ ଭୁଲେଁ ଏ ରୂପ-ତୀର୍ଥେ,
ସ୍ୱଚ୍ଛ ପୂତ ପ୍ରୀତି-ସଙ୍ଗୀତେ
ଅମର ମନ୍ତ୍ର ସଙ୍ଗେ !

ବହ ଗୋ ବହ ଗୋ ମନ୍ଦ ପବନ,
କହ ଗୋ କାନ୍ତ ଶୈଳ କାନନ,

ରହ ନା ନିମେଷେ ଭାସମାନ ତରୀ,
ଅକୂଳତା ଭର ଯାଏଁ ମୂର୍ଦ୍ଧା ମର,
କ୍ଷୁଦ୍ର ଲହରୀ ତଟିନୀରେ ଡୋଳି,
ଛୁଟିଛ କା ଆଡ଼େ ପାଲ୍ ଦେଇ ଖୋଲି ?
ମିଳିବ କି ତାର ଦେଖା ?
ପାଇଛ ତା ପ୍ରୀତି ଲେଖା ?
ଯିବି ମୁଁ ତା ଅଭିସାରେ !
ଡାକିଗଲା ସେ'ବା ଅକୂଳକଣ୍ଠେ
ମଧୁ ମଳୟର ଦ୍ୱାରେ !

———

୯—ପଲ୍ଲବ ପବନରେ ପାଦପ ଲତା ଆଜି ଝରିବ,
ଛାଡ଼ିଲେ ପୁରାତନ ତେସନେ ଛାଡ଼ିବି ମୁଁ ଗୋ ଗରବ;
ଆଶା ବାସନା ରାଜି
ସକଳ ତେଜି ଆଜି,
ତୁମରି ଦୁଆରେ ମୁଁ ଜୀର୍ଣ୍ଣ ତରୁସମ
ଏଡ଼ି ମୋହ ଭରମ ରହିବି,
(ତୁମ) ପୀରତି ରାଜସଭା ଆସନ ତଳେ ଜଭା
ହୋଇ ମୁଁ ବନ୍ଦନା ଗାଇବି ।
ତଟିନୀ ପୁଲକିଲେ ସ୍ନାହାନ ସମାପନ
ସାରି ସହଜେ ତୁମ ଧୂଆନେ ନିମଗନ;
ସନ୍ଧ୍ୟାସମ ପ୍ରଭୁ ରହିବି ପଥ ଚାହିଁ
ଭିଖାରୀ,
ଯେକାଳେ ହରଷରେ ପ୍ରତୀଚୀ ଗଗନରେ
ବହିଗେ ଯାଉଥିବେ ବାହାର ।

ଅସ୍ତ ତପନକୁ ଯେକାଳେ ଗୁହିଁ ଗୁହିଁ,
ସ୍ୱପ୍ନଲୋକେ ତସ୍ୱ ନାହିଁକ ଯିବ ବାହି,
ଗନ୍ଧ ଉପବନ୍ତୁ କୁସୁମ ସୁବାସିତ ଡୋଲବ;
ଅରତ ଲଗି ତବ ଅଶ୍ରୁ ପସରିଟି ଖୋଲିବା।

[୧୯୬୯]



## ଉଷସୀ

ପ୍ରଥମ ମିଳନବାସେ,
ମିଳିଲ ଯେ ଧନ ହୃଦୟ ଦୁଆରେ
ଉଷସୀ ଅଲୋକ-ହାସେ ।

ଭାଳିଲି ତୁମେ ସେ ତରୁଣ ସପନ,
ସ୍ପନ୍ଦନ କର କୁସୁମ କାନନ,
ମୋ ମନ ବହନ, ବଡ଼ ଅଶୋଭନ—
ଚଳିବ ଅପଣା ପଥେ;
ନନ୍ଦନ ସୁର-ରଥେ !

ଭାଳିଥିଲି ତୁମେ ସନ୍ଧ୍ୟା ତାରକା,
ହେମ କୁରଙ୍ଗୀ ହୃଦୟର ଦକା,
କନ୍ଦର୍ପ ଡେଙ୍କ ଅସିଛ ଅଲକା
ଲଗାଇବ ବୋଲି ମାୟା;
ତୁମେ ମରୀଚିକା ଛାୟା !

ଅଥବା ପ୍ରଭାତ କାସାରେ କମଳ,
ଘନ ନୀଳକଇଁ କୁନ୍ଦ ଧବଳ,

ବଜୁଳି ଛଟକେ        କାନ୍ତ ଚପଳ—
ଯିବ ବୋଲି କ୍ଷଣେ ଅସ୍ତ,
ତରୁଣ ଜୀବନେ        ନାନା ରୂପେ ଭବେ
ଭ୍ରମର ଲୀଳା ସମସ୍ତ ।
ଅଞ୍ଜନ କଳା ଖଞ୍ଜନ ଆଖି,
ସ୍ୱପ୍ନ ତରୁଣେ ଦେଲ ଯେବେ ଡାକି
ଅନ୍ତର ମୋର        ଗରଳକୁ ଘୃଣି
କହିଲ "ନାହିଁ ଗୋ ନାହିଁ"
"ଜୀବନର ଶେଷେ        ନବ ଆୟୋଜନ
କର ଅବା କାହା ପାଇଁ ?"
ମନେ ହସିଲ, ଗୁହିଁଲ ଅଳ୍ପ,
ନନ୍ଦନ-ଫୁଲ-ବୃଷ୍ଟି-କଳ୍ପ,
ଅବାସେ ପ୍ରଭାତ        ମନ୍ଦ ଅଲୋକ
ତ୍ରିଭୁବନ ଯାଏ ଛୁଇଁ,
ଚମକି ଉଠିଲି        ଯେସନେ ତଟିନୀ
ସ୍ୱରଭି-ମଳୟ-ଛୁଇଁ ।

କହିଲି ମୁଁ "ନାହିଁ ନାହିଁ"
"ଯୌବେ ଅଙ୍କ ଏ        ପୀରତର ଦୋଳ
ଲଗାଇବ କାହିଁପାଇଁ ?"
ନୀରବ ହେଲ ଟୋ ସ୍ୱନି !
ଦୂର ଦେଶେ ଗଲ ଯାଣୀ !

ବହିଲା ଜୀବନେ କର୍ମର ବାୟୁ
ସରଲ ତରଣୀ ସରଅବେ ଆୟୁ

ଢେଗିଲି ଅଶ୍ରୁ ଆନନ୍ଦ ବିନ୍ଦୁଁ —
ତରୁଣ ଚନ୍ଦ୍ର ଜ୍ୟୋତି,
କି ଅବା ତାରକା ଜ୍ୟୋତି !

ମଳିନ ପଡ଼ିଲା ବାସନା-ବିଳାସ
ଛୁଟିଲା ସକଳ ପୀରତର ପାଶ
ପରାଣି କାହିଁକି କରେ ଉପହାସ ?
କାହିଁ ପୂର୍ଣ୍ଣିର ଛବି ?
ପଶ୍ଚିମେ ବୁଡ଼େ ରବି !

ଫେରିଲେ ବିହଗେ ବଳାକା ଆକାଶେ
ତଟିନୀ ତୀରେ ମୁଁ ଗୁହୁଛି କା ଆଶେ
କାଳଗି ଶୂନ୍ୟ ମନ୍ଦର ପ୍ରାସେ
ପୂରିଛି, କାହାବା ମୁକ୍ତି ?
ଦେବ କିଏ ଆଜି ଯୁକ୍ତି ?
ଗୋଧୂଳି ଆଲୋକେ ପୁଣି ଛବି କାର
ଝଳଇ ? ନାହିଁ ତୋ ତଳେତ ବିକାର,
ସୁନ୍ଦର ପୂତ ଶୁଭ୍ର ଅପାର
ବାସନା ବସନ ତେଜି
ପଦ ସଞ୍ଚାରେ ସଙ୍ଗୀତ ତୋଳି
ଆସକେ ନ ପାରେଁ ହେଜି !
ଦେଖିନି ଏସନେ ପୂତ ମୂରତି
ଅନ୍ତରୁ ଆସେ ପୂର୍ଣ୍ଣ ଭକତି
ପୀରତି ଅଶ୍ରୁ ଶ୍ରଦ୍ଧା ପ୍ରଣତି
ଭାଳେଁ ଆଜି ଦେବି ଢାଳି,
ବୃଥାଯାଏ ଦିନ ଭାଳି !

କହୁଲ ହେ ଦେବୀ ଅପୂର୍ଣ୍ଣ ମୁହଁ,
ପୁଣ୍ୟ ଚରଣେ ଯାଅ ଥରେ ଛୁଇଁ,
ସୂର୍ଯ୍ୟ ସମାନ        ତୁମେ ଅନ୍ଧ ଉଇଁ
ନାଶ ଗୋ କାଳିମା ରାଶି;
ପୁଣ୍ୟ-ଚିରନ୍ତ-ସଙ୍ଗୀତ-ପରକାଶି ।

ଏ କି ଅଦ୍ଭୁତ ଦେଖେଁ ଆଖି ମେଲି,
ବିଶ୍ୱାସ ନୁହେଁ, ପାରୁ ନାହିଁ କଳି,
କିଏ ପୁଣି ତୁମେ        ବିରଚିଲ କେଳି
ସ୍ପୃହୁଁ ଏକି ନୂଆ କଥା ?
ପୁଣି ଅତୀତ ମମତା !

ପରକାଶ ପୁଣି ବାସର ଯାମିନୀ ହାସ
ଅନ୍ଧକାର-ପ୍ରୀତ ଦୂର ଜୀବନର ପ୍ରାସ
ସେ ଦିନର ମାୟା        ଅନ୍ଧ ଜୀବନର ତ୍ୟାଗ !
ତୁଷାର ଶୁଭ୍ର ଅମୃତ ଅନୁରାଗ !

[୧୯୨୯]



## ଅଳକା

ଯେ ଦେଶେ ନୀଳ ତଟିନୀ ଜଳେ
ଯାଉଛୁ ଭାସି ସପନ ତରୀ;
ଯେ ଦେଶେ ରାତି ଲଜ୍ଜାବତୀ
ଦିବସ ଶେଷୁଁ ପଳାଏ ଥରି;
ପାଦପ ମୋହେ ଯେ ଦେଶେ ଲତା,
ନ ସହି ପ୍ରୀତି ସୋହାଗ ବ୍ୟଥା,

କୁସୁମ ଡାଳି          ପଡଇ ଢଳି
ଫଗୁଣେ ନବ ପୀରତି ପରି
ଯାଉଛୁ ଭାସି ସପନ ତରୀ ।
ଯେ ଦେଶେ ଭରି ମଳୟ ଝୋର
ଫୁଲ୍ ପରାଗ ଯାଏ ଗୋ ବୋଳି,
ପୀରତି ଦୋଳେ କାମିନୀ ଜନ—
ଉଲ୍ଲସ୍ୟ ଯାଏ ଗୋ ଖେଳି;
ଚକୋର ଲଜେ ନୁଆଁଇ ଆଖି,
ବାନ୍ଧେ ପ୍ରିୟା ପୀରତି ରାଖି,
ନିଶୂନ ଭୂଇଁ          ପ୍ରଣୟୀ ଦୁହେଁ
ଚୁମ୍ବନଟି ଯାଏ ଗୋ ତୋଳି,
ଉଲ୍ଲସ୍ୟ ଯାଏ ଗୋ ଖେଳି ।
ମୁକୁଳ ମଦେ ମୁଗ୍ଧ ପିକ
ପ୍ରିୟାରେ ଡାକେ ଅକୁଳ ଭରେ,
ଚପଳଖେଳା ଖଞ୍ଜିସ୍ରୋଠ
ଲଗାଇ ଭ୍ରମ ନୃତ୍ୟକରେ;
ସ୍ନାହ୍ୱାନ ରତା ନବ ତରୁଣୀ,
ଚକିତେ ବ୍ୟଥା ଲଭଇ ପୁଣି,
ଖସଇ ବାସ          ସରମ-ହାସ
ଯାଏ ଗୋ ଭାସି ତଟିନୀ ଜଳେ ।
ପ୍ରିୟାରେ ଡାକେ ଅକୁଳଭରେ ।
ଯେ ଦେଶେ ନୀଳ          ଶଇଳ ମାଳ
ଆକାଶେ ତୋଳି ରହଇ ମଥା;
ବୁଡ଼ଇ ରବି          ଅକୁଳ କବି
ସେ ଦେଶେ ଦୁହେଁ କହେ ତା କଥା ।

ସେ ଦେଶେ କ୍ଷୀଣ ମଳିନ ଶଶୀ,
ଶୂନ୍ୟ ରାତେ ଯାଏ ଗୋ ଲସି,
ସେ ଦେଶେ ପ୍ରିୟା ଅକୁଳ ହୃଅ
ମୋ ଲାଗି ଗୁହ୍ୱ ଜାଳଇ ବ୍ୟଥା
ଅଶ୍ରୁଭରେ ନୁଅଁଏ ମଥା !
କାନନ ମୃଗ ଚକିତା ଡାକେ
ସରଳ ନେତ୍ର କାହାଁକୁ ଥରେ ?
ଶୂନ୍ୟ କୁଞ୍ଜେ ବଧୂର ପ୍ରିୟା—
ମୃଗନୟନ୍ତୁ ଅଶ୍ରୁ ଝରେ;
ମଳିନ ବେଶ ଶିଥିଳ କେଶ,
ଭରେ ବଳୟ ଦିଏ ଗୋ କ୍ଳେଶ,
ଫଗୁଣ ରାସ ମନ ଉଦାସ !
ମରମ ବ୍ୟଥା ମରମେ ମରେ
ସେ ଦେଶ କବି ନୀରବେ ସ୍ୱରେ ।
ବାଚ୍ଛେଦେ ତା ଅଳସ ଗତି
ମଳିନ ଆଖି ଅଶ୍ରୁଭରା,
କଣ୍ଟକିତ କୁସୁମ ଶେଯ
ଶୂନ୍ୟ ଦିଶେ ଫଗୁଣ ଧରା !
ମୋ ରାଜଜେମା ଜାଗର ଜାଲି,
ଦିବସ ଜାଗେ ମିଳନ ଭାଳି,
ଲେଖଇ କବି ଅଶ୍ରୁରେ ତା
ସୁଦୂର ଦେଶେ କାବ୍ୟ ପରା ?
ଶୂନ୍ୟ ଦିଶେ ଫଗୁଣ ଧରା ।



# ଯକ୍ଷର ଶୋଚନା

ସୁଦୂର ମୋର କାନନ ଭୂଇଁ
　　　　ବରଷ ଅସି ଭରମେଁ ଦୂରେ,
ସେ କେଉଁ ମାୟା ହରିଣୀ ପଛେ—
　　　　ମରଣ ଅବା ! ନିରତେ ଘୂରେଁ ।
ଶଇଳ ବନ ଶ୍ୟାମଳ ଲତା,
ନୀରବେ ଢାଳେ ପରାଣି ବ୍ୟଥା,
ଏ ଦେଶ ମରୁ ଜୀବନ ହୀନ !
　　　　ଏକାକୀ ମରେଁ ପରାଣ ପୁରେ ।୧।

ଜନମ ଭୂଇଁ ଘେରନ୍ତି ନଈ
　　　　ନଉକା କେତେ ଯାଏ ଗୋ ଭସି,
ପ୍ରିୟ ଜନର ବାର୍ତ୍ତା ବହି
　　　　ବିରହେ ପୁଣି ଅଶ୍ରୁ ଗଣି ।
ସେ ଦେଶ ଛାଡ଼ି ଅଇଲି ମୁହିଁ,
ପୀରତି ହୀନ ଏ ମରୁ ଭୂଇଁ,
ଶୁଣିବ ପଦେ ସେନେହ କଥା
　　　　ଭରସା ନାହିଁ ଏ ଦେଶେ ଅସି ।୨।

ସନ୍ଧ୍ୟା ହେଲେ ବୁଡ଼ିବେ ରବି
　　　　ନକ୍ଷତ୍ର ହେବ ଆକାଶ ମଧ୍ୟ;
କୁଳ କାମିନୀ ତଟିନୀ ତୀରେ
　　　　ଯିବେଣି ଜଳେ କଳସୀ ବହୁ ।

ଅଳସ ଗତି ନୂପୁର ଧ୍ୱନି
ପଶୁଥାଏ କି ହସେ ଅବନୀ
ଗୋପ ବାଳକ ମୁରଳୀ ଧ୍ୱନି,
ଦୂର କାନନୁଁ ଶୁଭଇ ରହି;
ସଙ୍ଗୀଗଣ ଗହଳେ ପ୍ରିୟା
ଯିବଣି ଜଳେ କଳସୀ ବହି । ୩ ।

ଶ୍ୱେତ ମଳୟ ଅଧୀରେ କେତେ
କାନନେ ବୁଲେ ଯିବିଟି ଭୁଲି,
ମର୍ମରବେ ପାଦପ ଲତା
ବହଗେ ଗୀତେ ସବଳେ ଭୁଲି ।
ଜୀବିତ ମୋର ପରାଣ ଭାଷା,
ସବୁ ସାଧନା ସକଳ ଆଶା,
ସେ ଦେଖ ମୋର ପରାଣ ପ୍ରିୟା
ମୋ ପଥ ଚାହିଁ ପଡ଼ଇ ଢଳି;
ଦିବସ ଯାଏ ମୋହତ ମାୟା—
ହରିଣୀ ପଛେ ଭରମେ ଭୁଲି । ୪ ।

—•—•—

## ବିରହ ପୂର୍ଣ୍ଣିମା

ଫଗୁଣ ନିଶାରେ ଅନ୍ତର ପ୍ରିୟ
ରହିଥିଲି ମୁଁ ଗୋ ଚାହିଁ;
ବିରହିଣୀ ତୁମ ପାଇଁ ।

ତୃଷିତ ବିକଳ ଚିତ୍ତ ଅଧୀର,
ଖେଳିବାକୁ ତୁମ ସହିତେ ଅବିର,
ଯହିଁ ନୟନରୁ          ଶୁଖିଗଲା ନୀର
ପ୍ରୀତି ରୀତି ଗଲା ପାହି;
ନୀରବେ ରହିଲି ଯହିଁ ।
ପ୍ରଣୟିନୀ ତୁଲେ       ଖେଳିଲେ ପ୍ରଣୟୀ
ଅକୁଳ ଜୋଛନା ମହି,
ମଲ୍ଲି ବକୁଳ ରଜନୀଗନ୍ଧା
କାନେ କବା ଦେଲେ ବନ୍ଧୁ !
ନ ପାରିବା ଧରେ ରହି,
ମାଧବୀ ନିଶୀଥେ ସହି,
ମତୁଆଳ କଲା ଦକ୍ଷିଣା ବାଆ
ଅନ୍ତରେ ଅଜା ବହି !
ହସିଲେ ଚନ୍ଦ୍ର, ହସିଲେ ତାରକା
କୁଳବଧୂ ଭୁଲିଗଲେ ଲାଜ ଦକା
ମର୍ତ୍ତ୍ୟ ହେଲା କି          ମିଳନ-ଅଳକା
ବିଚ୍ଛେଦ ତଳେ ନାହିଁ ।
ମୋ ହୃଦ ଯମୁନା ଶୂନ୍ୟ ପୁଳିନେ
ନ ବାଜିଲା ଥରେ ବେଣୁ,
ନିଠୁର ପୀରତି ଯେଣୁ !
ଯୌବନ ମୋହେ ମତ୍ତ କାମିନୀ
ବୋଳିଲେ ଲୋଧ୍ର ରେଣୁ ।
ଗାଇଲେ ହରଷେ ଗୀତ,
ହାସ ରସେ ପୁଲକିତ,

ପ୍ରୀତି ଅଶା ପ୍ରାଣେ ଭରି,
ଏକା ମୁଁ ରହିଲି ପଡ଼ି ।
× × ×

ପରାଣ ବନ୍ଧୁ ତୁମେ ମୋର ପର ?
ସକଳରୁ ପ୍ରିୟ ଦୁଃଖ ପାଶୋର ?
ପାଶେ ଥାଇ କପାଁ ଦଅ ନାହିଁ ଧରା
ତୁମ ପ୍ରୀତି ଗୀତ ଗାଇ,
ଦବା ଜାଣି ରହେ ଟହିଁ ।
× × ×

ପଡ଼ି ରହିଲା ମୋ ଦୀପ୍ତ ଅବାର
ହେ ମୋର ହୃଦୟ ରାଜ
ମଳିନ ହେଲା ମୋ କୁସୁମ ଶଯ୍ୟା
କର୍ପୂର-ଫୁଲ-ସାଜ ।



## ମୂକ-ଭଗବାନ

ଜୀବନର ଯଜ୍ଞେ ଯହିଁ ଦୀନ ଅକିଞ୍ଚନ
ଲଭନ୍ତି ଅହୂତି ତହିଁ ପାଉଛ ଆସନ—
ହେ ଦରିଦ୍ର ସଖା, ନିଖିଳର ରାଜେଶ୍ୱର !
କରିବାକୁ ଏ ଜୀବନ ସୁନ୍ଦର ଅମର ।
ବରି ନେଇଅଛ ଆପେ ଦୈନ୍ୟ ନିର୍ଯାତନ,
ସହସ୍ର ଲାଞ୍ଛନା ଭୋଗ କ୍ଷତ ଅନଶନ,

କରିଅଛ ଶୁଭ୍ର ଦେହ ଶୋଣିତ ଅପ୍ଲୁତ,
ମାନବ ଗରଳ ବର୍ଷି କରୁଛ ଅମୃତ !
ଅଶ୍ରୁ ଅନ୍ତରାଳ୍କୁ ତହିଁ ଫୁଟାଉଛ ହାସ,
କାରୁଣ ଅନ୍ଧାରୁ ତବ ଆଲୋକ ପ୍ରକାଶ !
ପ୍ରଭଞ୍ଜନ ଝଞ୍ଜାମେଳେ ହସ ତୁମେ ଶାନ୍ତ !
ମୃତ ଜୀବନର ଭସ୍ମେ ଅରବିନ୍ଦ କାନ୍ତ !
ନିଖିଳ ବିଶ୍ୱର ପାପ ଭାରେ ନିଷ୍ପେଷିତ,
ମନ୍ଦ ହାସେ ଗାଉଅଛ ଅମର ସଙ୍ଗୀତ ।

—୨—

ଗାଉଛ ଦରିଦ୍ର ସୁରେ ନିଖିଳର ବ୍ୟଥା
ଭ୍ରାନ୍ତ ଏ ମାନବ ଲଗି ଏତେହିଁ ମମତା !
ନୟନ ଯୁଗଳୁ ବହିଯାଏ ବାରିଧାର
ଦନ୍ଦ୍ୱଦନ ବଢ଼େ ଯେତେ ଜୀବନର ଭାର ।
ସଭ୍ୟତାର କାଳ ସର୍ପ ବକ୍ଷେ ହୋଇ ଘାର,
ପଡ଼େନାହିଁ ତୁମବ୍ୟଥା ଶ୍ରବଣେ କାହାର ।
ତୁମ ଅଶ୍ରୁ ଯୋଗେ ହୁଏ କୁଳିଶ ତରଳ
ମୂକ ପରବତ୍ତୁ ଫାଟି ପଡ଼େ ଅଶ୍ରୁ ଜଳ !
ହେ ମୂକ ପାଷାଣ ପ୍ରଭୁ ଚିର ଅଚଳ !
ହେ ଲାଞ୍ଛିତ ନିଷ୍ପେଷିତ ହେ ଶିବ ମଙ୍ଗଳ !
ତୁମରି ଶୋଣିତ ଅଶ୍ରୁ ଦାନ କର ପ୍ରାଣ
ପରଶିଛୁ, କି ଆଦେଶ ଗାଇବାକୁ ଗାନ
ନତଶିରେ ଶ୍ରୀ ପଦ୍ମରେ ମାଗେ ଅକ୍ଷ ଭିକ୍ଷା
ଦିଅ ଚେ ଦୈରିକ ବାସ ଦାରିଦ୍ର୍ୟର ଦୀକ୍ଷା ।



# ସେନା-ସଙ୍ଗୀତ

ନାସ୍ତିକ କରୁଁ ଅଟ୍ଟହାସ୍ୟ
ମୃତ୍ୟୁକୁ କରୁଁ ଫୁତ୍କାର,
ବିଶ୍ୱନାଥର ସୈନିକ ଅମେ,
ଦୁର୍ଜୟ ଅମେ ଦୁର୍ବାର !

ଦୁଃଖ କି ଭାଇ ଅମେ ବୈରାଗୀ,
ସତ୍ୟ ପରାଣେ ରହିଅଛୁ ଜାଗି,
ଶୋଚନା ଦୁଃଖ ହେବ କାହାଲାଗି ?
ମିଥ୍ୟାର ହାତୁ ନିସ୍ତାର !
ମୃତ୍ୟୁକୁ କର ଫୁତ୍କାର ।

ଦୀପ୍ତ ଅମର ନୟନର ତେଜେ
ଶୃଙ୍ଖଳ ପଡ଼େ ଖସି,
ଲୁଚଇ ମୃତ୍ୟୁ ଅନ୍ଧକାର
ଉଠଇ ଉଠିଲେ ହସି,
ଆମ ପଦତଳେ କାନ୍ଦେ ଧରଣୀ
ପାଣ୍ଡୁର ଦଶେ ନଭ,
ନିର୍ଜୀବ ମୋହ ଶାନ୍ତିରେ ଅଣୁ
ଧ୍ୱଂସର ଉପଦ୍ରବ ।

ଉଠଇ ଉଠରେ ହସି !
ଶୃଙ୍ଖଳ ପଡ଼ୁ ଖସି !
ଡାକେ ଭୈରବୀ ଶ୍ମଶାନ ଚଣ୍ଡୀ
ମୌନ ଶୋହେ କି ବସି ?

ଅଜ୍ଜ ଅନ୍ତରେ ପ୍ରଳୟ ବିଳାସ !
ଅଜରେ ଜଡ଼ତା ଦିଏ ବଡ଼ ତ୍ରାସ !
ଅଜ୍ଜ ମରଣର ମହା ଅନନ୍ଦ
ହୃଦୟ ତନ୍ତ୍ରେ ଝଙ୍କାର;
ମୃତ୍ୟୁଙ୍କୁ କର ଫୁତ୍କାର !
ଅଜି, ମୁକ୍ତିର ଗୀତ ବୋଲ;
ଖୋଲ, ରୁଦ୍ଧ ଦୁଆର ଖୋଲ;
ଅସରେ ମୃତ୍ୟୁ ପଥ ସୈନିକ
ଅନ୍ତ୍ୟମେ କର କୋଳ ।
ଅମେ, ଅମର ଅଜୟ ବୀର;
ନୁହେଁ, ନତ ଉନ୍ନତ ଶିର;
ରଣ, ଭୂମିରେ ସଦା ଅନନ୍ଦ !
ସଦା, ମିଥ୍ୟା ସହିତେ ଦ୍ୱନ୍ଦ !
ନିଷ୍ପେଷିତର ଧମନୀ ଅମର
ଶୋଣିତ ଅହୁତି ପର୍ବ !
ଅମର ରକ୍ତେ ଜୀବନ ବିକାଶ
ଶାନ୍ତ ତପତ ଧାର ।
ଦୁଃଖୀ କ ଭାଇ ଅମେ ବୈରାଗୀ,
ଘାତକଙ୍କୁ ଡାକ ଦେଇ ଯାଉ ଦାଗି,
ଛନ୍ଦ ଗଳାରେ ମୃତ୍ୟୁର ଫାଶ
ଶାନ୍ତ ହେଉରେ ସଂସାର;
ନିର୍ଭୟ ଅମେ ଅମେ ଅମୃତ !
ଦୁର୍ଜୟ ଅମେ ଦୁର୍ବାର !



## ସାଥି

ମୋର ଜୀବନର ସାଥି !
ଅନ୍ତରେ ଜାଳି      ପୀରତି ପ୍ରଦୀପ
ଆଣି ଉତ୍ସବ ରାତି !
ତୁମେ, ନନ୍ଦନ ବନ ମଧୁ ,
ତୁମେ, ନୁହସି ତରୁଣୀ ବଧୂ ,
ତୁମେ, ପଲ୍ଲବ ଚିର ଶାନ୍ତ,
ମୁଁ ଗୋ, କ୍ଷୁବ୍ଧ ଅକୂଳ ପାନ୍ଥ !
ତୁମେ, ସୁନ୍ଦର ପୂତ କାନ୍ତ !
ତୁମେ, ହୃଦୟର ଜ୍ୟୋତି ଅରୁଣ ସମାନ
ସ୍ନେହେଁ, ମୁର୍‌ଛେ ମୁଁ ଅବିଶ୍ରାନ୍ତ !

ତୁମେ, ସନ୍ଧ୍ୟା ଗଗନ ତାରା ;
ତୁମେ, ଉଷାର ପିୟୂଷ ଧାରା,
ତୁମେ, ଉନ୍ମାଦ ମଳୟର,
ତୁମେ, ଶାନ୍ତ ଶାରଦ-ଚର;
ତୁମେ, ମୁକ୍ତ ଆକାଶ ନୀଳ,
ତୁମେ, ତଟିନୀ ଗୋ ଅନାବିଳ,
ମୁଁ ଗୋ, ଅଞ୍ଜଳି ପାତି   ପୀରତି ଦୁଆରେ
ଭିକ୍ଷୁକ ବସେଁ ଚିର !
ତୁମ, ଆନନ୍ଦେ ଉଠେଁ ମାତି
ଅଗୋ, ଚିର ଜୀବନର ସାଥି !

ତୁମେ, ଅନନ୍ଦ ସୁର ଧ୍ୱନି,
ଶତ, ଲୀଳାର ଅଧାର ଗୁଣୀ,
ତୁମେ, ତରୁଣ କଳାର ସ୍ୱପ୍ନ,
ତୁମେ, ଅଜ୍ଞ ଅଲୋକ ରଶ୍ମି,
ତୁମେ, ଭଙ୍ଗୀ ଗୁରୁତ୍ୱ ପୂର୍ଣ୍ଣ,
ମୁଗୋ, ବାସନାରେ ସଦା ଯୁକ୍ତ,
ତୁମେ, ସନ୍ଧ୍ୟା ସମାନ   ଶାନ୍ତ ଉଦାର,
ମନ୍ଦର ମୋର ଶୂନ୍ୟ !
ତୁମେ, ତାଲ୍ ଅନ୍ତର ପୁଣ୍ୟ !
ଅଗୋ, ତରୁଣ-କବର-ଜାୟା,
ଶର, ସୃଷ୍ଟିରେ ତବ ମାୟା,
ତୁମେ, ନାନାରୂପେ ରସେ ଖେଳ,
କେତେ, ବରହ, ହୃଦୟ ମେଳ,
ମୁଗୋ, ଦେଖିଛୁ ତ କୋଟି ବେଶେ,
ଦୂର, ପର୍ବତ ମରୁଦେଶେ,
କେବେ, ବୈଶାଖ ନଦୀଧାରେ,
କେବେ, ସନ୍ଧ୍ୟା ଗୋଧୂଳି ପାରେ,
ତୁମେ, କେବେ ନବବଧୂ   କେବେ ପ୍ରଣୟିନୀ
କେବେ ଚଳ ଅଭିସାରେ !

କେବେ, କକ୍ଷେ କଳସୀ ଧର
ହସି, ଅଳ ତୁଲେ ଯାଅ ସର,
ମୃଦୁ, ହାସେ କଟାକ୍ଷ ହାଣି;
ନିଅ, ପଲ୍ଲୀବାସିନୀ ପାଣି
ତରୁଣ ହୃଦୟେ   ବାସନା ବିକାର
ଜାଳଯାଅ ଜାଣି ଜାଣି !

ତୁମେ, ଚପଳା ଅଲୋକ ଜ୍ୱାଳ,
କେଉଁ, ଶୂନ୍ୟେ ମିଶ ଗୋ ଅଳ;
କେଉଁ ଶ୍ରାବଣ ବାଦଲେ ମିଶ,
କବ୍ରୁ ଗାଇ ମଟର ଅହର୍ନିଶ;
ତୁମେ, ନୀଳଧାନ କ୍ଷେତେ ଲହସ୍ପ ବିଳାସ
ନିଗାଳି ଖୋଜ କେଉଁ ଦାଣ ।

ତୁମେ, ଲକ୍ଷ୍ମୀ ଗୃହିଣୀ ସତୀ,
ତୁମେ, ସନ୍ଧ୍ୟାରେ ଜାଳ ବତି;
ଅଣ, ସୃଷ୍ଟିର ଶିବ ପ୍ରିୟ,
ତୁମ, ଅଲୋକ ସ୍ୱର୍ଣଦାଅ !
ତୁମେ, ତ୍ୟାଗ ଦୀକ୍ଷା ଧର,
ପ୍ରେମେ, ଦାଅ ଟେଗା ଭୁବନ ଭର,
ସୃଷ୍ଟିରେ ପର କର ଅପଣାର,
ଚିର ପ୍ରିୟ ସୁନ୍ଦର !

ତୁମେ, ଦୁଃଖରେ ଢାଳ ଲୁହ,
ଢାଳ, ପରାଣ-ପୀରତ-ସୁଅ
ପ୍ରେମେ, ଅପଣା ପରକୁ ଭୁଲ,
ସବୁ, କର ଏକ ସମତୁଲ,
କବ, ମୁଗ୍ଧ ନୟନେ ଚାହିଁ,
ପ୍ରାଣ, ମୂର୍ଚ୍ଛ ଗୀତଟି ଗାଏ !
ନାହିଁ, ବାସନାର ପୀଡ଼ା ଆଜ,
ତୁମ, ଶିର ସିନ୍ଦୁର ଚୁହୁଁ !
ଶାନ୍ତ ପରାଣ ପୀରତ ପ୍ରଥମ—
ଅସାର କାହାର ଲଭ,
ଜୀଇ ଉଠେ ପୁଣି କବ !

କ୍ଷଣେ, ସୁନ୍ଦର ଦର୍ଶନ ସବୁ,
ଅହା, ଚିର ଜୀବନର ପ୍ରଭୁ,
ମୋର ପ୍ରାଣ ମନ୍ଦିରେ ସ୍ଥିତ;
ଅଜି, କି ଅଲୋକେ ଅଲୋକିତ !
ଜୀବନର ଶେଷେ ଉଜ୍ଜ୍ୱଳ ତାର୍
ଶୁଣିଇଁ ତୁମର ଗୀତ !

ତୁମେ, ଉଷସୀ ମନ୍ଦେ ହସ,
ତୁମେ, ତାଳ ପୂର୍ଣ୍ଣିର ରସ,
ସେହୁ, ଅମର ରସେ ମୋ ଭ୍ରାନ୍ତ
କ୍ଷଣେ, ନିଭଇ ଶାନ୍ତ ! ଶାନ୍ତ !
ଅମର ସୃଷ୍ଟି ମଧ୍ୟେ ବିରାଜେ
ପୀରତ୍ତ ବିଜୟ ଗୀତ !
ମୋର, ଚିର ଜୀବନର ସାଥି ।

[୧୯୩୦]



## ଶେଷ ପୃଷ୍ଠା

ଜୀବନ ସୀମା ଶେଷେ ଅସୀନ ପାର
ବସିଛୁ ଯେ ମୃତ୍ଯୁଷ ନିତ୍ୟକାଳ,
ଜୀବନ ଚିରନ୍ତ ନାଟ୍ୟ ସାର
ବୁଣଇ ପୁଣି ହସି ସ୍ୱପ୍ନ-ଜାଲ ।
ତାହାର ନିର୍ଦ୍ଦେଶେ ମୁଁ ଗାଉଛୁ ଗୀତ
ତାହାର ପଦେ ମୁହିଁ ଡାଳଛୁ ଚିତ ।

ତାହାର ନିଦେଶେ ମୋ ଶେଷ ଅଶେଷ
ଜୀବନ ନଦୀ ମୋର ବହଇ,
ତାହାର ନିଦେଶେ ମୁଁ ମିଥ୍ୟା ଭୁଲେ ଲଢ଼ି
ଅଶେଷ ଯନ୍ତ୍ରଣା ସହଇ ।
ତାହାର ପ୍ରୀତି କାଳ-ଯୋଗେ ମୁଁ ଲେଖେଁ ନିତି
ଜୀବନ କାବ୍ୟର ପୃଷ୍ଠା,
ଶତ ହରଷ ବ୍ୟଥା ପୀରତି ମାଦକତା
ବନ୍ଦୀ ମୁଁ ସେ ମୋ ଗୀତ ସ୍ରଷ୍ଟା !
ଜୀବନ ପ୍ରିୟତମ !       ପ୍ରଣୟୀ ନିରମମ !
ଏ ଗୀତ ଶେଷ କେବେ କାହିଁବା ?
ନ ଦେଲୁ ଦରଶନ ପୀରତି ବରତନ ?
ନ ଦେଲୁ ତୋ ଅଲେଖ ନାହିଁ ବା ।
ନୟନ ଜଳ ବଳେ ବୋଲଏଁ କବି
ସୁଖ ଦୁଃଖର କେତେ ଲେଖେଁ ମୁଁ ଛବି ।
ସକଳ ଦ୍ରଷ୍ଟା ତୁ       ସକଳ ସ୍ରଷ୍ଟା ତୁ
ସକଳ କରୁ ତୁହି ବିଧାନ
ତୋହର ଇଙ୍ଗିତ       ଲଭି ମୁଁ ପୁଲକିତ
ଏ ଗୀତ ଭରେଁ ନିତି ଭିଆଣ ।
ସାରଲେ ଏ ମୋ ଗୀତ ସରଇ ନାହିଁ;
ମୋ ମୁଖେ ତୋର ଗୀତ ତୋହର ପାଇଁ !
ମୋ ମୁଖେ ତୁହି ଶୁଣି ତୋହର ଗାଥା
ଅରୁପ ତୋହ ରୁପ ବନ୍ଦନା,
ମୁଁ ତୋର ଶରଦାସ       ମୋ ଭୁଲେ ତୋର ଗ୍ରାସ,
ତୋ ଜୀବ ଲୀଳାର ମୁଁ ମୂର୍ଚ୍ଛନା ।

ଗାଇବ ଗାଇବ ମୁଁ ପ୍ରଣୟ ଦାସ ତୋର
କଙ୍କର ମୁଁ ତୋର ଚରଣେ;
ଚାହିଁବ ତୋ'ର ମୁଖ ଧାଇ ଭୁଲିବ ଦୁଃଖ
ଜୀବନେ ପୁଣି ମୋର ମରଣେ ।
[ ୧୯୫୦ ]



## ଚିର ନବୀନ

ଛାଡ଼ିଗଲେଣି ମୋର ସକଳ ପ୍ରିୟ
ପରାଣପୁର କରି ଶୂନ୍ୟ ।
ନବୀନ ପୁରାତନ ଅତୀତେ କ୍ରମଗତ
କାହିଁକି ହେବ ଅବା କ୍ଷୁଣ୍ଣ ?
ଯା ଲାଗି ଗାଉଥିଲି ସନ୍ଧ୍ୟାକାଶେ ଚାହିଁ
ମୁଗ୍ଧ ନୟନରେ, ସେ ଆଜ ପାଶେ ନାହିଁ,
ନ ଆସେ ଥରେ ଭୁଲି ନ ଗ୍ଲାହେଁ ଥରେ ଫେରି
ଏ ପଥେ ଗଲେ କେବେ ଉଦାସେ;
ବାଟଲେ ଚାହିଁ ଚାହିଁ ମୋ ରାତି ଯାଏ ପାହି
ମୋ ଗୀତ ମନେ ମରେ ହତାଶେ ।
ଜାଣିଛି ନାନାଭାବେ ନିଯୋଗିଛି ମୋ ପ୍ରାଣ
ଭରିଛ ଜୀବନର ସରିତା;
ଗାଇଛି ସୁଖେ ଦୁଃଖେ ପରଶ ଲଭି ବୁକେ
ବିରହ ମିଳନର କବିତା ।
ଜୀବନେ କେତେ ରୂପେ ଦେଇଛ ପରିଚୟ,
ଛନ୍ଦେ ଅନୁରାଗେ କରିଛ ମୋତେ ଜୟ,

ନେଇଛ ଅବଚିହ୍ନଲେ   ଦେଇଛ ଅକାତରେ
ରଚିଛ ସ୍ମୃତି ପୁଟରେ ସମାଧି,
ଉଷର ଭୂମେ ପୁଣି   ଫୁଟାଇଛ କମଳ
ଜୀବନ ସୂର୍ଯ୍ୟ ହେ ଅନାଦି !

ବାଦଲ ଭେଦ ତୁମେ ଅଲୋକ ପରକାଶ !
ମରଣ ଅଧରେ ମୋ ଫୁଟି ଉଠିଛ ହାସ,
ଏମନ ପ୍ରିୟ ଥାଉଁ   କି ଦିକା ମୋର ଅଜ ?
ଗାଉଛୁ ଗାଇବା ମୁଁ ତା ଲାଗି,
ସକଳ ବନ୍ଧନେ   ମୋହ ଭରମ ପ୍ରେମେ
ସକଳ ଜ୍ଞାନେ ରହେ ସେ ଜାଗି ।
ତାହାର ଇଚ୍ଛାରେ   ଗଗନେ ଗ୍ରହ ତାରା
ସଜୀବ ଅଜୀବ ଯେ ଭରମେ,
ଅଲୋକେ ଫୁଲ ଫୁଟେ   ମୋହ ତମିର ତୁଟେ,
ପ୍ରଣୟ ପଥେ ଗୁହେଁ ସରମେ ।

ତା ଦେହେ ମିଶିଯାଏ  ସକଳ ପୁରାତନ,
ନବୀନ ଭାବେ ପୁଣି ଦିଏ ସେ ଦରଶନ,
ସକଳ ସୀମା ପାରେ   ଯୋଜନା କରେ ପଦ
ସବୁର ନିୟାମକ କବି ସେ,
ମୋ କ୍ଷୀଣ ଭାଷାରେ ତା   କାବ୍ୟ ପରକାଶ
ଜ୍ଞାନ ଭାବର ଅନୁଭବୀ ସେ ।
ପୁରାଣ ପ୍ରଣୟ ସେ   ନ ଗୁହେଁ ଥରେ
ନ ଗୁହୁଁ, ନାହିଁ ମୋର ଶୋଚନା,
ନବୀନ ଅତିଥି ମୋ   ମନ୍ଦହାସେ କହେ
"କାନନ ଫୁଲେ ହାର ରଚ ନା !"

ମୋ ଜୀବନ ଯମୁନା ପୁଳିନେ ରହି ରହି,
ବଜାଏ ବଇଁଶୀ ସେ ପରାଣ ଦଏ ଦହି,
ଜୋଛନା-ପାରାବାରେ କୂଳଣ ପ୍ରାଣଗଳେ
ଜୀବନ କୁଞ୍ଜେ ମୋ ରାଜ ସେ;
ତା ଲାଗି ସିନା ନିତ ଏ ବାତାୟନ ପାଶେ
ଜାଗର ଜାଲେ ବସି ହତାଶେ ।
ତା ପଦେ ଅରପେ ମୋ ସଫଳ ଗୀତ,
ନ ବକୁ ଅନ ହାଟେ ନାହିଁ ମୋ ପ୍ରୀତ !
ଯେ ମାଳା ରଚନ୍ତି ମୁଁ ଅଳସେ ବସି ବସି
ଶୁଖି ସେ କାନନେ ମୋ ଶୋଚନା ନାହିଁ
ମୋ ହୃଦ ପ୍ରେମ ନଈ ମରୁରେ ହେଉ ଦାହି
ସକଳ ଲୀଳା ଏ ମୋ ତାହାର ପାଇଁ ।



## ବୁଦ୍ଧ ବନ୍ଦନା

ପାପ ତାପ କଳୁଷ ପ୍ରାଣେ ବରବାକୁ ତବ ଦୀକ୍ଷା,
ଶ୍ରାନ୍ତ କ୍ଷୁବ୍ଧ ଭିକ୍ଷୁ ଅସିଛୁ ଦିଅ ହେ ମୁକ୍ତିଭିକ୍ଷା !
ମୁକ୍ତିକର ହେ ମୁକ୍ତ ମୋ ମନ ମନ୍ଦିର ଅବରୁଦ୍ଧ,
ବୁଦ୍ଧ ହେ ବୁଦ୍ଧ ହେ ଅବିନଶ୍ୱର ଶୁଦ୍ଧ ।। ୧ ।
ସ୍ପର୍ଶ ସେ ତବ ଶତ ଅମୃତ ନିର୍ଜୀବ ପ୍ରାଣେ ବର୍ଷ,
ଢମିବବୃତ ଶତ ମନ୍ଦିରେ ତାଳ ହେ ଅଲୋକ ହର୍ଷ;
ଜୀବନ ଅରବିନ୍ଦ ହେ ମମ ମୁଦ୍ରିତ ପାପ କ୍ଷୁବ୍ଧ,
ବୁଦ୍ଧ ହେ ବୁଦ୍ଧ ହେ କର ହେ ମୁକ୍ତ ଶୁଦ୍ଧ ! ୨ ।

ଅନ୍ତରେ ମୋର ଅଶ୍ରୁ ବହୁଛି ସକଳ ଜୀବନ ବ୍ୟାପି,
ତୁମରି ପଯୃର ବନ୍ଦନାଲାଗି ବୁଦ୍ଧ ହେ ଚିର ପାପୀ;
ତବ ସୁନ୍ଦର ଚରଣ କମଳେ ମୋ ଚିତ-ଭୃଙ୍ଗ ଲୁବ୍‌ଧ,
ବିଶ୍ୱାସ ଦିଅ ଦିଅ ହେ ଭରସା ଚିର ଅମୃତ ଶୁଦ୍ଧ ! । ୩ ।
ଜୀବନର ଶତ ସଂଗ୍ରାମେ ପ୍ରଭୁ ଦେଇଛି ଛନ୍ଦଭଙ୍ଗ,
ଦେଖିଛି ଶ୍ରାନ୍ତ ନର୍କର ଲୀଳା ବାସନା-ମୋହ-ରଙ୍ଗ,
ଧର୍ମ ଶରଣ ସଂଘ ଶରଣ ଶରଣ ହେ ମୋର ବୁଦ୍ଧ !
ଆଶ୍ରୟ ଦ୍ୱାରେ ସ୍ଥାନ ଦିଅ ହେ ଅବିନଶ୍ୱର ଶୁଦ୍ଧ ! । ୪ ।
ନିର୍ଯାତିତ ମୋ ନୟନ ସଲିଳେ ଅଦେଶ ଧୋଇବି ପୀଦ,
ଭୁଲିବି ଚରଣ-ଆଶ୍ରୟ ଲଭି ଅଜ୍ଞାନ ପରମାଦ;
ଭୁଲିବି ଦୈନ୍ୟ ଆଧି ବ୍ୟାଧି ଅନ୍ତର ସମୃଦ୍ଧ,
ଚରଣ ପଦ୍ମେ ସ୍ଥାନ ଦିଅ ହେ ଅବିନଶ୍ୱର ଶୁଦ୍ଧ ! । ୫ ।
କରୁଣା ସ୍ୱର୍ଗ ଗଙ୍ଗା ପ୍ଲାବନେ ମୁକ୍ତ କଲ ହେ ପାପ,
ଖଣ୍ଡିଲ ମୋହ କଳୁଷ ଦୁଃଖ ବିଶ୍ୱର ଅଭିଶାପ;
ଆଶ୍ରୟ ଦେଲ ଅମୃତ ଦେଲ ହେ ଶିବ ସତ୍ୟ ମୁଗ୍‌ଧ !
ଆସିଛି ଚରଣ ଲୁବ୍‌ଧ ଭିକ୍ଷୁ ଆଶ୍ରୟ ଦିଅ ଶୁଦ୍ଧ ! । ୬ ।
ଲୁପ୍ତ ହେଉ ହେ ସନ୍ଦେହ ଅମା ଉଜ୍ଜ୍ୱଳ କର ସ୍ପର୍ଶେ,
ସୁନ୍ଦର ପୂତ ଶୁଦ୍ଧ କର ହେ ଧରମ-ପୁଣ୍ୟା-ଦର୍ଶେ;
ଦିଅ ହେ ଭିକ୍ଷୁ ଗୈରିକ ବାସ ସଂଘ ପୁଣ୍ୟାୟୁଧ,
ବୁଦ୍ଧ ହେ ବୁଦ୍ଧ ହେ ଅବିନଶ୍ୱର ଶୁଦ୍ଧ ! । ୭ ।



## ଯାତ୍ରା ସଙ୍ଗୀତ

ଜୀବନପାତ୍ର ମୋ ଭରିଛ କେତେ ମତେ
ନ ଦେଲ କିଛି ବୋଲି କହିବି କି ହେ ଆଜ ?
ଜୀବନ ପ୍ରିୟତମ ହୋଇଛ ମୋ ଚରମ
ତରଣୀ ମୋର ତବ ସାଗରେ ବହିଯାଉ ।
କୂଳର ଜନପ୍ରାଣୀ କେତେ ମିଳାଅ ଆଣି
ନୟନ ପଲକରେ ଲୁଚିଅ ଜାଣି ଜାଣି,
ବୃଥା ମୁଁ ଅଭିମାନୀ ହୃଦେ ଧରିଲି ଠାଣି
ମରତ ପ୍ରବାସୀ ମୁଁ ନ ଜାଣି ଅଣେ ଦାଉ ।୧।
ମାନସ ହଂସ ମୁଁ ମାନସେ ଯିବି ଉଡ଼ି
ମୋ ଦୋଷେ ପଥ ଭୁଲି ଭରମେ ଅବିରତ,
ଅଳପ ତୃଷା କ୍ଷୁଧା ଲଭି ତୁମର ସୁଧା
ତୃପତ ହେଲି, ତେବେ ଲୋଡ଼ଇଁ ଏ ମରତ ।
ନିଜ ବାସନା ଜାଲେ ବିକଳ ବନ୍ଧୃତ,
ତିମିର ଅଙ୍କନେ ମିଳେ କି ଅମୃତ ?
ଛାଡ଼ିବି ଦୂରେ ଯିବି ପାରିବାରେ ଭାସିବି
ଲଙ୍ଘି ହିମଗିରି ଯିବି ଗୋ ବେଳ ଥାଉଁ । ୨ ।
ଦେଇଛ ପ୍ରିୟା ପ୍ରାଣେ ଅମର ପ୍ରୀତି ଭର
ମୋ ଶିଶୁ କନ୍ଦନେ ଅମର ମୋର ଆଶା,
ପ୍ରଭାତ ସନ୍ଧ୍ୟାରେ ଖୋଲାଇ ରୂପ ତେଜ
ବିକଳ କଣ୍ଠେ ମୋ ଫୁଟାଇଛ ତ ଭାଷା;
ଗାଇବି ବନ୍ଦୀ ମୁଁ ଚରଣ ବନ୍ଦନା,
ସେଥିଲାଗି ଏ ବୀଣାରେ ଦେଇଛ ମୂର୍ଚ୍ଛନା,

ସେ ସୁଖ କର ହେଲା ଲଗାଇଲି ମୁଁ ଖେଳା
ମିଳନ ମଧୁରାତ ପାହିଲା ଗ୍ରହୁଁ ଗ୍ରହୁଁ ।
ମିଥ୍ୟା ଆପଣୀରେ ବଣିଜ ମରଣ ଯେ
ନ ଚେତ ଛଳେ ଯାହା କଲି ମୋ ମଣି ଭୁଉ ! ୩ ।
ପଢ଼ିଷ ତରୁ ମୁଁ ଗୋ ପଳତ ମୋ ପତର
ନାସିଣା ପରଶରେ ଝରନ୍ତି ଅକାଳରେ,
ନାହିଁତ ତେବେ ଛଳେ ଶୋଚନା ଖେଦ ମୋର
ହୃଦୟମଣି ମୋର ସାଗର ଅତଳରେ;
ପରାଣି କୁଞ୍ଜେ ଗୋ ତାର ମୁରଲୀ ଧ୍ୱନି !
ପରାଣି-ପବନେ ଗୋ ତା ଶୁଭ ଆଗମନୀ,
ଜୀବନେ ଦେବା ନେବା ଭିଆଣ ସବୁ ତାର
ସେ ମହାଦାନୀ ହସେ ପରାଣେ ଦେଖିନାହୁଁ ?
ତା ପରଶେ ପଢ଼ିଷ ଜୀର୍ଣ୍ଣ ଜୀବତରୁ
ପଲ୍ଲବିତ ଅହା ଶୋଚନା କିବା ଆଉ ? ୪ ।
ଗ୍ଭଲରେ ଗ୍ଭଲ ମନ ନିତ୍ୟ ମଧୁବନ
ଦେଖିବୁ ପ୍ରିୟବାସ, ଅଦୂରେ ଗୋଲକରେ;
ଅଦୂର ପଥେ ଆଜ ମିଳନ ତାର ସାଥେ
ବିଜୟ ରଥେ ତୋର ଜୀବନ ଅଲୋକରେ !
ଯାତ୍ରୀପଥ ତୋର ପଲକେ ହେବ ଶେଷ,
ଶେଷରେ ସନ୍ଦେହ ସକଳ ତୋର କ୍ଲେଶ,
ଧନ୍ୟ ହେବୁ ଆଜ ପୁଣ୍ୟ ଦରଶନେ,
ଛନ୍ତି ସବୁ ପାପ ଦୁଷ୍କୃତର ରାହୁ !
ଜୀବନ ଦେବତା ମୋ ଜୀବନ ପଥେ ବଢ଼େ,
• ତରଣୀ ମୋର ତାର ସାଥରେ ବହିଯାଉ !। ୫ ।

[ ୧୯୩୧ ]



# ବର୍ଷା ବରଣ

ଗୁରୁ ଗରଜନ କରି ଆସ !
ଘନ ଆସ !
ନିଅ ନିଅ ବିଶ୍ୱର ପ୍ରାସ,
ଘନ ଆସ !

ଉଷ୍ଣରୁ ଉଷ୍ଣଶ୍ୱା ଉଡ଼ାଇ,
ବିଦ୍ୟୁତ କୌତୁକ ଲଗାଇ,
ସ୍ୱସ୍ତି ପୁଲକ ସୁଖ ଜଗାଇ,
ନିର୍ଜୀବ ମୃତ ଦୁଃଖ ନାଶ ।
ଘନ ଆସ । ୧ ।

ତପ୍ତ ବିକଳ ଏଇ ଧରଣୀ,
ଶୂନ୍ୟ ବିଜନ ଦୂର ଶରଣି,
ଶ୍ରୀହୀନ ବିବସ କେ ରମଣୀ,
ଆଗମନ ପଥେ ମେଲି ବାସ;
ଡାକେ ଆସ !
ଘନ ଆସ ! ୨।

ଆସ ଆସ ନକର ନିରାଶ
ଚୌଦିଗ ଅବର ଅକାଶ,
ଅମୃତ ଜୀବନ ପ୍ରକାଶ,
ଅମୃତ ଜୀବନର ଉତ୍ସ !
ଘନ ଆସ !। ୩ ।

ଅତୁଳ ଉଚିମା ତାକେ ସୃଷ୍ଟ,
ତାକେ ଗିର କାନ୍ତାର ରୁଷ,
ହର ଘନ ଧରଣୀର ଦୁଃଖ,
ତାକେ ତରୁ ପଲ୍ଲବ ଘାସ,
ଘନ ଅସ ! ।୪।

ତାକେ ଅକ ନିର୍ଜୀବ କବ ହେ,
ନିର୍ଜୀବ ଦୁଃଖ ଅନୁଭବୀ ହେ,
ଚର ନଟ ନୃତ୍ୟର ଛବି ହେ,
କାହିଁ ନବ ନିତ୍ୟ ସେ ରସ,
ଘନ ଅସ !୫ ।

ଘନ ଜଳସ୍ୱି ଶୀତ ପବନେ,
ଅସ ମେଲ କ୍ଷିପ୍ର ସେ ଚରଣେ,
କାନ୍ତ ସ୍ନିଗ୍ଧ ଶ୍ୟାମ ବରଣେ;
ଦୁଃଖର ନାହିଁ ଅବକାଶ,
ଘନ ଅସ !୬ ।

[୧୯୩୧]



# ନିଶୀଥ-ଯାତ୍ରୀ—

ସେ ଯେ, ଡାକଗଲ କବା ଗୀତେ !
ଅହା ନିଶବଦ ସେ ନିଶୀଥେ !
ଅନ୍ଧାର ବାଟ ଅସୁଥିଲ ପାହ,
ଚମକ ଉଠିଲ ସେ ପରଶ ପାଇ,

କବା, ବ୍ୟଥା ରହିଗଲା ଶତେ !
ଅହା ନଣବଦ ସେ ନଶୀଥେ ।

ସେ ଯେ କାହା ସନ୍ଧାନେ କ ବେଦନା ଭର
ଗ୍ଲଲିଥିଲା ଗାଇ ଗାଇ
ଶୁଣିଛ କ ତାର ସଙ୍ଗୀତ ?
ଗମ୍ଭୀର ତାର ମୁକ୍ତର ଗୀତ
କଅଁ କଲା ମୋତେ ବାଇ
ମୁଁ ତା, ହୃଦୟ ରକ୍ତେ ରଞ୍ଜିତ ।

ମିଶିଛି ରୁଦ୍ଧ ତାର କନ୍ଦନ
ଶୂନ୍ୟ ନଶୀଥ-ହୃଦ-ନନ୍ଦନ
ଶୂନ୍ୟ ମୋ ମନ ଗ୍ଲହେଁ ପଥ ଅଚକତେ ।
ଅହା ନଣବଦ ସେ ନଶୀଥେ !

ଶୁଣିଛି ମୁଁ ତାର ମୁକ୍ତକଣ୍ଠେ
ସଫଳତାର ଆନନ୍ଦ
ସେ ଯେ ଉପେକ୍ଷି ଗ୍ଲଲିଛି ମୁକ୍ତ ପଥିକ
ଜୀବନର ବାଧା ବନ୍ଧ !

ପୁଚ୍ଛିଲି ମୁଁ ତାକୁ "ତୁମ ଭୁଲେ ନେବ ନାହିଁ ?"
ସେ ଯେ, ଉଦାସ ହତାଶେ କଲା କେତେ "ନାହିଁ ନାହିଁ !"
ମୁଁ ଗୋ ତାହାଲାଗି କପାଁ ବାଇ ?
ମୁଁ ଗୋ ଅଶ୍ରୁ ଦେଉଛି ବାହି !

ସକଳ ଅପଣା କଲା ସେ ତ ପର,
ଶୂନ୍ୟ କଲା ଏ ସ୍ୱପ୍ନର ଘର,
ଶୂନ୍ୟ ରଜନୀ କେସନେ ବା କହ ବତେ ?
ସେ ଯେ ଡାକଗଲା କବା ଗୀତେ ।



## ସନ୍ଧ୍ୟା-ଆରତି

ବନ୍ଧୁ ନିଅ ଆଜ ତର;
ଅଶ୍ରୁ ଉଠିଛୁ ଭର;
ସନ୍ଧ୍ୟାର ଦେଶେ ଯିବାକୁ ମୋ ମନ
(ଶର) ଧ୍ୟାନ ସନ୍ୟାସୀ ପର ।

ରଙ୍ଗମା ଲଜ୍ଜା ଉଷସ୍ର ଟାଣି,
ପ୍ରିୟ୍ାର ସ୍ତୁହାଣି ଖରେ ଯାଏ ହାଣି,
ଲଗାଇଲ କିଏ ସ୍ୱପ୍ନର ମାୟ୍ା,
ଧୈର୍ଯ୍ୟ ନ ପାରେ ଧର !
ସନ୍ଧ୍ୟାର ଦେଶେ ବନ୍ଧୁନିଅ ମୋର ତର !

ମୁଖର ବିଶ୍ୱ ହେ ମୁଖର କବି
ନତ କର ତୋର ମଥା,
ମୌନେ ନୀରବେ ଶୁଣ କବା କହେ
ବ୍ୟଥିତ ଏ ନୀରବତା !

ଜୀର୍ଣ୍ଣ ମଳିନ ଆଜ ମୋର ବାସ,
ସବୁ କଳଙ୍କ କୁଟିଳତା ହାସ
ଖସିପଡ଼ୁ ମୃଗେ। ମୁକ୍ତ ହୃଦୟ୍େ
ସନ୍ଧ୍ୟାଟି ନେବ ବର !
ସ୍ତମ୍ଭୀତ ନୀଳ ଶାନ୍ତ ତଟିନୀ ପର ।



## *ଅମ୍ବପାଳୀର ଉତ୍କଣ୍ଠା—

ଆଜି ମୋର ପୁରେ ଆସିବେ ସଜନୀ;
ଜଗତ ଆଲୋକ ଗୋ !
ବାମ ବାହୁ ଆଖି ଥରେ ଘନ ଘନ
ଅଙ୍ଗ ପୁଲକ ଗୋ !
କି ଦେଇ ପାରିବି  ଦେବତା ପଦ୍ମରେ
କହିବୁ କି ସହି ରେ ?
ଆସିବେ ବୁଦ୍ଧ  ଫୁଟାଇ ପଦ୍ମ
ରୁକ୍ଷ ଏ ମହୀରେ । ୧ ।

ହସି ହସି ଆସେ ଅରୁଣ ଏ ଉଷା
ହସିବ ମୋ ପୁର ଗୋ,
ସକଳ ଜୀବନ ଧନ୍ୟ ସକଳ
ପୁଣ୍ୟ ମୋ ପୁର ଗୋ ।
ଉଇଁବେ ଲକ୍ଷ ସୂର୍ଯ୍ୟ ଚନ୍ଦ୍ର
ଉଜ୍ଜ୍ୱଳ ମହୀରେ,
ଆସିବେ ବୁଦ୍ଧ  ଫୁଟିବ ପଦ୍ମ
ମୋ କୁଟୀରେ ସହିରେ ! ୨ । .

କି ଦେବି ସଜନ  କହନା ତୁ ବାରେ ?
ନଶ୍ୱର ଦେହ ଗୋ !
ନଶ୍ୱର ମୋର  ରକ୍ତ ଅଧର;
ସ୍ୱର୍ଣ୍ଣ ସେନେହ ଗୋ;

* ବୈଶାଳୀର ରାଜନଟୀ । ବୌଦ୍ଧ ଯୁଗର ସନ୍ନ୍ୟାସିନୀ ।

ଯନ୍ତ୍ର ଏ ମୋର  ଚଳ ଭୂତ ତଳେ
ମୃତ୍ୟୁ ହସଇ ରେ,
ଆସିବେ ବୁଦ୍ଧ  ଆସିବେ ଭିକ୍ଷୁ
କ ଦେବ ମୁଁ ସହରେ ? ୩ ।

ଯୌବନ ମୋର  ଚଣ୍ଡ ବାକାରେ
ସଜନ ହୋଇଛି ଭ୍ରଷ୍ଟ,
ଦେବତା ଆସନ  ଶୂନ୍ୟ ହୃଦୟେ
ମୋ ପୂଜା କୁସୁମ ନଷ୍ଟ ।
ପୋଡ଼ିବ ପଞ୍ଜର  ମୋ ଶକ୍ତିର ଦାମେ ?
ଜଗବହସଇ ରେ !
ଅସିବେ ବୁଦ୍ଧ  ଅସିବେ ଭିକ୍ଷୁ
କ ଦେବ ମୁଁ ସହରେ ! ୪ ।

ଭିକ୍ଷୁକ ସେ ତ  ଚିର ଭିକ୍ଷୁକ
କ ଦେବ ଭିକ୍ଷା ଗୋ ?
ନିଃସ୍ୱ ଜୀବନେ  ସେ ମୋ ପ୍ରିୟ ଲାଗି
ଚିର ପ୍ରତୀକ୍ଷା ଗୋ !
ମନେ ଭାବେଁ ମୋର  ସବୁ ସମ୍ପଦ
ପଦେ ଅରପଇଁ ରେ
ଅସିବେ ବୁଦ୍ଧ  ଜଗତ ବନ୍ଦ୍ୟ
କ ଦେବ ମୁଁ ସହ ରେ । ୫ ।

ଶୁଣି ନା ସଜନ  ଡାକଇ କୋକିଳ
ମଳୟ କୁଞ୍ଜରେ,
କେଉଁ ପ୍ରିୟଜନ  ବାର୍ତ୍ତା ବହ ଗୋ
ଭ୍ରମର ଗୁଞ୍ଜରେ !

ଜଗତ ବନ୍ଦ୍ୟ    ଅଗମନୀ ଗାଇ
ମଳୟ ବହଇଁ ରେ,
ଅସିବେ ବୁଦ୍ଧ   ଜୀବନ ଅଲୋଭ !
କି ଦେବି ମୁଁ ସନ୍ଧ୍ୟରେ । ୨ ।

ସେ ଚିର ମୁକ୍ତ    ଚିର ପ୍ରଶାନ୍ତ
ଦେବେ କି ଭିକ୍ଷୁ ଦୀକ୍ଷା ?
ଭିକ୍ଷୁର ଥାଳ    ଶିରେ ବହି ନତ
ବିଶ୍ୱେ ମାଗିବି ଭିକ୍ଷା ।
ଶୂନ୍ୟ ଜୀବନ    ଅରପିବି ପଦେ
ନେବେ କି ନା ସନ୍ଧ୍ୟରେ ?
ଅସିବେ ଜୀବନ    ଚିର ପ୍ରିୟ ମମ
ଭିକ୍ଷୁ ଏ ମନ୍ଦିରେ । ୨ ।



## ଭାରତ ଭିକ୍ଷୁ

୧

ଦେଖିଛୁ ଦେବତା ତାର ଦୀନ ଭିକ୍ଷୁ ରୂପ,
ପୃଷ୍ଠେ ବହି ସୃଷ୍ଟି ବ୍ୟଥା ଅତ୍ୟାଚାର ସ୍ତୂପ
ଦ୍ୱାରେ ଦ୍ୱାରେ ବୁଲି କରେ ଅଶ୍ରୁ ଦୁଃଖ ଭିକ୍ଷା
ତୁମେ ତ ଦେଇଛ ତାକୁ ଚିର ଭିକ୍ଷୁ ଦୀକ୍ଷା ।
ଭିକ୍ଷୁ ଚିର ଭିକ୍ଷୁ ସେ ଯେ ନିର୍ଯାତନା ଭାର,
କାହିଁ କଷାଘାତ ପଦାଘାତ ପୁରସ୍କାର;
କେବେ ଅପମାନ ଘୃଣା ପଶୁ ବ୍ୟବହାର,
ସବୁ ଭୁଲି ଭିକ୍ଷୁକର ଭିକ୍ଷା ଖାଲି ସାର !

ଦେଖିଛି ସେ ଶୀର୍ଣ୍ଣ ଅଙ୍ଗୁ ଝରଇ ଶୋଣିତ,
ମାତର ଦୁର୍ଦମ ନିରଭୟ ତାର ଚିତ୍ତ।
ସକଳ ମାନବ ପଥ ଏଡ଼ି ଅଲକ୍ଷିତେ
ଚାଲିଛି ଉଦାର ଶାନ୍ତ ତବ ଜୟଗୀତେ।
ଭାବିଲେ ମନେ ତା ପଦେ ମୋ ଅଶ୍ରୁ ଦିଏ ଢାଳି
ଏ ସଂସାର ପଥେ ତବ ଭିକ୍ଷୁ ଯାଏ ଚାଲି।

— ୨ —

ପ୍ରଶାନ୍ତ ମୂରତି ଧୀର ତାର ପଦକ୍ଷେପ,
ନାହିଁ ତଳେ ମନେ ଶଙ୍କା ସନ୍ଦେହ ଆକ୍ଷେପ;
ଭୁବନ ଅନ୍ଧାରେ ବୁଲେ ଭିକ୍ଷା ତାର ଦୁଃଖୀ.
ଦେଖିଛି ପ୍ରଶାନ୍ତ ତାର ସମୁଜ୍ଜ୍ୱଳ ମୁଖ !
ଦେଖିଲେ ଦୁଃଖୀର ଦୁଃଖ ଯାଏ ଅପସରି
ଆଶାର ଆଲୋକ ଖେଳେ; ଶଙ୍କିତ ଶର୍ବରୀ !
ଦେଖିଛି ସେ ତବାଲୋକେ ଅନ୍ଧକାର ପାରେ,
ଜୀବନ ପ୍ରତିଷ୍ଠା ତାର ମୃତ୍ୟୁ ହାହାକାରେ !
ମରୁଭୂମେ ଫୁଟାଏ ସେ ଜୀବନର ଫୁଲ,
ନିର୍ଯାତିତ ଦୁଃଖୀ ବନ୍ଧୁ ହେବାକୁ ଆକୁଳ;
ଶୋଭଇ ତା ଅଙ୍ଗେ ଥାଳ ବସ୍ତ୍ର ଗଇରିକ
ବୈରିକ ପତାକା ! ତବ ଦୁର୍ଦମ ସୈନିକ—
ମନ୍ଦେ ହସି କରେ ମୌନ ଅଲୋକ ପ୍ରତୀକ୍ଷା,
ଦେଖିଛି ଦେବତା ତବ ଭିକ୍ଷୁ କରେ ଭିକ୍ଷା।

—୩—

ସନ୍ଧ୍ୟା ଅନ୍ଧକାରେ ତବ ଜୟ ଗୀତ ଗାଇ,
ବିଜୟ ବାହିନୀ ନିଏ ଅଲକ୍ଷେ ଚଳାଇ,
ଯାଏ ଏହି ପଥେ ମୌନ ସକଳ ପଶ୍ଚାତେ
ନିଃସଙ୍ଗ ବିହଙ୍ଗ ଅପେ ଘନାବୃତ ରାତେ,
ଚାଲିଯାଏ ଧୀର ପଦେ ଓଷ୍ଠେ ସ୍ମିତ ହାସ,
ବିଶ୍ୱ ବ୍ରହ୍ମାଣ୍ଡର ଯେତେହେଁ ବେଦନା ପ୍ରକାଶ !
ଯେ ହାସେ ପ୍ରସ୍ତର ଶିଳା କରେ ନିବେଦନ
କାଳର ନିଷ୍ଠୁର ଲୀଳା ! ହସଇ ଯେସନ—
ରଣ ଶେଷେ ରଣଭୂମି ! ତୀବ୍ର ଅନ୍ଧକାରେ—
ପଦ୍ମଫୁଲ କ୍ଷୀଣି ହସେ ! ବିଜନ କାସାରେ ।
ସେହି ହାସ ତାର ଦେଖି ଝରଇ ମୋ ଲୁହ;
ସେହି ହାସ ତଳେ କେତେ ଶୋଣିତର ସୁଅ !
ଗାଇ ତା ବିଜୟ ଗୀତ କବି ଅଶ୍ରୁହରା,
ଧରାର ଶୃଙ୍ଖଳ ହାସେ ଖସିପଡ଼େ ପରା !

—୪—

ଧରଣୀ ରାକ୍ଷସ ତୃଷା ନିବାରଣ ଲାଗି
ସମବେତ ଭିକ୍ଷୁ ସଂଘ ଧ୍ୟାନ ସର୍ବତ୍ୟାଗୀ !
ଯେ ଭିକ୍ଷୁ ଶୋଣିତେ କର ଧୌତ ଶିର ଶାନ୍ତ
ଧରଣୀର ପାପ, ତହିଁ ସେ ଯେ ଜଣେ ପାନ୍ଥ ।
ଗୃହତ୍ୟାଗୀ ଦେଶତ୍ୟାଗୀ ଚାଲେ ସଂଘ ସାଥେ,
ଗୈରିକ ପତାକା ତବ ମୌନେ ବହି ହାତେ,

ଘୁଲଛୁ ନଭୀକ ଧୀରେ ନିର୍ଯାତିତ ଦ୍ୱାରେ
ଅବା ଯହିଁ ନିପୀଡ଼ିତ ମରେ ହାହାକାରେ
ଧରଣୀ ନ ଦିଏ ଯାକୁ ତିଳେ ହେଲେ ସ୍ପୃହା
ଧନେ ହେଲେ ଦୁଃଖେ ଯାଭ ନ କରେ କେ ଅହା,
ସଭ୍ୟତା କଟାକ୍ଷେ ଯାକୁ କରେ ଉପହାସ,
ଚିର ଅନାହାର କ୍ଳିଷ୍ଟ, ନ ଫୁଟେ ଯା ହାସ,
ଲକ୍ଷ କୋଟି ଅଭିଶପ୍ତ ଦଗ୍‌ଧ-ପ୍ରାଣ-ଲାଗି
ଦ୍ୱାରେ ଦ୍ୱାରେ ତବ ଭିକ୍ଷୁ ଭିକ୍ଷା ଯାଏ ମାଗି ।



## ରୁଦ୍ରଙ୍କେ

ରୁଦ୍ର ! ଦେଖିଛୁ ତବ ଭୟଙ୍କର ରୂପ,
ସ୍କନ୍ଧେ ତାହାର ବିଶ୍ୱ ବେଦନା ସ୍ତୂପ ।
ତା ବେଦନା ନୟନ ନୀର ଝର ଝର,
କମ୍ପିତ ମ୍ଳାନ ବ୍ୟଥିତ ଅଧର,
ବଜ୍ର ସମାନ ଶୁଣିଛୁ ସେ ତବ ବାଣୀ
ପ୍ରଳୟର ପଥେ ନେଇଛ ହେ ତାକୁ ଟାଣି ।୧।

ନେଇଛ ହେ ତାକୁ ମୃତ୍ୟୁ କରାଳ ଦେଶେ,
ମିଥ୍ୟା ସଜାଇ ଯହିଁ ବଜାଯିର ବେଶେ !
ସେ ଦେଶେ ଶୁଷ୍କ ପରାଣ କମଳ,
ମନ୍ଥ ମାନବ ଭକ୍ଷେ ଗରଳ,
ସେ ଦେଶେ ଗାଇବ ଦେବତା ସେ ତବ ବାଣୀ
ଭୟଙ୍କର ବେଶେ ନେଇଛ ତ ତାକୁ ଟାଣି ।୨।

ବହଇ ଯେ ଦେଶେ ଶୋଣିତ ସରିତ ଧାର,
ଶଙ୍କିତ ଧରା ବହି ନରପାପ ଭାର;
ସାମ୍ୟ ମୈତ୍ରୀ ଯହିଁ ପରାହତ,
ବିଜୟ ବାହିନୀ ତବ ଅବନତ,
ସେ ଦେଶେ ଦେବତା ଗାଇବାକୁ ତବ ବାଣୀ
ମୃତ୍ୟୁର ପଥେ ନେଇଛ ତ ତାକୁ ଟାଣି ।୩।

ନେଇଛୁ ସେ ବର ଅନଲେ ଗୁଳିବା ଦୀକ୍ଷା
ବିଶ୍ୱ ଦୁଆରେ କରେ ସେ ପୀରତି ଭିକ୍ଷା ।
ତା ବାଣୀ ପରଶେ ସ୍ତବଧ ପରାଣ,
ଢାଳଇ ଅଶ୍ରୁ ମୌନ ପାଷାଣ,
ବଳି ନେଇଛୁ ଯେସ ପରମାଦ ଜାଣି ଜାଣି
ଶୁଣି ହେ ରୁଦ୍ର ତୁମର ବଜ୍ର ବାଣୀ ।୪।

ତୁମରି ମନ୍ତ୍ର ଶୁଣି ସେ ସକଳ ତ୍ୟାଗୀ,
ଦୀନ ଦରିଦ୍ର ବ୍ୟଥାର ସେ ଅନୁରାଗୀ;
ଆପଣା ଅଶ୍ରୁ ରକ୍ତ ଢାଳି,
ତୁମ ମଙ୍ଗଳ ସୃଷ୍ଟିର ଲାଗି,
ଗୁଳିଛୁ ଉଦାସ ନାହିଁ ତା ଦୁଃଖ ଗ୍ଳାନି;
ମରଣକୁ ହସେ ଶୁଣି ସେ ରୁଦ୍ର ବାଣୀ ।୫।

ତାର ଅପମାନେ ହସି ଉଠ ତୁମେ ରୁଦ୍ର !
ଦୀପ୍ତ ତା ମୁଖ ! କି ବୁଝିବ ମୁଁ ଗୋ କ୍ଷୁଦ୍ର ?
ତା କୋମଳ ତାଙ୍କେ କମ୍ପେ ପରାଣ,
ପୌରୁଷ ମୋର ଲଭେ ଅପମାନ,
ମୌନ ଗୁଳେ ସେ କାଳ ଅନ୍ଧାର ହାଣି
ଶୁଣିଛୁ ରୁଦ୍ର ତୁମ ଆଲୋକର ବାଣୀ ।୬।

ଯେ ଦିନ ଦେଲ ହେ ତା ଗଳେ ପୁଷ୍ପମାଳା,
ହସିଲ ମୃତ୍ୟୁ ସପ୍ତ ସିନ୍ଧୁ ସାର;
ଶାନ୍ତ ହସିଲ ବେଦନାର ହାସ,
ପଶ୍ଚାତେ ଭୋଗ ସକଳ ବିଳାସ,
ଢାଳିଲ ଅଶ୍ରୁ ପରାଣ ପ୍ରେୟସୀ ରାଣୀ,
ତୁଚ୍ଛ କରି ସେ ଗାଇଲ ରୁଦ୍ର ବାଣୀ ।୭।

"ମା ଭୈଃ, ମା ଭୈଃ" ବାଜିଲ ରୁଦ୍ର ଶଙ୍ଖ !
ପୁଲକ ଉଠିଲ ତବ ଭକ୍ତର ଅଙ୍ଗ;
ତୁମରି ବିଜୟ ପତାକା ବାନ୍ଧି ସେ,
କଠୋର କରିଛି ପରାଣ କୁଳିଶେ,
ଗିଳିବ ଗରଳ ପ୍ରାଣ ଅମୃତ ଛାଣି,
ଘୁଲେ ନିର୍ଭୟେ ଶୁଣି ହେ ରୁଦ୍ର ବାଣୀ ।୮।

ମାନବ ମଶାଣେ କ୍ରନ୍ଦନ ଉଠେ ଯନ୍ତ୍ର,
ଧ୍ୱଂସର ଲୀଳା ! ହାହାକାର କରେ ମନ୍ଦ୍ର ,
ବୈଶାଖେ ବୋଲି ଅଣିବ ବରଷା,
ମୃତ୍ୟୁରେ ଦେବ ଅମର ଭରସା,
ସକଳ ତେଆଗି ସନ୍ନ୍ୟାସୀ ତବ ରୁଦ୍ର;
ବାନ୍ଧି ନେବ ଶିରେ ସକଳ ତୁଚ୍ଛ କ୍ଷୁଦ୍ର ।୯।



## * ରାଧାକୃଷ୍ଣ

—୧—

ନରରୂପେ ପରି ଦନେ ବିଶ୍ୱର ଦେବତା,
ନେବ ବୋଲି ସ୍ଥଳେ ମିଥ୍ୟା ଅବିଶ୍ୱାସ ବ୍ୟଥା,
ରଚିଲ ଗୋପାଳ ଲୀଳା, ବୃନ୍ଦାବନ ରାସ ?
ନିତ୍ୟ ଶିବ ସୌନ୍ଦର୍ଯ୍ୟର ସରଳ ପ୍ରକାଶ ?
ଲକ୍ଷ କୋଟି ବ୍ୟାକୁଳାତ୍ମା ଆତ୍ମ-ବିସ୍ମୃତ ଭୁଲି,
ଗୋପୀକାର ବେଶେ ପଦେ ପଡ଼ିଲ ଉଚ୍ଛୁଳି,
ବିପୁଳ ମାଧୁର୍ଯ୍ୟେ କରି ଜୀବନ ପ୍ରତିଷ୍ଠା,
ଶିଖାଇଲ ଶେଷେ ଅନାସକ୍ତ କର୍ମନିଷ୍ଠା ।
ସେ ଦିନର ଯୋଗେଶ୍ୱର ପରମ ବୈଷ୍ଣବ,
ଆଜି କାମୁକର ରୂପେ ! ଏ କିବା ସମ୍ଭବ ?
ଲାଳସାର ବହ୍ନି ତେଜେ କୁତ୍ସିତ ମଳିନ !
ହରନ୍ତି ମାନବ ଭ୍ରମେ ଦେବତାର ଚିହ୍ନ ।
ଅସହ୍ୟ ଅଜ୍ଞାନ ମିଥ୍ୟା କ୍ରୂର ଅପମାନ !
ମାନବେ ମାନବ-ଦେବ କର ପରିତ୍ରାଣ ।



—୨—

ବିଶ୍ୱ ବିରହିଣୀ ରାଧା, ପରମ ବୈଷ୍ଣବ !
ଗାଏ ଯୁଗେ ଯୁଗେ ଜୟ ଅସହାୟ କବି
ତୁମ ସ୍ୱଚ୍ଛ ଅପ୍ରାକୃତ ପ୍ରେମର ଗରିମା,
ସ୍ତମ୍ଭ ଅଶ୍ରୁ ପୁଲକର ପାଇ ନାହିଁ ସୀମା ।

* ରଙ୍ଗମଞ୍ଚରେ "ଅଶୋକ ଚମ୍ପୂ" ଦର୍ଶନ କରି ।

୧୩୩—

ମହାଭାବମୟି ! ନିତ୍ୟ ମନ-ବୃନ୍ଦାରଣ୍ୟେ
ମିଳନ ଆକାଙ୍କ୍ଷା ବହି ଏକା ସଂଗୋପନେ
ଅଲେଖ ସନ୍ଧାନେ ଚଳ ! ତୁଚ୍ଛ ବ୍ୟଥା ସବୁ ।
ଅସହାୟ ମାନବର ତୁମେ ନା ଗୌରବ ?
ମାନବ ଲାଳସା ଦଗ୍ଧ ଅବନତ ପାପେ,
ସ୍ୱର୍ଗୀୟ ମାଧୁରୀ ଶୂନ୍ୟ ନର ଅଭିଶାପେ,
ବିଳାସ ସଙ୍ଗିନୀ ତୁମେ ଆଜ କଳ୍ପନାର,
ମାନବର ପାପେ ତୁମେ କ୍ଷତ କଦାକାର ।
ବୃନ୍ଦାବନ ରାସସ୍ଥଳୀ ଆଜ ଅନ୍ଧକୂପ
ନିତ୍ୟ ପ୍ରେମ ସହିଁ ମିଥ୍ୟା କଳଙ୍କର ସ୍ତୂପ ।

—ଗ—

ଅଜ୍ଞାନ ତମିସ୍ରାଚ୍ଛନ୍ନ ମୋହାନ୍ଧ ମାନବ,
କଳ୍ପିତ ପ୍ରତିମା ଗଢ଼ି ନିତ୍ୟ ନବ ନବ,
ଲଗାଏ ମିଥ୍ୟାର ଲୀଳା ! ଶୈଶବ ଯେସନେ —
ନିରେଖି ଆପଣା ସୃଷ୍ଟି ବାତୁଳ ସ୍ୱପନେ ।
ଚିର ମୌନ, ନିର୍ବିକାର ! ଈଶ୍ୱର ଅଶ୍ରୟ !
ମନେ ହସ ଦେଖି ନବ ମିଥ୍ୟା ଅଭିନୟ !
ଅବା ଅପସରି ଯାଅ ଶୂନ୍ୟ ହୁଏ ଧରା,
ଶୂନ୍ୟ ଦେବାଳୟ ଶୂନ୍ୟ ପୂଜାଫୁଲ ପରା ?
ପୂଜା ପାଏ ମିଥ୍ୟା ଅବା ଅଜ୍ଞାନ ଅନ୍ଧାର,
ଦେବତା ଆସନେ ବସେ ସହସ୍ର ବିକାର—
ବିକୃତ ଚିତ୍ତର ! ଭୋଗ ଲିପ୍‌ସା ଲଭେ ରୂପ ।

ମାନବ ଆପଣା ଲାଗି ରଚେ ମୃତ୍ୟୁ କୂପ ।
ତବ ଅପମାନେ ନର ଲଭଇ ମରଣ,
ଅସ୍ପୃଶ୍ୟ ପ୍ରବଞ୍ଚନା କରେ ଶକତ ହରଣ ।

—୪—

ଅଜ୍ଞାନ ଅବିଦ୍ୟା ଭୁଲେ ପାରନ୍ତି ସେ ଧରି,
ଅପ୍ରାକୃତ ପ୍ରେମ ତବ ଘୃଣ୍ୟଭାବ ପରି;
ଅପସରି ଯାଅ ତୁମେ କଳ୍ପନାରୁ ଦୂରେ,
ଶଙ୍ଖ ଘଣ୍ଟା ବାଜେ ମାନବର ଶୂନ୍ୟ ପୁରେ ।
ଅପ ଦେବତାର ପୂଜା ଗୌରବେ ବିହ୍ୱଳ,
ଆତ୍ମତୃପ୍ତି ଲାଗି ନର ଢାଳେ ଅଶ୍ରୁଜଳ,
ସହଜ ଯା ରହିଯାଏ, ତର ଦୁରବୋଧ,
ମାନବ ମିଥ୍ୟାର ସେବା ପ୍ରଭୁ ପ୍ରତିଶୋଧ ।
ବାକ୍ୟ ମନ ଅଗୋଚର ଜୀବନ ଦେବତା—
ତବ ପୂଜା ରଙ୍ଗ ମଞ୍ଚେ ? ପରିହାସ କଥା ।
ଅଜ୍ଞାନ ତମିର ଦୂର ଆଲୋକେ ଦେବତା,
ହୃଦୟ ମନ୍ଦିରେ ଜ୍ଞାନ କର୍ମର ବାରତା—
ଫୁଟି ଉଠୁ । ନର ନେଉ ସଂଗ୍ରାମର ଦୀକ୍ଷା;
ଶେଷେ ଚିତ୍ତ ବୃନ୍ଦାବନେ ମିଳନ ପ୍ରତୀକ୍ଷା ।

—୫—

ମାନବ ଅକୂଳ-ଅମ୍ବା-ବିରହଣୀ-ରାଧା
ଲୋକ ଚକ୍ଷୁ ଅନ୍ତରାଳେ ଦଳି ଭୟ ବାଧା—

ଚଲେ ଶୂନ୍ୟ ଅଭିସାରେ ଶ୍ରାବଣ ନିଶୀଥେ,
"କୃଷ୍ଣ ଚିର ପ୍ରାଣାରାମ" ଆକୁଳ ସଙ୍ଗୀତେ ।
ନିତ୍ୟ ବ୍ୟାକୁଳତା ତାର, ଅଶେଷ ସନ୍ଧାନ,
ମିଳନର ଆଶା ବହି ଅସ୍ଥିର ତା ପ୍ରାଣ ।
ଜୀବନ ସଂଗ୍ରାମେ ଶତ ଘାତ ପ୍ରତିଘାତେ,
ମୃତ୍ୟୁ ଅବସାଦେ ଦୁଃଖେ ରଜନୀ ପ୍ରଭାତେ,
ଏକଇ ସଙ୍ଗୀତେ ଅଶ୍ରୁ ବିରହ ପ୍ରସାର !
ଅବିଦ୍ୟା କବଳେ ତଥି ଲଭଇ ବିକାର ।
ସାଧକ ବିରହୀ ଜନ ପ୍ରାଣାରାମ ଧନ
ଦେବତାର ରସସ୍ଥଳୀ ନିତ୍ୟ ବୃନ୍ଦାବନ ।
ସାଧକ ଲଭଇ ପ୍ରୀତି-ମିଳନ-ଆସ୍ୱାଦ,
ବାସନା-ବିକୃତ-ଜନ ପ୍ରାଣ-ପରମାଦ ।



## ଶିଶୁ ସୃଷ୍ଟି

ଜଗତର ଶିଶୁ ଆସ ଆସ ମୋର କୋଳେ !
ଆସ ଏ ବକ୍ଷେ ପୀରତି ସେନେହ ଭୋଳେ,
ଆସ ଆନନ୍ଦ ! ଆସରେ ଜୀବନ ଉର୍ମି !
ସୃଷ୍ଟିର ଜୟ !      ସକଳ ଜୀର୍ଣ୍ଣ
ହସି ହସି ଯାଅ ଚୁମି ।

ସେ ହାସେ ବିକଶେ ସୃଷ୍ଟିର ଲୀଳା ପଦ୍ମ ।
ସେ ଭାରତୀ ଶୁଣି ମରଇ ମିଥ୍ୟା ଛଦ୍ମ;

ମରଣ ମରଇ ଅସ୍ଥିର ପଦ ଘାତେ,
ଜୀବନ ନିତ୍ୟ          ସନ୍ତ ଅମର
ଗାଅ ମଙ୍ଗଳ ପ୍ରାତେ ।

ଦର୍ଶନେ ରୂପ ମରେ ମୋର ହାହାକାର,
ମୃତ୍ୟୁ ଗୁହାରୁ ସକଳ ଜୀବନ ସାର—
ଅମୃତ ଗୀତ ଅବାରିତେ ପଡ଼େ ଝରି,
ମନେ ଭାଳିଲେ ଅହା     ନିତ୍ୟାନନ୍ଦେ
ଅଜଯାଏଁ ହେଲେ ମରି ।

ଆସରେ ବକ୍ଷେ ସକଳ-ଜୀବନ-ଆଶା !
ଆସ ମୋ ଜୀର୍ଣ୍ଣ-କାବ୍ୟ-ଅଲେକ-ଭଷା
ଛିନ୍ନ ହେ ତାର ସେ ପରଶେ ଯାଉ ଯୋଡ଼ି
ସବୁ ବନ୍ଧନ      ମରଣର ଭୟ
ଅବହେଳେ ଯାଉ ତୋଡ଼ି ।

ନ ଶୁଣିବି ଆଜ ନ ଶୁଣିବି କାର କଥା,
ନ ଗଣିବି କିଛି ସଂଗ୍ରାମ କ୍ଷତ ବ୍ୟଥା;
ସକଳ ଆଜ ତୋ ଅର୍ଥ ବିହୀନ ବାଣୀ
ମର୍ତ୍ତ୍ୟର ଏଇ   ଚିର କଙ୍ଗାଳ
ସାଇତ ରଖିବ ଛାଣି !

ତୁଚ୍ଛ ଶୋଚନା ତୁଚ୍ଛ ସକଳ ଭୀତି,
ପୂର୍ଣ୍ଣରେ ଅଜ ଜୀବନ ଛିନ୍ନ ଗୀତି,
ପରାଣ ପାଏ ପୂର୍ଣ୍ଣ ! ନୁହେ ରେ ଖାଲି !
ଆସ ଆନନ୍ଦ      ନିତ୍ୟ ଜୀବନ
ବକ୍ଷେ ଯାଅ ମୋ ଗ୍ଲାଳି !

ସକଳ ଜୀର୍ଣ୍ଣ ପୁରାତନ ପଡ଼େ ଝଡ଼ି,
ପଭଷ ପବନ ବାତ୍ୟା ନାଦରେ ଡଡ଼ି;
ହସେ ପୁଣି ଉଷା ଶୁଭେ ଅଲୋକର ଗାନ !
ନବ ନବ ରୂପେ ପରାଣ ଏ ଭୂମେ
ବିକଶିତ ଭଗବାନ ।

ହସି ଉଠ ଚିର ଅନ୍ଧାର ଦୀପ ମମ !
ଭ୍ରଷ୍ଟ ଭ୍ରାନ୍ତ ଶ୍ରାବଣ ବଜ୍ରଦ ସମ;
ନିଅ ମୋ ଜୀବନ ସବୁ ସମ୍ବଳ ଧନ,
ଦିଅରେ ଅଶିଷ ! ସବୁ ମଙ୍ଗଳ—
ଦେବ ହସି ପୁରାତନ ।



## ଉତ୍ସବ ଦୀପ—

ଦୁଃଖେ ତୁମର ଉତ୍ସବ ଦୀପ ଦେବତା,
କେତେ ମତେ ଉଠେ ଜଳି;
ଦୁଃଖୀର ଲୁହେ ତୁମର ରତ୍ନ ଅସନ
ଧୁଆଁ ନାଶି ପଡ଼େ ଟଳି !
ଦୁଃଖୀର ସଖା ଶିରେ ବହୁନିଅ ତ୍ରାସ,
କଙ୍ଗାଳ ମ୍ଳାନ ଅଧରେ ଫୁଟାଅ ହାସ;
ଏ ଚିର ଅଧମ ତବ ମହାଦାନ ଜୀବନେ,
ଯାରେ ନାହିଁ ତଳେ କଳି;
ଉତ୍ସବ ଦୀପ କେତେ ମତେ ଉଠେ ଜଳି !
ଜୀବନ ଯଜ୍ଞେ ଢାଳଦିଅ ଦେହୁଁ ଶୋଣିତ,

ଘାତକଙ୍କୁ ଦଅ ଅପଣାର ଶିର ବଢ଼ାଇ;
ଦୁର୍ଦ୍ଦିନେ ଶୁଭେ ତୁମର ନୂପୁର ରଣିତ
ପାନ୍ଥଙ୍କୁ ଦଅ ଅନ୍ଧାରେ ପଥ ବତାଇ ।
ଅଶ୍ରୁ ବେଦନା ପୋଛୁ ଯାଅ ନିଜ କରେ ହେ,
ତୁମ ମହାଦାନ ଅନ୍ତରେ ନାହିଁ ଧରେ ହେ,
(ତବ) ଆଲୋକ ସୂର୍ଯ୍ୟ ଉଇଁଲେ ପରାଣ ପରେ ହେ,
ମୃତ୍ୟୁ ଦୈନ୍ୟ ଅନ୍ଧାର ପଡ଼େ ଢଳୀ !
ଉତ୍ସବ ଦୀପ କେତେ ମତେ ଉଠେ ଜଳି ।
ମଙ୍ଗଳମୟ ନିତ୍ୟାନନ୍ଦ ଜ୍ୟୋତି !
କର ଦରଦ୍ରେ ତବ ଇଚ୍ଛାର ଦାସ !
ଧନ୍ୟ ହେଉ ହେ ତୁମର ଆଲୋକେ ଜୀବନ,
ସବୁ ଜଞ୍ଜାଳ ସକଳ ମ୍ଳାନ ପ୍ରାସ ।
ଦରଶନ ଦଅ ଉଜ୍ଜ୍ୱଳ ହେଉ ପୁର,
ଚିର ପ୍ରେମୀ ମୋର ସକଳ କର ହେ ଦୂର
ସକଳ ମୋ ପ୍ରିୟ ଯାହା ଏ ଜୀବନେ
କର ପ୍ରଭୁ ଅପଣାର,—
ତୁମ ପୀରତିରେ ଯାଉ ଏ ଜୀବନ ଗଳି;
ଉତ୍ସବ ଦୀପ କେତେ ମତେ ଉଠେ ଜଳି !
ଲୋଡ଼ିଲି ଯାହା ମୁଁ ଦେଇଛ ସକଳ ଦେବତା,
ଲୋଡ଼ ନାହିଁ ବୋଲି ତୁମ ଅମୃତ ପ୍ରୀତି ହେ,
ପ୍ରେମମୟ ରୂପ ଲୁଚାଇଛ ମୋର ଭରତା,
ଗାଇନାହିଁ ବୋଲି ତୁମର ବିଜୟ ଗୀତି ହେ;
ଏ ଛଳନା ଗୀତ ଚିର ପ୍ରିୟ ନାହିଁ ସାଜେ ହେ;

ତୁମର ବାରହେ ସକଳ ବନ୍ଧନା ଭାଜେ ହେ;
ଦେଇଛ, ଦେଇନା ଅପଣାକୁ ବୋଲି ଲାଜେ ହେ
ମନ୍ଦୁଥାଏ ନାଡ ଅନ୍ଧାରେ ଶତ ଭଲ ।
ଉତ୍ସବ ଦୀପ କେତେ ମତେ ଜଠେ ଜଳ ।



## ଭିକ୍ଷୁ ଗୀତ

ଯୁଗ ଯୁଗ ଧରି ଦେବଦୂତ ଅବତାର,
ବୁଦ୍ଧ, ଖ୍ରୀଷ୍ଟ ଗୌରାଙ୍ଗ ଏ ଭୁବନ କଲେ ପାର;
ଅପଣା ରକତେ ହରିବାକୁ ଭବଭୟ !
ଅବନତ ଶିରେ ଗାଇଲା ଭିକ୍ଷୁ
"ଜୟ ହେ ଦେବତା ଜୟ ।"

ଯାଉଛନ୍ତି କି କହ ଧରଣୀ ବେଦନା ତ୍ରାସ ?
କୁଟିଳ ଏ କାଳ କରେ ନାହିଁ ଉପହାସ ?
ଧରଣୀ ବକ୍ଷ ଶୋଣିତେ ନୁହେଁ କି ସିକ୍ତ;
ଚିର ବୁଭୁକ୍ଷୁ ମାନବ କି ନୁହେଁ ରିକ୍ତ ?
ଏ ଜଗତେ ଅଜ ନୁହଇଁ କି ତମୋମୟ ?
ଅବନତ ଶିରେ ଗାଇଲା ଭିକ୍ଷୁ
"ଜୟ ହେ ଦେବତା ଜୟ ।"

ଅଜ ସେ ବକ୍ଷୁ ରୁଧିର ପଡ଼ଇ ଝରି,
ନୟନ ଯୁଗଳ ଅଶ୍ରୁରେ ଜଠେ ଭରି,
ଅସ୍ଥିର ପଦେ ଶୂନ୍ୟକୁ କରି ଲକ୍ଷ,
ହତ୍ୟାର ମୁଖେ ପତାଇ ଦେଉଛି ବକ୍ଷ;

ଭିକ୍ଷା ମିଳେ କି ଆପଣାଙ୍କୁ କର କ୍ଷୟ ?
ଅଶ୍ରୁ ନେତ୍ରେ          ଗାଇଲା ଭିକ୍ଷୁ
"ଜୟ ହେ ଦେବତା ଜୟ ।"

ସେଦିନ ମୁକ୍ତିର ପତାକା ବହୁଛ ହାତେ,
ବରାଭୟ ଗାଇ ଚାଲିଛ ଜୀବନ ପଥେ,
ଲଭିନ କି କହ ହିଂସା ଶୋଣିତ ମଣି ?—
ଭିକ୍ଷୁ କହଇ ହସି,
"ବୈରୀର ଏଠି ଅମୃତ ବରାଭୟ ।"
"ଦୀନ ଜନ ଆଶା, ଜୟ ହେ ଦେବତା ଜୟ !"

ଦେବତାର ଦୂତ ଚାଲିଯାଏ ଧରାପରେ;
ଦୁଃଖୀ ପରାଣେ ପ୍ରୀତି ଅଶା ନାହିଁ ଧରେ ।
ଦୁଃଖ ଭୂମିରେ ନାମେମେଷୋଜ୍ଜ୍ୱଳ ଚନ୍ଦ୍ର;
ଅବା ନାସ୍ତାରେ ଗରଜେ ବଜ୍ରମନ୍ତ୍ର ।
ନାମେମେଷକେ ପୁଣି ସକଳ ଭୂମିରେ ଲୟ;
ମନେ ଭାବହିଁ             ଗାଇଲା ଭିକ୍ଷୁ
"ଜୟ ହେ ଦେବତା ଜୟ ।"

"ଅମା ଅନ୍ଧାର ମୃତ୍ୟୁ ଦହନ ଭେଦ,
ଦେବତାର ଦୂତ ଧରାପରେ ଯାଏ ଖେଦ;
ତା ପଦ ପରଶେ ହସଇ ପଦ୍ମ ପୁଣ୍ୟ,
ମନ୍ତ୍ର ତା ବାଣୀ ମୁଖରିତ କରେ ଶୂନ୍ୟ;
ତାହାର ପରଶେ ଧରଣୀର ପାପକ୍ଷୟ !"
ମୁଗ୍ଧ ନେତ୍ରେ          ଗାଇଲା ଭିକ୍ଷୁ
"ଜୟ ହେ ଦେବତା ଜୟ !"

"ନ ମିଳବ ନାହିଁ ମିତ୍ର ପଥେ କାହିଁ ଭିକ୍ଷା,
ଭୁବନର ପାପେ ଅମୃ ଅହୂତ ଦୀକ୍ଷା !
ଦେବତାର ଦୂତ ଅପଣା ଶୋଣିତ ଢାଳି,
ପାପଭାର ବହି ପୃଷ୍ଠେ ଗଲେଣି ଜ୍ୱଳି
ବକ୍ଷେ ଏସନେ ବହି ନେଲେ କ୍ଷତଚୟ !
ସେ ପଥ ପଥିକ ଦୀନ ଭିକ୍ଷୁ !
ଜୟ ହେ ଦେବତା ଜୟ !"



## ଦୈନ୍ୟ ପ୍ରକାଶ

ସକଳ ତୃଷ୍ଣି ଏଡ଼ି ଏଥିଯାଉ
ଜୀବନ ବନ୍ଧୁ ମୋ ଜୀବନ ବନ୍ଧୁ;
ବିରହ ଏ କାଳ ମଳିନ ଚିହ୍ନ
ନ ଦେଉ କନ୍ଧୁ ଗୋ ନ ଦେଉ କନ୍ଧୁ ।
ମୁଁ ଗୋ, କାସାର କମଳ, ରଜନୀଗନ୍ଧା,
ମୋ ଜୀବନ ଗ୍ରନ୍ଥି ଏକଇ ସନ୍ଧ୍ୟା !
ଝରିଲେ ଚଳିବ ଦୂର ପରବାସୀ
ବିରହ ବକ୍ଷେ ନିମେଷେ ରହ ଗୋ ନିମେଷେ ରହ ।
ଦେବାର ଗର୍ବ ନାହିଁ ମୋର କନ୍ତୁ
ଦୁଃଖ ନାହିଁ ମୋ ଶୋଚନା ନାହିଁ ।
ଏକଇ ଦନର ହାସ୍ୟ ଅଶ୍ରୁ
ସଞ୍ଚିତ ମୋର ତୁମରପାଇଁ ଗୋ ତୁମରପାଇଁ ।

ତୁମ ବାଣୀ ବହ୍ନ ପୂଟିଛୁ ଝରଛୁ
ତୁମ ସଙ୍କେତ ନୀରବେ ଘୁଞ୍ଚି ଗୋ ନୀରବେ ଘୁଞ୍ଚି;
ଭୁଲିଛୁ ଅଲେକ ଘନ ଅନ୍ଧାର
ସବୁ କୋଳାହଳ ଦୁଃଖ ନାହିଁ ଗୋ ଶୋଚନା ନାହିଁ ।
ପ୍ରାଣ ବୁଦ୍‌ବୁଦ ହେ ମହାସିନ୍ଧୁ !
ଲୁପ୍ତ ସେ ଦେହେ ମୁଁ କ୍ଷୀଣ ବିନ୍ଦୁ,
ହେ ମହା ମହେଶ ନାରେଖି ହାସ୍ୟ,
ବିକଟ ଅନଳ ମିଶିବ ତହିଁ ଗୋ ମିଶିବ ତହିଁ !

## ସୁପ୍ତ ଦେବତା

(କୌଣସି ନର-ରାକ୍ଷସ ଉଦ୍ଦେଶ୍ୟରେ ପ୍ରାର୍ଥନା)
ଅଜ ହତ୍ୟାରକତେ କଳୁଷିତ ଯାର କର,
ପରାଣେ ଯାହାର ପ୍ରବଳ ଶୋଣିତ ତୃଷା,
ତୁମ ଅମୃତ ପୀରତ ପରାଣେ ଭର
ଉଷର ଜୀବନେ ଅଣ ଅମୃତ ଉଷା ।
ଏ ମାନବଲାଗି ଶୁଷ୍କ ଲୋତକ ଯାର,
ସ୍ୱାର୍ଥର ମୋହେ ହୃଦୟ ନ ଯାଏ ଗଳି,
ନ ଛୁଏଁ ଯା ଶତ ଦୁର୍ବଳ-ହାହାକାର,
ସୁନ୍ଦର ଯାର ପରାଣେ ଯାଉଛୁ ଜଳି—
ଢାଳିଦିଅ ପ୍ରଭୁ ତୁମରି କରୁଣା ବିନ୍ଦୁ,
ପୀରତ ସରସେ ସେ ଭୂମିକର ହେ ସିକ୍ତ,
ଡାକ ନାଅ ବାରେ ଯହିଁ ପ୍ରାଣ ମହାସିନ୍ଧୁ,
ବ୍ୟର୍ଥତା ତାର ବୁଝେ ନାହିଁ ସେ ଯେ ରିକ୍ତ !

ଅପମାନେ ପୁଣି ଅମ୍ଳ ନିର୍ଯାତନେ,
ମରେ ଯେ ନିଃସ୍ୱ ଏ ଶିବ ସୃଷ୍ଟି ଦଳ,
ମୈତ୍ରୀ କରୁଣା ଭର ବିକୃତ ମନେ,
ତୁମରି ଅଶିଷ ତା ଶିରପି ପଡ଼ୁ ଝରି !

ବିଲୋଳ ରସନା ଦଂଷ୍ଟ୍ରା-କରାଳ-ମୁଖ
ଦେବତା ଅସନ ଅବରି ଅଜ ଯେ ରୁଷ
ମାନବ ରକ୍ତେ ନିବସି ଅଣଇ ଭ୍ରାନ୍ତ
ଶାନ୍ତ କର ହେ, ସୃଷ୍ଟିରେ ଅଣ ଶାନ୍ତ !

ବହାଇ ଦଅ ତା ଶୁଷ୍କ କପୋଳେ ଲୁହ,
ଜୀର୍ଣ୍ଣ ବିକଳ ମୂକ ଏ ମାନବ ଲାଗି,
ତୁମ ଅଶ୍ରୁରେ ତା ପରାଣ କ୍ଷତ ଧୁଅ,
ଚିର ଦରିଦ୍ର କରୁଣ ନେତ୍ରେ କହ ତୁମେ ରହ ଜାଗି !

ନିଭିନାହିଁ ଯାର ରୁଦ୍ର ବିକଟ କ୍ଷୁଧା
କହ ଯାଇଁ ତାକୁ ଗୃହ ସମୂଳ ହୀନ—
ମରଇ ମାନବ ପଥେ ଘାଟେ ଫାଟେ ମୁଧା !
ସବୁ ତା ପୁଣ୍ୟ ରକତରୁ ଜନ୍ମେ ଭିନ ।

"ସୁପ୍ତ ଦେବତା !" ପୀଡ଼ିତ କଣ୍ଠେ ବାଜେ;
କାତର କଣ୍ଠେ କିଏ କହେ "ପ୍ରଭୁ ସୁପ୍ତିତ ନାହିଁ ସାଜେ ?"
"ଅଜ ଏ ଦୁଃଖ ଦୁର୍ଦ୍ଦିନେ ଉଠ ଜାଗି !"
"ପଶୁ ସମ ମୂକ ନିପୀଡ଼ିତ ଜନ ଲାଗି !"



## ଖଣ୍ଡିତା

ଆଜ କାହା ଲଗି ଯତନେ କବରୀ ରଚନା ?
କୁସୁମ ଭୂଷଣେ ନାହିଁ ତଳେ ଅଜ ବାସନା,
ରଖ ସଖି ତୋର ମଲ୍ଲୀ କରବୀ ଯୂଥିକା,
ମରଣର କୋଳେ ମୁଦେ ମୁଁ ନୟନ ଲତିକା !
ପୋଛି ଦିଅ ସହି ଲକ୍ଷାରସ ମୋ ପୟରୁ,
ବନ୍ଧୁଲର ରାଗ ନିଭାଇ ଦିଅ ମୋ ଅଧରୁ ।
ନ ଚାହିଁଲ ଫେର ପ୍ରିୟତମ ଯେବେ ଥରେ ଗୋ
ଜାଣି ଜାଣି ଯେବେ ହାଣିଗଲ ମରମରେ ଗୋ
ସନ୍ଧ୍ୟା ସମୀନ ଯେବେ ଗଲ ଏହି ପଥେ ସେ,
ଏଡ଼େ ନିଷ୍ଠୁର ଉଦାସୀନ ସହି ସତେ ସେ !
ବାତାୟନ ପଥେ ଚାହିଁଥିଲି କେଡ଼େ ସରାଗେ,
ଶ୍ରବଣ କୁସୁମ ଖସି ପଡ଼ିଲା ଯା ତା ଅଗେ,
ଲକ୍ଷେ ଅଭିମାନେ ହୃଦୟ ହୁଏ ଗୋ କରତ;
ନ ଚାହିଁଲ ଯାହା ନ ଶୁଣିଲ ଥରେ ଅରତ ।

## ଦୂରର ଯା ଥିଲା

ଦୂରର ଯା ଥିଲା ଅନ୍ତରେ ଅଜି ପ୍ରିୟ
ଉତ୍ସବଦୀପ ମନ୍ଦରେ ଜାଳିଦିଅ ।
କାହିଁକି ଶୋଚନା ? ଅଶ୍ରୁ ପୋଛ ତୁ ଜବ,
ଅନ୍ତରେ ତୋର ନିତ୍ୟ ଅମର ଛବି ।

ଗାଅ ଗାଅ ତୋର ନବ ସଙ୍ଗୀତ
ସେ ପରଶ ଅନୁଭବ ।
ଶତ ବସନ୍ତ ଉତ୍ସବ ତୋର ପ୍ରାଣେ,
ଶରତ ପ୍ରଭାତ ତୋ ପୀରତ ଅଭିଯାନେ
ଢାଳଇ ଅଲୋକ, ଶୁଭ୍ର ଶେଫାଲି ଫୁଲ !
ଆଜ ଆନନ୍ଦ ପୀରତର ନାହିଁ ତୁଲ !
ବିରହ ମିଳନ ଏକାକାର ଆଜ
ପରାଣ ହରାଏ କୂଳ ।
ମୃତ୍ୟୁ ଅଙ୍କରେ ଅମୃତେ ଗଲା ମିଶି,
ଜୋଛନା ହାସରେ ମିଶିଗଲା ଅମାନିଶି,
ବାଧା ବନ୍ଧନ ସବୁ ଗଲା ଆଜ ତୁଟି,
ମଉଳିଲା ଆହା ସକଳ ଭ୍ରାନ୍ତ ଯୁକ୍ତି ।
ପୀରତ ପୂର୍ଣ୍ଣ ଅଲୋକେ ହସଇ
ପରାଣ କମଳ ଫୁଟି !

[ ୧୯୩୧ ]



## ବରଷା ଆସିଛୁ ଦୁଆରେ

ଆଜ, ବରଷା ଆସିଛୁ ଦୁଆରେ
ଆଜ କେ ରଚିଲା ନୃତ୍ୟ ନବୀନ
ତୋର, ଅନ୍ତରେ ପୁଣି ବାହାରେ ।
ଆଜ ମରୁଭୂମେ ଜୀର୍ଣ୍ଣ ଏ ଦେଶେ,
ଚିର ମଙ୍ଗଳ ସ୍ରଷ୍ଟାର ବେଶେ !

ବାଇର ମରଣ ସଞ୍ଜିବନୀ
ତା ବାଣୀ କବ ତୁ ଗ୍ରହାରେ । ୧ ।
ଜୀର୍ଣ୍ଣ ରୁକ୍ଷ ଧ୍ୱଂସରେ ଅଜ
ନବୀନ ଜୀବ ସେ ସଞ୍ଚାରେ ।
ଶାନ୍ତ ଭଦ୍ରକ ମରଣରେ ତାଲ,
ଚିର ବୈରାଗୀ ଦୂରେ ସାଏ ଗ୍ରଲ
ଚିର ଅନନ୍ଦ ନିର୍ବିକାର ସେ
ଗ୍ରହେଁନାହୁଁ ଫେର କାହାରେ ।୨
ଶୁଣି ଅଗମନୀ ବିଶାଳ ଶୂନ୍ୟେ
ଭଠେ ବିଶ୍ୱର ଛନ୍ଦ,
ବୃକ୍ଷ ଲତିକା ନୀରବ ଶୈଳ—
ତଟିନୀ ସକଳ ଅନ୍ଧ !
ମରେ, ମୃତ୍ୟୁର ଅବସାଦ ।
ତାର, ସଙ୍ଗୀତେ ଫୁଟେ ଶୈଳେ କୁସୁମ
ଶୂନ୍ୟରେ ପରମାଦ !
ଅଗୋ ମଲ୍ଲିକା ମାଳତୀ ଚମ୍ପା.
ରଜନୀଗନ୍ଧା—ତା ଅନୁକମ୍ପା
ଲଗିଚି କି ମମ ଦଗ୍ଧ ହୃଦୟେ
କରୁଣା ମିଳିବ ଯାହାରେ । ୩ ।
ସ୍ନିଗ୍ଧ ଶ୍ୟାମ ଶୀତଳ ସ୍ପର୍ଶେ
ଉଜ୍ଜ୍ୱଳ ହେବ ପୁର,
ଜଞ୍ଜାଳ ଗ୍ଲାନି ଦୂର,
ଅଜି ବିଶ୍ୱର ପ୍ରୀତି ଅନନ୍ଦେ
ନିମେଷେ କରିବ ଯୂର । ୪ ।

ସୌଧ ଶୀର୍ଷେ ତନ୍ୱୀ ସଜଳ—
ନୟନେ ପୂର୍ଣ୍ଣ ଆଶା
ଫୁଟାଇଲା କିଏ ଶୁଷ୍କ ଗ୍ଧତକ—
ଲଭି କଣ୍ଠର ଭାଷା ?
ଆସ ହେ ବରଷା ବିଶ୍ୱ-ଜୀବନ,
ବିହ୍ୱଳ ଲଭି କରିବ ବରଣ,
ନବୀନ ହେଉ ହେ ସକଳ ମଳିନ
ଅରୂପ ବିଶ୍ୱବିହାରେ;
ଆଜି, ବର୍ଷା ଆସିଛି ଦୁଆରେ ।
[ ୧୯୩୬ ]



## ଅଭିସାରିକା

ହସଇ ଜୋଛନା ବହଇ ମଳୟ ମନ୍ଦର,
ବକୁଳ ଗନ୍ଧେ ସକଳ ଭୁବନ ଅଧୀର;
ଧରୁନାହିଁ ମନ ଘରେ ତଳେ ଆଜି ସଜନି,
ଡାକେ ଅବା ଦୂରେ ମୁଗ୍ଧ ଆକୁଳ ରଜନୀ,
ଡାକେ ତା ବଂଶୀ ସୁଦୂର ତମାଳ କୁଞ୍ଜେ;
ଡାକଇ ଅଧୀରେ ମରେଁ କୁଳବାଳା ମୁଁ ଯେ ।
ପୁରଜନେ କାଲି ଦେବେ ନାହିଁ ମୋତେ ବାସ,
ବାଧଉ ଆଜି ଗୋ ନୟନର ଉପହାସ ।
ରଣ ରଣ ସହ ରୁଣିତ ନୂପୁର ଚରଣୁ
ଅସେ ପୁଣି ଡାକ ସ୍ନିଗ୍ଧ କୁଞ୍ଜ କାନନୁ,

କବରୀ-କୁସୁମ ଶିଥିଳ କି ସହି କହନା ?
ମନଲୁଣ୍ଠି ଅବା ଚନ୍ଦ୍ରମକବ୍ରୀ ରଚନା ?
ସେତ ରୂପ ଖଣି ଶ୍ରେଷ୍ଠ ହେବ ଗୋ ଦହି,
କ୍ଷୁଣ୍ଣ ମୋ ରୂପ ଯୋଗ୍ୟତାର କି ସହି ?
ଯିବ ଯିବ ସହି ଅକୁଳତା ଛଳେ ସହେନା;
ତୀବ୍ର ସେ ଡାକେ ଘରେ ମନ ଅଜ ରହେନା ।

[୧୯୩୧]

---

## କାରାବାସ-ସ୍ୱପ୍ନ

୧— ଦୂର କାରାବାସେ ମଧୁର ତାହାର ସ୍ମୃତି,
ନିଶବଦ ରାତେ ସଙ୍ଗୀତ ଅନୁଭୂତି,
ଜୋଛନା ଆଲୋକେ ରଜନୀଗନ୍ଧା ବାସ,
ଅତୀତ ଜୀବନ ଅମର ମଧୁର ପ୍ରାସ ।
ଦୂର ପରବାସୀ, ହେ ପଥିକ ରହ ରହ !
ଦେଖିଛ କି ତାକୁ କେବେ ଏ ଜୀବନେ କହ ?
ଜ୍ୟୋତ୍ସ୍ନାସମ ତା ନୟନ କରୁଣ ଦୃଷ୍ଟି,
ତା ଅଧର ହସ ଯେସନେ ତରୁଣ ଦବା,
ତା ରୂପ ମାଧୁରୀ ପିଇଛୁ କହାଇଛୁ ଧନ୍ୟ,
ମରମୁଁ ଅମର ପଦବୀରେ ହେଲ ଗଣ୍ୟ ।
ଦେଶର କାଳର ମହା ବ୍ୟବଧାନ ହାଣି
(ସେ ମୋ) ଜାଗ୍ରତ ପ୍ରାଣେ ଅଣୁ କଉତ ବାଣୀ ।
ପ୍ରଳୟ ତମିରେ ଉଜ୍ଜ୍ୱଳ ଶିଖା ସମ,
ସକଳ ପ୍ରିୟର ମୋର ସେ ଯେ ପ୍ରିୟତମ ।

୨— ଭୁଲିଯିବ ତାକୁ ? ଭୁଲିବ କେସନେ କହ ?
ମୃତ୍ୟୁକୁ ହାଣି ରୂପ ତାର ଅହରହ—
ସତ୍ୟ ସମାନ ପ୍ରତିଭାତ ଜାଣି ଦବା !
ଜୀବନ ଅଲୋକେ ଅମର ପଦ୍ମ କବା !
ଗଲଣି ସେ ଭୁଲି ? ପଡ଼େ ନାହିଁ ଥରେ ମନେ ?
ନାହିଁ ମୋ ଶୋଚନା କହି ଦେବ ତାକୁ ତମେ—

ଭୁଲିବାକୁ ହେଲେ ବଢ଼ିଯାଏ ମୋର ତ୍ରାସ,
ଅପଣାକୁ ଅବା କରେ ମୁହିଁ ଉପହାସ ।
କୋକିଳ କଣ୍ଠେ ଦୂରୁ ସେ ଯେ ଅସେ ଭାସି,
ତାର ଲାବଣ୍ୟ ବହେ କାଶଲଯ୍ୟ ରାଶି,
ଦୂର କାନ୍ତାରେ ମଳୟ ଅଣେ ତା ସ୍ପର୍ଶ,
ମାଧବୀ ଜୋଛନା ତାର ପୀରତି ଅଦର୍ଶ ।
ଭୁଲି ଯାଉ କହ ନିଶୀଥ ସ୍ୱପନ ପରି
ନିଃସ୍ୱ ରତନ ସ୍ମୃତି ସଦା ଥିବ ଧରି ।

୩— ମର୍ତ୍ତ୍ୟ ମାନବ କି ବୁଝି ଜୀବନ ବ୍ୟଥା ?
ଉଦ୍ଭବ ତରୁଣ ଜୀବନର ଚପଳତା !
ଯୌବନ ତୁଲେ ସକଳ ବିକାର ଶୂନ୍ୟ,
କାଳର ପରଶ ସକଳକୁ କରେ କ୍ଷୁଣ୍ଣ ।
ତା ରୂପ ଅଲୋକେ ପରାଣଟି ଥରେ ମାଜି,
ମାଧବୀ ଜୋଛନା ସଙ୍ଗୀତ ତାରେ ବାଜି,

ଭୁଲିଯିବା ତାକୁ ଭୁଲିବା ଜୀବନ ସତ୍ତା,
ଅଶ୍ରୁସାଗରେ ସ୍ନିଗ୍ଧ ସେ ନୀରବତା !
ଚିର ତୃଷାର୍ତ୍ତ ପୀୟୂଷ ସାଗର ଗ୍ରହି—
ଫେରି ଆସିବାର ସମ୍ଭବ ଅବା କାହିଁ ?
ପୁଣ୍ୟ ମାଧୁରୀ ଗ୍ରହି କହ କାହିଁ ତୃପ୍ତି ?
ସଙ୍ଗୀତ ପଦେ ଶୁଣି ଆସେ କାହୁ ସୁପ୍ତି ?
ଗ୍ରହିଛୁ ଯେ ଥରେ ଯୌବନ ରୂପ ବିଷ
ତୃପ୍ତ ଧନ୍ୟ ହେଲ ପୋଡ଼ି ଅହର୍ନିଶ !

୪— ସନ୍ଧ୍ୟା ଆଲୋକେ ସ୍ନିଗ୍ଧ ତାରକା ଫୁଟେ !
କମଳ କାନନେ ଫୁଟେ ଅଗଣିତ ଫୁଲ,
ମଙ୍ଗଳ ଉଷା ନିଶୀଥ ଶଯ୍ୟନ୍ତୁ ଉଠେ,
ନ ପାଇବ କେହୁ ତା ରୂପର ସମତୁଲ !
ଲକ୍ଷ ତାରକା ତା ରୂପେ ଲଭିବେ ଲାଜ,
ସୃଷ୍ଟିର ଉଷା ଶଙ୍କିତ ଦେଖି ବ୍ୟାଜ,
ତା ଚରଣ ତଳେ ଲୋଟିବାକୁ ଶତ ଫୁଲ,
ଏ ପରାଣ ସମ ନିରତରେ ସମାକୁଳ !

ଶାରଦ ଗଗନେ ନୀରବ ସନ୍ଧ୍ୟା ପରି,
ତା ଅନାଇଣିରେ ଜୋଛନା ଉଠଇ ଥରି,
ତାରକା ଖଚିତ ନୀଳ ନଭ ଉତ୍ତରୀ;
ଟାଣି ଶିରେ ଆସେ ସିନ୍ଧୁ ବକ୍ଷେ ଚଳି ।
ମଙ୍ଗଳ ରୂପ ପୁଣ୍ୟ ଅଧର ହାସ !
ମରିବାକୁ ତହିଁ କବି ଚିର ଅଭିଳାଷ ।

୧୫୧—

୫—ଯୌବନ ଶିଶୁ କ୍ଷୁଣ୍ଣ କରଇ କଷ୍ଟ,
ତରୁଣ ସ୍ୱପ୍ନ ପଶ୍ଚାତେ କାଳ ପଷ୍ଟ,
ପରିହାସ କରେ ସ୍ୱଦ୍ରୂପ ବସ୍ତ୍ର ଅର୍ଘ ?
ଜୀବନ ସ୍ୱପ୍ନ କେତେ ରହିଯାଏ ବାକି !
ଶୁଷ୍କ ଧରଇ ସ୍ନିଗ୍ଧ ଶକୁର ଦାମ,
ସକଳ ଶୋଭାର ମୃତ୍ୟୁ ନିଯୁତ ବାମ;

ମଉଳ ପଡ଼ଇ ସଜଳ ନେତ୍ର ବାଷ୍ପ,
କାଳ ଦୁର୍ଦ୍ଦିନେ ଯେସନେ ତରୁଣ ଦବା ।
କାନ୍ତ ଅଧର ଜବା ପାଣ୍ଡୁର ଦଶେ,
ପୀଯୂଷ ହାସ୍ୟ ମୃତ୍ୟୁ ତମିରେ ମିଶେ !
ରୂପ ପାରାବାରେ ଜଏଁନା ତାରକା ଶତ,
ଜର୍ଜ୍ଜର ବାଆ ଅନ୍ତର କରେ କ୍ଷତ,
ସବୁ ନଶ୍ୱର ତା ଦେହୁଁ ପଡ଼ିଲେ ଝରି,
[ଜାଗେ] ପ୍ରୀତି ଅମୃତ ଶୁକ୍ର ତାରକା ସରି !

୬—ହେ ପଥିକ ଯେବେ ବୁଝି ନାହିଁ ଥରେ ପ୍ରୀତି,
ଶୁଣି ନାହିଁ ଯେବେ ନୀରବ-ନୟନ-ଗୀତ,
ଲଭି ନ ବାସନା ପୁଣ୍ୟ ପୀରତି ବାଷ୍ପ,
କେସନେ ଜାଣିବ ଜୀବନାମୃତ କବା ?
ପ୍ରାଣ ପାରାବାରେ ଗହନ ମୃତ୍ୟୁ ବେଦ,
ପୀରତି ପଦ୍ମ ହସଇ ତମିର ଛେଦ,

କଳପନା ନୁହେଁ, ସତ୍ୟ ସେ ଅନୁଭବ,
ଜୀବନ ମୃତ୍ୟୁ ସକଳର ଗୌରବ !
କାଳର ପରଶେ ବଢ଼ଇ ପୀରତି ଅୟୁ
ଅଭିନବ ରୂପ ଭରି ବହୁଅଣେ କାହ୍ନୁଁ,
ଯା ଲାଗି ନିଃସ୍ୱ ଜୀବନଟି ହୁଏ ଧନ୍ୟ
ପୌଷେ ପୁଷ୍ପ ହସିତ ବୃନ୍ଦାରଣ୍ୟ !
କହ୍ନୁବଟି ତାକୁ ଭେଟିଲେ ତା ଲାଗି ପରା
ଜୀବନର ସ୍ୱପ୍ନ ସହଜେ ପଡ଼ଇ ଧରା !

୨—ଦୁର୍ଦ୍ଦିନ ଶତଶିର ପରେ ଯାଏ ବହି,
ଅନ୍ତର ବ୍ୟଥା ଅଶ୍ରୁରେ ନୁହେ କହି,
କ୍ଷିପ୍ର ସିନ୍ଧୁ ପ୍ରଳୟେ ଉଠିଛି ମାତି,
ସ୍ମରଇଁ କାହିଁକି ଶାରଦ ଶୁଭ୍ର ରାତି ?
ଏ ଜୀବନେ ଯାର ପାହିଛି ସ୍ୱପ୍ନ-ନିଶା,
ପୀରତି ପୀୟୂଷେ ଗରଳ ହୋଇଛି ମିଶା,
ନିଠୁର ନିୟତି କରେ ଯାକୁ ଉପହାସ,
ଅତୀତର ସ୍ମୃତି କାହିଁ ପାଇଁ ଦିଏ ତ୍ରାସ ?

ଶୁଖଇ କଣ୍ଠ ! ନ ମିଳେ ସଲିଳ କଣା !
ଅତୁର ସ୍ତତକ କାହିଁପାଇଁ ଡେବେ ବଣା ?
ମରଇ ଅକୁଳେ ମାଧବୀ ଜୋଛନା ଝୁରି,
ଅଶ୍ରୁ ସାଗର ଅନ୍ଧାରେ ଉଠେ ଫୁଲି;
ମଳୟର ମୋହ ନିମେଷକେ ହେଲା ଦୂର
ମରଇ କାହିଁକି ବିଜନ କାସାରେ ଫୁଲ ?

୮— ଦେଖିଛ କି ସତେ ରକ୍ତ ମୋ ହାସତଳେ,
ସମର କାହାଣୀ ଅଗଣନ କ୍ଷତ ଛଳେ ?
ସଂଗ୍ରାମଲାଗି ସୈନିକ ବେଶେ ଉଭା ?
ଦର୍ପେ ଦମ୍ଭେ ହସଇ ତରୁଣ-ଯୁବା ?
ଚେତାଉଛ ମୋତେ ? ତହିଁ ଅବା କେଉଁ ଫଳ ?
ଜାଣେ ସମ୍ବଳ ଏ ମୋର ଅଶ୍ରୁଜଳ !
ସମର ଅନ୍ତେ ପୁଣ୍ୟ ଏ ମୋର କ୍ଷତ
ବଢ଼ିଯିବ ତାକୁ ଲକ୍ଷ ତାରକାବତ !
ତେଣୁ ଗୋ ଶୂନ୍ୟ ଗୌରବ ଅବକାଶେ
ଭରଇ ନୀରବେ ତୀବ୍ର ମୋ ଉପହାସେ ।
ଶାନ୍ତ ସିନ୍ଧୁ ଶୂନ୍ୟକୁ ରହେ ଚାହିଁ,
ଜୀବନର କିବା ହାନି ଲାଭ ପୁଛେନାହିଁ,
ଦୁଃସହ ଭାର ବହିବା ଧରମ ଜାଣେ,
ଅଧରେ କରୁଣ ହାସ୍ୟ, ଶୋଣିତ ପ୍ରାଣେ !

× × ×

୯— ହେ ପଥିକ ଯେବେ ତୁମ ତୁଲେ ହେବ ଦେଖା,
କହିବ ସେ ଯେ ମୋ ମର୍ମେ ରୁଧିରେ ଲେଖା ?
ଭୁଲିବ କେସନେ ମରଣ ପୂରୁବୁ ଅବା;
ଜଗତେ ପଛକେ ବସୁ ଅପବାଦ ସଭା !
ପ୍ରୀତି-ଅପବାଦ-ଅଶ୍ରୁ ପରମ ଲାଭ,
ଅକୂଳ ସିନ୍ଧୁ ବକ୍ଷେ ଏକଇ ନାବ,

ଥିଲେ ସେତେଦୂରେ ପ୍ରୀତି-ସୁଧାଲାଗି ପିନା—
ରହୁଛୁ ଜୀବନ ? ସ୍ପୃହର ସୃଷ୍ଟି ବୀଣା ?
ସକଳ ଅବଳ ଊର୍ଦ୍ଧ୍ୱେ କମଳ ଫଟେ,
ସ୍ୱରଣେ ବନ୍ଦୀ ପର୍ଣ୍ଣ ଧ୍ୱାନ୍ତ ତୁଟେ ।
ଗଗନର ତାରା ଦୂରେ ! ଦୂରେ ! କବା ହାନି ?
ସକଳ-ଦୂରତା ଦଳେ ଅନ୍ତର ବାଣୀ !
ସୁଦୂରର ଯାହା ସଫଳ ନଜଟେ ଅସି,
କ ଫଳ ଭସ୍ମ ବାସନାକୁ ପରକାଶି ?

[ ୧୬।୩।୩ ]



## * ବୈଧବ୍ୟ

୧— କହ ନାହିଁ ତାକୁ ଦୈବର ଅଭିଶାପ,
ସ୍ୱର ଜୀବନର ଶତ ଦୁଷ୍କୃତ ପାପ,
ଶ୍ରାବଣ ସବିତ ସମାନ ବହୁ ଗୋ ଲହ,
ଶର ଅବଚଳ ଶଙ୍କିତା ଅଜ କୁହ,
ଯେ ଅନଳ ଜଳେ, ଲେଲିହାନ ସେ ଯେ ଶତା !
ସୃଷ୍ଟିର ସେ ଯେ ମଙ୍ଗଳମୟୀ ପିତା,
ଭସ୍ମ କରଇ ସକଳ କରଇ ଦଗ୍ଧେ,
ସବୁ ନଶ୍ୱର ସକଳ ଏ ମାୟାଲବ୍ଧ !
ପ୍ରଣମ ପୟରେ ବନ୍ଦନା ଯାଅ ଗାଇ
ଶର ଶଙ୍କିତା ସଙ୍କୋଚ କାହା ପାଇଁ ?

* କନିଷ୍ଠା ଭଗିନୀର ବୈଧବ୍ୟୋପଲକ୍ଷେ ।

ଭସ୍ମ ସକଳ ଭସ୍ମ ! ଅନଳ ହସେ,
ଜୀବନେ ନାଟ୍ୟ ଅକ୍ଷର ଯାହା କଷେ,
ଅବଚଳ ଅଟେ ଗୋ ନାଅ ଭସ୍ମର ଧାଷା
ଜୀବନ ଦୁଆରେ ପୂର୍ଣ୍ଣ ଅଜ ଚୋ ଭଷା !

୨—ବାଷ୍ପ-ତମିର ଅବସାଦ ଛାୟା ଦଳି,
ଉଦୟ ଅଚଳେ ସବତା ଉଠିଲେ ଜଳି !
ଚିର ସୁନ୍ଦର ଅନ୍ତରେ ବାଭିବସି
ସେ ଅଲୋକ ତେଜେ ନିରେଖଯାଏ ଗୋ ମଷ !
ତେଜ ଅଜ ତୋର ମର୍ତ୍ତ୍ୟ ଭୂଷଣ ମାୟା,
ଉଜ୍ଜ୍ୱଳ ତେଜେ ମରଇ ଜୀବନ ଛାୟା,
ଭସ୍ମ ସକଳ ବକାର ଶୂନ୍ୟ ବନ୍ଧ !
ସକଳ ଶାନ୍ତ ସ୍ମୃତରେ ପବଏ ଛନ୍ଦ !
ଭକ୍ଷୁଣୀ ଅସ, ଅସ ଗୋ ଶୂନ୍ୟ ହସ୍ତେ,
ଡାକଇ ଅଲୋକ ଜୀବନ ମୁକ୍ତ-ପଥେ !
ଦୀର୍ଘ ସେ ପଥ ? ଅସ ସଂଶୟ ତେଜ,
ଚିର ମଙ୍ଗଳ ଦୈବ ବଧାନ ହେଜ,
ଅସ ଗୋ ଶାନ୍ତ ସୁନ୍ଦର ଯାଏ ବେଳ,
ସ୍ମର ସେ ଅନଳ ! ଅଶୋଭନ ଅଜ ଖେଳ !

୩—ନାଭ ଅସେ ଚିତା ! ଦିବ୍ୟ ସବତା ଉଠେ !
ନବୀନ ସୃଷ୍ଟି କମଳ ଅବା କ ଫୁଟେ !

ଚୌଦିଗେ ଧୀରେ ସ୍ଫୁରଇ ସୃଷ୍ଟି ଗୀତ,
ଜୀବନ ଅନ୍ତେ ସେ ମୃତ୍ୟୁ ସଙ୍କେତ !
ଶୁଣିଛୁ ଭଗିନି ରୁଦ୍ଧ କଣ୍ଠ ତବ,
ନ ଗାଇବ ତହିଁ ସଙ୍ଗୀତ ଅଭିନବ,
ଜୀବନ ଯେସନେ ଶୁଷ୍କ ବାସର-ଫୁଲ,
ନ ଥାଏ ସରାଗ ନାହିଁ ଛଳେ ତାର ମୂଳ !
ମାତର ବିଷାଦ ଦଗ୍ଧ କରି ଏ ପ୍ରାଣି
ଜୀବନ ପ୍ରଶ୍ନ ହୁଅଇ କି ସମାଧାନ ?
ଅଶ୍ରୁରେ ନାହିଁ ନାହିଁ ଗୋ ହର୍ଷେ ଶାନ୍ତି
ଅଲୋକେ ଉର୍ମିରେ ଉଠେ ନାହିଁ କାହିଁ ଭ୍ରାନ୍ତି ।
ସ୍ୱାର୍ଥ ଦହନ ଅଭିମାନ ଅଜ୍ଞ ଜିଣି
ଜୀବନର ପଥେ ଆସ ଗୋ ସନ୍ୟାସିନି ।

୪—ଜୀବନର ପଥେ ଫୁଟେ କେତେ ଜାତି ଫୁଲ,
ହସଇ ଜ୍ୟୋତ୍ସ୍ନା କାହିଁ ତାର ସମତୁଲ,
ଆସଇ ରଜନି ଆସେ ଆଲୋକର ଦୂତ,
ପ୍ରଣୟ ସହିତେ ଲାଗେ ବଡ଼ ଅଦ୍ଭୁତ—
ହସଇ ମୃତ୍ୟୁ, ନ ରେଖି କୁସୁମ ବୃଷ୍ଟି;
ଏ ସକଳ ମେଳେ ଏକଣେ କାହାର ସୃଷ୍ଟି ?
କାହାର ବିଧାନ ମଙ୍ଗଳମୟ ବିଧି ?
କାହା ଇଙ୍ଗିତେ ସକଳ ଲଭଇ ସିଦ୍ଧି ?
ଅଲୋକ ଉର୍ମିରେ ଏକାକାର ସାମ-ଗାନ
ମୃତ୍ୟୁ ଜୀବନେ ଅବିନଶ୍ୱର ପ୍ରାଣ !

ମଳିନ ସ୍ୱାର୍ଥ ଲଭେ ନାହି ତହିଁ ସ୍ଥାନ,
ବ୍ୟର୍ଥ ଅଶ୍ରୁ ଅବସାଦ ଅଭିମାନ,
ବହ୍ନିମୟ ତାର ପୁଣ୍ୟ ବିଧାନ ଶିରେ,
ସ୍ମର ସେ ଅନଳ ! ନିଭିଆସେ ଚିତା ଧୀରେ !

୫— ଏ ଜୀବନ ପଥେ ଗଲେଣି ଗୋ ଯେତେ ଚଳି,
ଜନନୀ ବସୁଧା ଶୁଣି ନାହିଁ କାର ଅଳି,
ଅକାଳେ କୁସୁମ ମଉଳି ପଡ଼ୁଛି ଝରି,
ତରୁଣର ଗୀତ କଣ୍ଠେ ଯାଉଛି ମରି,
ନିଭିଯାଏ ରୂପ ଯୌବନ କରି ମରୁ
ଝାଉଁଳେ ପୀରତି-ଲତିକାଶ୍ରୟ-ତରୁ;
ସକଳ ମାନବ ବନ ଅଜଗର ପ୍ରାୟେ
ବରଇ ନୀରବେ ଶୂନ୍ୟକୁ ଚାହିଁ ଗାଏ ?
"ପରାଣ ନିଃସ୍ୱ ଜୀବନଦେବତା ସ୍ୱାମୀ
ଚର ନଶ୍ୱର ସକଳ ଅନ୍ତର୍ଯ୍ୟାମୀ,
ଶୂନ୍ୟ ସରବ ଅସ୍ତ୍ର ମୋର ଯେ ଶଶୀ,
ଶୂନ୍ୟ ପୁଳିନେ ଭରସା ଯେ ତୋର ବଂଶୀ,
ବହ୍ନିଲୁ ଚେତନା ନିଃସ୍ୱ କରି ଏ ପ୍ରାଣ,
ନାହିଁ ମୋ ଶୋଚନା—ସ୍ଫୁରୁଛି ତୋ ପୀରତି ଗାନ !"

୬—ବହିଯାଏ କାଳ ଦିବସ ଦଣ୍ଡ ଲିତା
ସନ୍ୟାସିନି ଗୋ ସ୍ମର ସେଅନଳ ଚିତା !

ଲୋତକ ଅଶ୍ରୁ କାହିଁ ତାର ଅବକାଶ ?
ପରବାସି ଅଟେଗୋ ମିଳାଇଯାଏ ସେ ହାସ !
ମୁକତର ଗୀତ ଶୁଣି ଶୁଣି ଅଟେ ଦୂରୁ
ଶୁଭ୍ର ଅଙ୍ଗି ଅସ ଅନ୍ଧାର ପୂରୁ !
ସୌମ୍ୟ ମୂରତି ତବ ଶୌଚର ବେଶ,
ସନ୍ଧ୍ୟା ସମାନ ଶାନ୍ତ ରୁକ୍ଷ କେଶ,
ଦିବ୍ୟ ଦୃଷ୍ଟି ସ୍ଖଳିତ ନୁହେ ସେ ପାଦ !
ମରମେ ଅଶ୍ରୁ ଅନ୍ତର ଅବସାଦ !
ପୁଣ୍ୟର ବନ୍ଧୁ ! ଦେଖି ବଜସ୍ତିମା ରୂପ,
ସଙ୍କୁଚିତ ଗୋ ସ୍ୱାର୍ଥ ବେଦନା ସ୍ତୂପ
ମାନବର ତେଜେ ମରଇ ମୃତ୍ୟୁ ଡରେ
ଧନ୍ୟ ଏ ଭୂମି ପୁଣ୍ୟ ଚରଣ ତଳେ ।



## * କରମର୍ଦ୍ଦନ

କାଳ ବୈଶାଖ ! ତପ୍ତ ତଟିନୀ ବାଲି ।
ଦଗ୍ଧ ପଯ୍ୟର ବୃଦ୍ଧ ନ ପାରେ ଚାଲି,
ଶୁଷ୍କ କଣ୍ଠ, ତୃଷା ଉତ୍କଟ ତାର,
ଜଳ ଅଟେଶ ଖୁହିଁ ପ୍ରାଣି କରେ ହାହାକାର !
ନସ୍ତ ଭୁବନେ କାହିଁ କେହ୍ନ ନାହିଁ ଦଶେ,
ମୃଗ ତୃଷ୍ଣିକା ଜଳବେଣୀ ନୁହେଁ କି ସେ ?

---

କାଇଟର କଚେରୀରେ ମାମଲ ଲଢିବା ଆଶାରେ ଆସୁଥିବା ଜନୈକ ବୃଦ୍ଧ କାଠଯୋଡ଼ୀ ବାଲିରେ ଗ୍ରୀଷ୍ମ ତାପ ସହି ନ ପାରି ପ୍ରାଣ ହରାଇଥିବା ଘଟଣାକୁ ଲକ୍ଷ୍ୟକରି ।

ମଳିନ ସ୍ୱାର୍ଥ ଲଭେ ନାହି ତହିଁ ସ୍ଥାନ,
ବ୍ୟର୍ଥ ଅଶ୍ରୁ ଅବସାଦ ଅଭିମାନ,
ବହ୍ନିମଣି ତାର ପୁଣ୍ୟ ବିଧାନ ଶିରେ,
ସ୍ମର ସେ ଅନଳ ! ନିଭିଅଛେ ଶିଖା ଧୀରେ !

୫— ଏ ଜୀବନ ପଥେ ଗଲେଣି ଗୋ ଯେତେ ଚଳି,
ଜନନୀ ବସୁଧା ଶୁଣି ନାହିଁ କାର ଅଳି,
ଅକାଳେ କୁସୁମ ମଉଳି ପଡ଼ୁଛି ଝରି,
ତରୁଣର ଗୀତ କଣ୍ଠେ ଯାଇଛି ମରି,
ମାଭିଯା ଏ ରୂପ ଯୌବନ କରି ମରୁ
ଝାଉଁଲେ ପୀରତି-ଲତିକାଶ୍ରିତ୍ୟ-ତରୁ;
ସକଳ ମାନବ ବନ ଅଜଗର ପ୍ରାୟେ
ବରଇ ମାରବେ ଶୂନ୍ୟକୁ ଚାହିଁ ଗାଏ ?
"ପରାଣ ନିଃସ୍ୱ ଜୀବନଦେବତା ସ୍ୱାମୀ
ଚିର ନିଠିବର ସକଳ ଅନ୍ତର୍ଯାମୀ,
ଶୂନ୍ୟ ସରବ ଅସ୍ତ୍ର ମୋର ଯେ ଶଣୀ,
ଶୂନ୍ୟ ପୁଲକେ ଭରସା ଯେ ତୋର ବଂଶୀ,
ବାହୁଲି ଚେତନା ନିଃସ୍ୱ କରି ଏ ପ୍ରାଣ,
ନାହିଁ ମୋ ଶୋଚନା—ସ୍ପୃହୁଛି ତୋ ପୀରତି ଗାନ !"

୬—ବହିଯାଏ କାଳ ଦିବସ ଦଣ୍ଡ ଲିତା
ସନ୍ୟାସିନି ଗୋ ସ୍ମର ସେଅନଳ ଶିଖା !

ଲୋତକ ଅଶ୍ରୁ କାହିଁ ତାର ଅବକାଶ ?
ପରବାସି ଅଗୋ ମିଳାଇଯାଏ ସେ ହାସ !
ମୁକତର ଗୀତ ଶୁଣି ଶୁଣି ଅସେ ଦୂରୁ
ଶୁଭ୍ର ଅଙ୍ଗି ଅସ ଅନ୍ଧାର ପୂରୁ !
ସୌମ୍ୟ ମୂରତି ତବ ଶୈଚର ବେଶ,
ସନ୍ଧ୍ୟା ସମାନ ଶାନ୍ତ ରୁକ୍ଷ କେଶ,
ଦିବ୍ୟ ଦୃଷ୍ଟି ସ୍ଖଳିତ ନୁହେ ସେ ପାଦ !
ମରମେ ଅଶ୍ରୁ ଅନ୍ତର ଅବସାଦ !
ପୁଣ୍ୟର ବନ୍ଧୁ ! ଦେଖି ବିଜୟିନୀ ରୂପ,
ସଙ୍କୁଚିତ ଗୋ ସ୍ୱାର୍ଥ ବେଦନା ସ୍ତୂପ
ମାନବର ତେଜେ ମରଇ ମୃତ୍ୟୁ ଡରେ
ଧନ୍ୟ ଏ ଭୂମି ପୁଣ୍ୟ ଚରଣ ତଳେ ।



## * କରମର୍ଦ୍ଦନ

କାଳ ବୈଶାଖ ! ତପ୍ତ ତଟିନୀ ବାଲି ।
ଦଗ୍ଧ ପଯ୍ୟର ବୃଦ୍ଧ ନ ପାରେ ଚାଲି,
ଶୁଷ୍କ କଣ୍ଠ, ତୃଷା ଉତ୍କଟ ତାର,
ଜଳ ଅଟେଶ ଗୁହାଁ ପ୍ରାଣ କରେ ହାହାକାର !
ନସ୍ତ ଭୁବନେ କାହିଁ କେହି ନାହିଁ ଦିଶେ,
ମୃଗ ତୃଷ୍ଣିକା ଜଳବେଣୀ ନୁହେଁ କି ସେ ?

---

କଲଟର କଚେରୀରେ ମାମଲା ଲଢିବା ଆଶାରେ ଆସୁଥିବା ଜନୈକ ବୃଦ୍ଧ କାଠଯୋଡ଼ୀ ବାଲିରେ ଗ୍ରୀଷ୍ମ ତାପ ସହି ନ ପାରି ପ୍ରାଣ ହରାଇଥିବା ଘଟଣାକୁ ଲକ୍ଷ୍ୟକରି ।

ଝଙ୍କିଲ ସେହୁ ଶୂନ୍ୟ ଶିକତା ପଥେ,
ଗ୍ଭଲିଛ୍ଥି ବୃଦ୍ଧ ଅଶା ତା ଅଗ୍ରଗତେ ।
ଦୁର୍ବଳ ଶିର ଖରେ କରେ ଝାଇଁ ଝାଇଁ
ଘନ ଅନ୍ଧାରେ ଚକ୍ଷୁକୁ ଦଣେ ନାଇଁ,
ଅଗତ ମୃତ୍ୟୁ ଉଗାଳଇ ପଥେ ହସି—
"ବୃଦ୍ଧ ବନ୍ଧୁ ! କାହିଁ ଗ୍ଭଲିଅଛ ଧସି ?"
ବଙ୍କ ଦୃଷ୍ଟି ବୃଦ୍ଧ ଚକିତେ ଥୟ !
"ନ ପାରେଁ ଚିହ୍ନି ! ଦେବ କି ହେ ପରିଚୟ ?
ବନ୍ଧୁ ? ବନ୍ଧୁ ! ଶୁଣିଛି କଣ୍ଠସ୍ୱର,
ଦୁର୍ବଳ ସ୍ମୃତି ଚେତାଉଛି ନୁହଁ ପର !"
"ମୃତ୍ୟୁ ମୁଁ ଚିର ଯୌବନ ରହେ ଲାଗି,
ତୁମ ପାଶେ ଅଜି ଅସିଛି ଯୁଦ୍ଧ ମାଗି !
ଜୀବନ୍ତର ମୋହ ମାଦକତା କରେ କ୍ଷୁବ୍ଧ
ପ୍ରସ୍ତୁତ ହୁଅ ବୃଦ୍ଧ, ଦଅ ହେ ଯୁଦ୍ଧ !"
"ବନ୍ଧୁ, ହେ ଚିରଯୌବନ ! ମୁଁ ଯେ ବୃଦ୍ଧ,
ସ୍ଖଳିତ ଅଙ୍ଗେ ସମ୍ଭବ କାହିଁ ଯୁଦ୍ଧ ?
ପୁଣି ନାହିଁ ସ୍ପୃହା ! ଗୌରବ ମୋହ ଖର୍ବ !
ସପ୍ତସାଗର ଲଙ୍ଘିବା ତୁମ୍ଭ ଗର୍ବ !
ଦଅ ଦଅ କର, ଯାଉଛ କାହିଁକି ଖସି ?
କରମର୍ଦ୍ଦନ କରିବ ବୃଦ୍ଧ ହସି !"
"ସ୍ୱେଚ୍ଛାରେ ଯେଉଁ ବଶ୍ୟତା ସ୍ୱୀକାର,
ଯୁଦ୍ଧେ ବନ୍ଧୁ ପ୍ରୟୋଜନ କିବା ତାର ?
ବଢ଼ାଅ ସେ କର, କରମର୍ଦ୍ଦନ ଲାଗି,
ହସ ମୋର ତୁଲେ, କି ହେବ ଯୁଦ୍ଧ ମାଗି ?

—୧୬୦

"ଯୁଦ୍ଧେ ରମିଛୁ ସକଳ ଜୀବନବ୍ୟାପୀ,
ନାଭିନାହିଁ କ୍ଷତ ଚିହ୍ନ ଯେ ଅଦ୍ୟାପି,
ହାସ୍ୟ ଉପୁଜେ ? ମାନୁ ନାହିଁ ତୁମ ମନ ?
ନାହିଁ ନାହିଁ ଅଜ ସଂଗ୍ରାମେ ପ୍ରୟୋଜନ !"

"ମିଥ୍ୟା ଏ ଭାଷ ! ଶତ୍ରୁର ବହୁଛ ବନ୍ଧୁ !
ଚାହିଁ ଥିବେ ପଥ ପୁତ୍ର-ପୁତ୍ରବଧୂ,
ବୃଦ୍ଧା ପତ୍ନୀ ବନ୍ଧୁ ସୋଦର କନ୍ୟା,
ତୁମର ସେବାରେ ହେବେ ଯେ ସକଳେ ଧନ୍ୟା,
କହିବେ ବୃଦ୍ଧ ଯାଇଛୁ ମାମଲ୍ ଜିତ,
ଦୂର ପରବାସୁ ଫେରିଲେ ଲଭିବେ ପ୍ରୀତ ।"

ଭାଷଇ ବୃଦ୍ଧ "ବାକ୍ୟର ଅବକାଶ,
ନାହିଁ ଯେ ବନ୍ଧୁ ! ପ୍ରତିଦାନ ମୋର ହାସ !
ହାସ୍ୟ ଅଶ୍ରୁ ପଲିତ ପତ୍ର ପ୍ରାସ,
ପତ୍ନୀ-ପୁତ୍ର ଦୂର ଏ ଯେ ପରବାସ,
ବନ୍ଧୁ ! ସକଳେ ଜଣାଇବ ମୋର ହାସ !"

ମୁଦିଲା ନୟନ ବୃଦ୍ଧ ସିକତା ଶେଯେ,
ବ୍ରସ୍ତ ପଥିକ ବନ୍ଧୁକୁ କହେ "ଏ ଯେ,
ତୀକ୍ଷ୍ଣ ସୌରରଶ୍ମି ନ ପାରି ସହି,
ବହୁଛୁ ରୁଧିର ବୃଦ୍ଧ ତେଜିଲା ମହୀ !"



# ରମ୍ୟାରଲାଁ

[ ବିଂଶ ଶତାବ୍ଦୀର ଫରାସୀ ଦାର୍ଶନିକ,
ମନୀଷୀ ଓ ଶ୍ରେଷ୍ଠ ଲେଖକ ]

୧— ଜୀବନ ତମିର ପଥେ ଧ୍ରୁବ ତାରାସମ,
ଜହ୍ନୁଥିତ ସଭ୍ୟତା ଜଳ୍ପ ଅମୃତ ପରମ,
ପରମ ପୁରୋଧା ଅବା ତାକୁଛ ଅଶେଷ,
ସୃଷ୍ଟି ହିତେ ତୁମେ ରୁଦ୍ର ଶିବୁଅଛ ବେଶ ।
ଅକ୍ଳାନ୍ତ ସୈନିକ ଭେଦ ଅନ୍ଧକାର ବ୍ୟୂହ,
ଅଗ୍ରସର ନିର୍ବିକାରେ ! ତୁଙ୍ଗ ମହୀରୁହ !
ଦୀର୍ଘପଥ ଅତକ୍ରମି କ୍ଳାନ୍ତ ନାହିଁ ଜାଣ,
ଚିର ଅଗ୍ରଗତ ଦୀକ୍ଷା ଜାଣେ ସେହୁ ପ୍ରାଣ !
କେବଳ ଚ୍ଛଲିବା ପଥ ! ଚ୍ଛଲିବାରେ ମୁକ୍ତି !
ପାଥେୟ ସଙ୍ଗତେ ଶତ ଅତୀତର ସ୍ମୃତି !
ନାହିଁ ଅଶ୍ରୁ, ନାହିଁ ଖେଦ, ନାହିଁ ଅବସାଦ,
ଅନନ୍ଦ ହାସ୍ୟ ପ୍ରୀତର ତକ୍ତ ପରମାଦ—
ସବୁ ଏଡ଼ି ସତ୍ୟ ଏକା ହେବା ଅଗ୍ରଗତ !
ଯେନ ନିଃସ୍ବ ପଥିକର ଅନ୍ତର ପ୍ରଣତ !

୨— ହେ ନବୀନ-ପରିବ୍ରାଜ ବିଶ୍ବ ତପୋବନେ !
ସଦା ଧ୍ୟାନରତ ତପଃକ୍ଳିଷ୍ଟ ସେ ଆନନେ,—

ଅଙ୍କିତ କାଳର ରେଖା ! ଅନ୍ତର ବିଚ୍ଛିନ୍ନ,
ଶୋଣିତ ଆପ୍ଲୁତ ! ନିଭିନାହିଁ କ୍ଷତ ଚିହ୍ନ
ସଂଗ୍ରାମର, ବିସ୍ମୃତ ବା ଅତୀତର ଗ୍ରାସ !
ଲଭିଛି ମଳିନ ଓଷ୍ଠେ ବିଜୟୀର ହାସ !
ଅତୁଳ ମାଧୁର୍ଯ୍ୟେ ମୃତ୍ୟୁ ରହେ ଅବା ହସି
ମୁଖେ ଅମରତ୍ୱ ବାର୍ତ୍ତା ଉଠଇ ଚହଟି !
ମୃତ୍ୟୁ ନାହିଁ, ମୃତ୍ୟୁ ନାହିଁ, ଅନ୍ଧକାର ଭେଦ,
ଅମୃତ ପରଶି-ସୂର୍ଯ୍ୟ ନିତ୍ୟ ଚଳେ ଖେଦ,
ପୁଣି ଜନ୍ମ ପୁଣି ମୃତ୍ୟୁ ଯାହା ନୁହେଁ ଶେଷ,
ବିକଶିତ ଲୀଳାପଦ୍ମ ସୁମଧୁର କ୍ଳେଶ ।
ଅନନ୍ତ ସେ ଦୀର୍ଘ ବସ୍ତୁ ନୁହେଁ ଭାଜିବାର,
ଦେଉନ ଦୀନ ଆନନ୍ଦାଶ୍ରୁ ପ୍ରୀତି ନମସ୍କାର ।



## ପ୍ରଥମ ଆସାର

ପ୍ରଥମ ଆସାର ଦୁର୍ଦ୍ଦିନ ଘନବ୍ରାତ,
ରୁଦ୍ରାନନ୍ଦେ ପୁଲକ ଉଠଇ ସ୍ଫୀତ,
ଗରଜି ବଜ୍ର କରଇ ଅଟ୍ଟହାସ,
ସ୍ନିଗ୍ଧ ଭୂମିରେ ପରବାସେ ମରେ ତ୍ରାସ ।
ଚମକେ ବିଜୁଳି ଘନ ଅନ୍ଧାରେ ପରା,
ମିଳନ ଝଲକେ ପୀରତି ନ ଦିଏ ଧରା,
ଉଜ୍ଜ୍ୱଳ ହାସେ ଗଗନେ ଦିବ୍ୟକାନ୍ତି,
ଫୁଟଇ ଅବା ସାଧକ ପରମ ଶାନ୍ତି ।

ମନ୍ଦରେ ତୋର ଜଳେ ନାହିଁ ଅଳ୍ପ ଦୀପ,
ହୃଦ ପଡୁଛୁ ତୋ ପୀରଛ ପାଦପୁଁ ନୀପ,
ମଧୁର ମାତର ଏ ରଜନୀ ଅଭିସାର,
ମଧୁର ଅଜ ତୋ ଅନ୍ତର ହାହାକାର ।
ଶୂନ୍ୟତା ବାଧେ ? ଭର ତୋ ବ୍ୟଙ୍ଗ ହାସେ,
ବଜ୍ର ଯେସନେ ଗର୍ଜେ ଡମିରୁକାଶେ,
ଶୀତଳ ପବନ, ଶୀତଳ ଦହନ ଅଜ,
ଦୂର ଗଗନର ନିଶ୍ୱାସ ତୋର ।
ମରମେ ଉଠଇ ବାଜ !
ନୀରବେ ଫେରଇ ନୀରବ ନୟନ ଗୀତ
ଶୂନ୍ୟତା ଭରେ ଦୂର ମୂର୍ତ୍ତର ପ୍ରୀତ,
କ ଭାବନା ତୋର, ହେ ପଥିକ ପରବାସୀ ?
ବଢ଼ାଏ ତୋ ପଥ ସୁଦୂରର କାଣହସୀ ।
ଦୁର୍ବହ ଭାର ପଛେ ତୋର ରଙ୍ଗି ଅସ,
ଅମୂଲ୍ୟ ତୋର ପାଥେୟ ବ୍ୟଙ୍ଗହାସ,
ସବୁ ସଙ୍କୋଚ ଜୀବନ ଦୈନ୍ୟ ମସୀ,
ବଜ୍ର ସନ୍ଧତେ ଉଠୁଁରେ ଉଠେ ହସି ।
ବ୍ୟଙ୍ଗ ହାସେ୍ୟ ଉଜ୍ଜ୍ୱଳ ଉଠୁ ସେ ହୃଅ,
ହସି ଉଠୁ ଅଦ ନାଃସ୍ୱ ବରହୀ ପ୍ରିୟା,
ଅଜ ଅନ୍ଧାରେ ମୃଦୁ ପରାଣର ପ୍ରୀତ,
ବନ୍ଧନ ଭୁଲ ସ୍ଫୁରୁ ନତ୍ରା ଲଣ୍ଠୁ-ଗୀତ ।



## ପ୍ରଭାତୀ

ଦୁର୍ଦ୍ଦିନ ତମ ହାଣି    ଫୁଟିଉଠେ ତାର ବାଣୀ
ଜାଗ୍ରତ, ଜାଗ୍ରତ ପାନ୍ଥ,
ସୁପ୍ତି ତୋ ନାହିଁ ସାଜେ  ବନ୍ଧନ ମୋହ ତ୍ୟଜେ
ମରଇ ଅଲୋକେ ଗ୍ଳହିଁ ଧ୍ୱାନ୍ତ ।
ଅସରଳ ସକଳ ତୋ ସରଳ,
ଅମୃତ ହେବ ଅଜି ଗରଳ,
ଅନ୍ଧାର ଭେଦ ଗ୍ଳଲ୍ ଅଚଳ !
ଅହ୍ୱାନ ଅଣେ ଅବିଶ୍ରାନ୍ତ !
ଜାଗ୍ରତ, ଜାଗ୍ରତ ପାନ୍ଥ ।
ଅସ୍ତ୍ର ସାଗର ପାରେ    ଶତ ବିଫଳତା ହାଣି
ଉଇଁଛିରେ ଜୀବନର ସୂର୍ଯ୍ୟ !
କିବା ବନ୍ଧନ ଭୀତ ?    ଗାଅରେ ବିଜୟ ଗୀତ
ମନ୍ତ୍ରେ ଡାକଇ ତାର ତୂର୍ଯ୍ୟ;
ତୋଳି ଧର ଉଡେ ତା ଧ୍ୱଜାରେ,
ତା ବିଜୟ ଦୁନ୍ଦୁଭି ବଜାରେ,'
କମ୍ପିବ ମରଣର "ମଜ୍ଜାରେ
ପଥ ତୋର ଗ୍ଳହିଁ ବସେ  କାନ୍ତ !
ଜାଗ୍ରତ, ଜାଗ୍ରତ, ପାନ୍ଥ ।
ଖସିପଡୁ ଅନ୍ତରୁ ତୁଚ୍ଛ ଜଡ଼ତା ଭୀତ
ସନ୍ଦେହ  ସକଳ କ୍ଲୀବତ୍ୱ,
ମିଥ୍ୟାର ମୋହ ଭେଦ—ମଙ୍ଗଳ ଅଶ୍ୱାସ

ଜୀବନେ ହେଉରେ ଅଜ୍ଞ ସତ୍ୟ ।
ଜଳଇ ତା ହୋମାନଳ ପୂର୍ଣ୍ଣ
ସକଳ ଅଶିବ ସବୁ ଘୃଣ୍ୟ,
ଭସ୍ମ ନରେଖ ତହିଁ କ୍ଷୁଣ୍ଣ,
ପ୍ରଣମି ଚଳ ତୁ ପଥେ ଭ୍ରାନ୍ତ;
ଜାଗ୍ରତ, ଜାଗ୍ରତ, ପାନ୍ଥ ।



## ଗ୍ରାମ୍ୟ-ପ୍ରଣୟ

କହିଲ ତନ୍ୱୀ "ଛି ଛି ଲଗୁନାହିଁ ଲଜ ?
କି କହିବେ ଲୋକେ ? ଦିନଗୋଟା ଗଲା ଅଇ,
ପଥେ ଘାଟେ କେହୁ ଦେଖିନାହିଁ ତୁମ ଛାଇ,
ଫଟା କପାଳକୁ କି ନିଶାରେ ହେଲ ବାଇ !
"ବୋହୂ ଝିଅ ମୋତେ ଦେବେ ନାହିଁ କାଲି ବାସ,
ସହୁ ନୁହେଁ ଭଲେ ସେ ଠାପରି ପରିହାସ ।
ଗାଆଁ ପଧାନେ ଯେ ଗଲେ ଏଇ ପଥେ ଡାକି,
ଜଳାକବାଟିରେ ଦିଶିଲେ ନାଲି ଅଖି ।
"ଛରାଟି ଶୁଣିଲେ ଗଲନାହିଁ ତାଙ୍କ ପାଶେ,
ବାଙ୍କୀ ମୂଳଗଣ୍ଡା ନ ଧାଇଁଲେ କାହୁଁ ଅସେ ?
ସଞ୍ଜଲଗି ଅସେ ପୋଡ଼ଯାଏ ମୋର ମୁହଁ,
ବାମଦାମ ଛାଡ଼ ନ ବସିବ ଦେହ ଛୁଁଅ !"
କହୁଁ ପ୍ରିୟା ଖେଳଖଞ୍ଜନ ଅଖି ଥିର,
ନବ ଅନୁରାଗେ ପୁଣି ଢଳଢଳ ନୀର,

ଭାସଇ ତରୁଣ ବାଳାସ୍ତ ତାର ଦେହ,
ଅତଳ ସାଗରୁ ସୁଗଭୀର ତାର ସ୍ନେହ ।
"କୁଟିର ଅଲୋକ ଶୂନ୍ୟ ହୃଦୟ ରାଣୀ
କାହିଁକି ବସିଛୁ କେସନେ ପାରବୁ ଜାଣି ?
ପିଅଇଛୁ ଯେତେ କୋମଳ ଅଧର ସୁଧା,
ବଢେ ଅସରା ଦେଇଛୁ, ଯେତେବେ ତ କ୍ଷୁଧା—
ନିଭୁନାହିଁ ତଳେ ପିପାସା ପରାଣ ରାଣି,
ଯେତେ ଯେ ପିଇଲେ ଛଣା ସୁଧା ସେଇ ବାଣୀ,
କେଉଁ ରାଇଜର କବା ତୁ ନ ପାରେଁ ବୁଝି
ଖୁହିଁ ତୋର ଅଖି ଅଟେ ମୋ ନୟନ ମୁଦ ।
"ପରାଣ ବନ୍ଧୁ ଦୁଃଖୀ ହୃଦୟରାଜ !
ଅଭାଗିଣୀ ମୁହିଁ, ଦାଅ ନାହିଁ ଅଉ ଲାଜ ।
କବା ମୋର ରୂପ ? ସଂସାର ରୂପଖଣି !
ଅକାଶର ତାରା ପାରବ କି ତୁମେ ଗଣି ?"
"ରୂପେ ଗୁଣେ ତୁମ ପାଦକୁ ନୋହେ ମୁଁ ସର,
ତୁମେ କାୟା, ମୁଁ ଗୋ ତୁମର ସେ ଛାୟାପର,
ତୁମର ଗୁଣେ ମୁଁ ବାସିବି ଜଗତେ ସିନା,
ତୁମେ ମୋର ପ୍ରଭୁ ତୁମ ପଦେ ମୁଁ ଗୋ କଣା ।
ସହିପାରେଁ ନା ମୁଁ ତୁମ ପଜରୁଷ ହାନ
ବୂଲଅସ ଯେବେ ଛାଡ଼ ମୋ ପଣତକାନ !"
"ଛାଡ଼ ତୋତେ ଏକା ଅଜରେ ପରାଣ ସହ,
କାହିଁ ଯିବାକୁ ତ ମନ ତଳେ ବଳ୍ଲ ନାହିଁ ।
ନୟନେ ଯୋଡ଼ାଇ ରଖିଛୁ କି ପରମାଦ,
ନ ଫେରେ ମୋ ଅଖି, ଚଳୁନାହିଁ ମୋର ପାଦ ।"

' ଅସରନ୍ତ ସୁଧା ସାଗରକୁ ଖାଲି ଚାହିଁ,
ଲେଉଟି ଆସିବା ଦେଖିନୁ କାହାକୁ କାହିଁ ?
ପିଇବାକୁ ଗୋଟିପାକ ଛନଛନ ମନ,
କେତେ କଥା ଭାବିଲେଁ, କହିପାରେ ନାହିଁ ଧନ !
ସକଳ ଭାବନା ଭୁଲେ ମୁଁ ତୋ ଦେହବାସେ
ସବୁ ପଡ଼ିରୁଷ, ନିନ୍ଦା ନଭେ ସେ ହ୍ଲାସେ !"
"ଦୁ ଦିନର ମୋହ ପରମାଦ ମୋର ବନ୍ଧୁ
କି କରିବ ପୁଣି ସବୁଗଲେ ଦିନେ ମଧୁ ?
କାଲିପାଇଁ କିଛି ଥାଉ ! ବୁଲିଆସ ଯାଇଁ,
ଏତେବେଳେ ଗୋଠୁଁ ନ ଫେରିଲେ କିଆଁ ଗାଈ,
ଜଳିବ ଯାଉଛି ସଞ୍ଜ, ଦେବି ମୁଁ ବଢ଼ା ।
ପିବି ମୁଁ ପାଣିକି ପୁଣି, ଛାଡ଼ ମୋର କଢ଼ା ।"
"ଅଙ୍ଗୁଳି ବସି ଗଣୁଛି କି ହେବ ଅବା ?
ବହୁବେଳ ବସି ଶିଖିଲ ଯେ ମୋର ଗଭା;
ଛାଡ଼ ହାତୁ ହାତ, ପିନ୍ଧେ ଶିଥିଳ ବାସ,
ମରିବାକୁ ଢଳେ ଦେବ ନାହିଁ ଅବକାଶ ?"
ଏତେ କହି ପ୍ରିୟା ଉଠିଯାଏ ତରତର,
ବିହ୍ୱଳ ଯୁବା ଧରି ଟାଣେ ତାର କର,
ବିନୟ ସୋହାଗ କଣ୍ଠେ "ରହନା" କହେ
"ରହଗୋ ଦଣ୍ଡେ ମନ୍ଦ ମରୁତ ବହେ !"
"ତୋ ପରି ଚନ୍ଦ୍ର ଦୂରୁ ହସି ହସି ଆସେ,
ମଲ୍ଲୀ କେତକୀ ସମାନ ତୋ ଦେହ ବାସେ,
ଦୂରବଣୁ ଡାକେ କୋଇଲି ତୁହାଇ ତୋତେ,
ରହଢଳେ ଆଉ, ଛାଡ଼ ଯାଅ ନାହିଁ ମୋତେ ।

"ଦଦନର ମୋହ ଦଦନର ରୂପ ସ୍ମୃତି ?
ସାର୍ଥକ ମୋର ଜୀବନ ବନ୍ଧୁ ସେ ସ୍ମୃତି !
ତା ପରେ ବରଷା ଅଶେଷ କଷଣ ମୋର,
ପରବଶ ଦେହେ କେତେ ଲଙ୍ଗଳ ଗାର !
ବଜ୍ରର ସ୍ୱରୁ ଗରଜନ ତମ ଘୋର,
ପଙ୍କେ ସଲିଳେ ମୃଣି ନାଶ ମତିବାର !

"ସକଳ କଷଣ ସକଳ ମୋ ଅନୁଭୂତି,
ସହଜ କରବ ଅଙ୍ଗୀକାର ତୋର ସ୍ମୃତି ।
ବସ ପାଶେ ଅଙ୍କ ନିଷ୍ଠୁର ହୃଦ ଅଭ,
ନିନ୍ଦା ଝାପର୍ ଯେ ଭରବ କରୁଥାଉ ।
ଗହନ କାନନେ ଫୁଟିଥିଲୁ ଫୁଲ୍ ଏକା
ବିଧାତା କରୁଣା ଯୋଗେ ତୋହ ତୁଲେ ଦେଖା
ତୋଳିଛୁ ଅଦରେ ରଖିବାର ଥାନ କାହିଁ ?
ରୂପ ତେଜେ ମରେ କୁଟୀର ଲକ୍ଷ୍ମୀ ପାଇ
ସବୁ ସମ୍ପଦ କସ୍ତୁରୀ ମୃଗସମ,
ସମ୍ବାଦ ଦୂରେ ଭରମିବା ଅଧରମ ।
ଖସିଛୁ ଅଳକ ନୟନ ସନ୍ନିଧାନେ !
ଭରବା ଫୁଲ୍ଟା ଖୋସିଦିଏଁ ରହ କାନେ ।
ମାୟା ମୃଗ ଅବା ଅସିଅଛୁ ହୋଇ ବଣା
ମର୍ତ୍ତ୍ୟ ସରଗ ପଡ଼ୁନାହିଁ ମୋତେ ଜଣା,
ଏତେ ଶୋଭା ତୋର କେଉଁ ଫୁଲ୍ କଲୁ ସ୍ନେହ
ରହ ଅଭ ଥରେ ଦେଖି ନିଏ ଭଲ କରି ?"

ତୁମ୍ଭେ ତରୁଣୀ ତରୁଣ ନୟନ ହସି !
ଶତଯୁଗ ବ୍ୟଥା ଦୁଃଖ ସ୍ୱପ୍ନ
ପଶ୍ଚାତେ ଯାଏ ବା ଖସି !



## ପ୍ରଣୟର ଆଦ୍ୟ ଅନୁନୟ

୧—କାହିଁ ପାଇଁ କୌତୂହଳ ? ନିରୁଦ୍‌ବେଗକର ବନ୍ଧୁ ମନ !
କି ଭାବ ହେବ ମୋର ଯୁଗବ୍ୟାପୀ ସୂକ୍ଷ୍ମ ଅବରଣ ?
ବିନୟୀ ଗ୍ରହୁରୀ ଭଙ୍ଗୀ ବ୍ରୀଡ଼ାନତ ମୋ ନୟନ ତଳେ,
ତୀବ୍ର ଅଭିଳାଷ ତବ ଦେଖିବାକୁ କି ଅଲୋକ ଜଳେ ?
ଗୋଲାପ ମାଧୁରୀ ଅବା ପଦ୍ମ ଗନ୍ଧେ ନୁହ ବନ୍ଧୁ ତୁଷ୍ଟ ?
ଛିନ୍ନ କରେ ବୃନ୍ତ ଦଳ ଯେହ୍ନେ ବୈଜ୍ଞାନିକ ଦୂରଦୃଷ୍ଟ
ଜ୍ଞାନର ପିପାସା ଲାଗି, ତା ମାଧୁର୍ଯ୍ୟ କରି ଛିନ୍ନ ଭିନ୍ନ
ସ୍ୱର୍ଗୀ ଦେଖି ରୂପ ତଳେ କି ଅଲୋକ ଜଳେ ନିଶି ଦିନ ?
ଶାନ୍ତ କୌତୂହଳ ତବ ? ନ କର ସେ ବିଫଳ ପ୍ରୟାସ !
ତୃପ୍ତି ବିନିମୟେ ବୃଥା କିଣି ନାହିଁ ଅଶେଷ ନୈରାଶ୍ୟ !
ଜୀବନର ନଗ୍ନ ରୂପେ ଏ ଧରାର ସୌନ୍ଦର୍ଯ୍ୟ ପିପାସୁ
ଅମରାବତୀରୁ ଅବା ବିଶ୍ୱ ସୃଷ୍ଟି ସୌନ୍ଦର୍ଯ୍ୟ ପ୍ରକାଶୁ,
ରେଖେରଇ ସମ୍ପଦ ଶୋଭା ନାରୀ ଅଙ୍ଗ କରିଛି ଭୂଷଣ,
ଛିନ୍ନ କର ନାହିଁ ତାକୁ ! ଘେନ ମୋର ଦୀନ ନିବେଦନ !

—୧୭୦

୨—ରହୁ ନାହିଁ ଧୃତ ସଖା ? ଘନ ଘନ ଟାଣୁଛୁ ଉଚ୍ଛ୍ୱସି—
ପ୍ରଗଲ୍‌ଭ ସମୀର ଯେସନ୍ତେ ଯାଏ ଦୋଳି ବାସନ୍ତୀ ବଲ୍ଲରୀ !
ନୁହଁ ତୃପ୍ତ ଦେଖି ମୋର ନିମୀଳିତ ଚକ୍ଷୁ, ମନ୍ଦ ହାସ ?
ତରୁଣୀ ଅମ୍ଭାର ଲୋଡ଼ ବନ୍ଧୁ ତେଣୁ ମୋ ନଗ୍ନ ପ୍ରକାଶ ?
ଲଜ୍ଜ୍ୟାରେ ମୁ ଯାଏଁ ସଢ଼ି ! ଦେଖି ତୁମେ ହେଉଛ ବିମର୍ଷ ?
ଅପ୍ରକାଶ ମୋ ଆନନ୍ଦ ତୃପ୍ତି ଲଭି ତବ ପୁଣ୍ୟ ସ୍ପର୍ଶ !
ବିଳମ୍ବ ନ ସହେ ତିଳେ ? ଧର ଧୈର୍ଯ୍ୟ ଚିର ପ୍ରାଣଧନ,
ବ୍ୟର୍ଥକର ନାହିଁ ଚିର ନିଃସ୍ୱ ପ୍ରାଣ ପୂଜା ଆୟୋଜନ !
ଅମୂଲ୍ୟ ପବନ ସ୍ପର୍ଶ ! ଅଦୃଷ୍ଟ ମୋ ଦେବତା ସାନ୍ନିଧ
କି ଦେବ ତା ପ୍ରତିଦାନ ଭାଳି ଲାଜେ ମରେଁ ଚିରସ୍ନିଗ୍ଧ !
ନଗଣ୍ୟ ମୋ ଦାନ ତୁଚ୍ଛ, ଅପୂର୍ଣ୍ଣ ମୋ ଏ ନୈବେଦ୍ୟ ଥାଳି,
ଆରାଧ୍ୟ ମନ୍ଦିର ଦ୍ୱାରେ ତେଣୁ ବେଲ ଯାଏ ମୋର ଭାଳି ।
ମନ୍ଦିରେ ଦେବାକୁ ପାଦ ଥରେ ଦେହ ଶତଗୁଣ ବ୍ୟଥା,
ତୁଚ୍ଛ ରୂପ ବନ୍ଦ ବୃଥା ଲଜ୍ଜା ଦିଅ ଆରାଧ୍ୟ ଦେବତା !

୩—ପ୍ରଣୟ ପ୍ରଥମ ସ୍ପର୍ଶେ ମଧୁର ଏ ନିଭୃତ ମିଳନେ,
ନ ପାରେଁ ସମ୍ଭାଳି ବନ୍ଧୁ ତନୁ ଲତା କମ୍ପେ କ୍ଷଣେ କ୍ଷଣେ !
ସହସ୍ର ପ୍ରୟାସେ ଭୀରୁ ନୟନ ଯୁଗ ନୁହେ ଉନ୍ମୀଳିତ,
ଅଦୃଷ୍ଟ ସାଗର ପାରୁ ଯେସନ୍ତେ ଧୀରେ ଅମର ସଙ୍ଗୀତ
ଭାସି ଆସେ ସମୀରଣେ ! ଚତୁର୍ଦ୍ଦିଗ କୌମୁଦୀ ପ୍ଲାବିତ !
ବସିଛ ନା ତୁମେ ବନ୍ଧୁ ?—ଚିରାରାଧ୍ୟ ପ୍ରଣୟ ବାଞ୍ଛିତ ?

ତୁମର ସନ୍ନିଧେ ଅଜ ଧନ୍ୟ କର ମୋ ହୃଦୟ ରାଜ,
ଝୁହିଁବ କ ମୁଖ ଟେକ ? ତୀବ୍ର ଇଚ୍ଛା ! ମାତ୍ର ଲାଗେ ଲାଜ !
କାହିଁକି ଅସ୍ଥିର ତୁମେ ? ପଶୁରୁଛ ଦର୍ଶନ ବାସନା ?
ନାହିଁ, ନାହିଁ ! ନୟନ ମୋ ଦେଖାଇଛୁ ଜୀବନେ ଛଳନା !
ଦେବତାର ସ୍ପର୍ଶ ସମ ତୁମ ଅଙ୍ଗ ଗନ୍ଧ ଯାଏ ଛୁଇଁ,
ଯେସନେ ବାସନ୍ତୀ ସନ୍ଧ୍ୟା ଅନ୍ଧକାରେ ମୁକୁଳର ଭୂଇଁ;
କୁସ୍ତିତ ସୁନ୍ଦର ଅଜ ! ମର ପ୍ରାଣ ପ୍ରତୀତ ଅମର !
ଏ କୌମୁଦୀ-ସ୍ୱପ୍ନ-ଲୋକେ ବନ୍ଧୁ ମୋ ଜୀବନ ଦାନଭର !

୪—ଏ ନଶ୍ୱର ଦେହ ପରେ ଗଢ଼ିଲେ ଯେ ଦେବତା ମନ୍ଦର,
କଳୁଷ କାଳିମା ପରେ ପୁଣ୍ୟ ପ୍ରଭା ଯେବା କଲେ ସ୍ଥିର,
କଲେ ଦେବ-ଯୋଗ୍ୟ,ଦୀନା ନାରୀ ନମେ ଭକ୍ତି ପ୍ରୀତିଭରେ !
ସାଗର ମନ୍ଥନ୍ତୁ ଅବା ଅମୃତର ସନ୍ଧାନ ଅନ୍ତରେ !
ଦେବତାର ପ୍ରିୟ ତୁମେ, ବନ୍ଧୁ ମୋର ଦେବତାର ଦାନ,
ସେ ଅନ୍ତର ଶୁଭ୍ର ପୂତ ଅମୃତର ନିତ୍ୟ ଅଧିଷ୍ଠାନ !
ଖସିଛୁ ବାସନା-ମୋହ, କାହା ପୁଣି କ୍ଷଣେ ଚପଳତା ?
ସ୍ଥିର ହୁଅ ! ଦେବତାର ଦାନେ କର ଅବନତ ମଥା !
ଅଜର ଏ ପୁଣ୍ୟ ଲଗ୍ନ ଜୀବନରେ ହେଉ ଗୋ ଅମର,
କ୍ଷଣେ ସ୍ପର୍ଶ ଅନୁଭୂତ, ନୀରବ ଏ ନିସ୍ତବ୍ଧ ବାସର,
ଏ ପ୍ରଣୟ ପବିତ୍ରତା, ଧନ୍ୟ କରୁ ବ୍ୟାକୁଳ ଜୀବନ !
ମାନବର ଭାଗ୍ୟ ଡୋରି ଧରି ପଛେ ହସୁ ଗୋ ମରଣ ।
ଲଜ୍ଜା ଅବରଣ ମୋର ବନ୍ଧୁ ପୁଣ୍ୟ-ସୌନ୍ଦର୍ଯ୍ୟ-ସମ୍ବଳ,
ନମ୍ରେ ତାର ପୁଞ୍ଜୀଭୂତ ସଂଗ୍ରାମର କଳୁଷ-ଗରଳ ।



# ବନ୍ୟା ବିପ୍ଳବ—

୧—ବନ୍ୟା ବନ୍ୟା ଚତୁର୍ଦ୍ଦିଗେ ପ୍ରଳୟ ପ୍ଳାବନ !
ଲକ୍ଷ ଅର୍ତ୍ତକଣ୍ଠ ଡାକେ ରଖ ନାରାୟଣ !
ଅନାଥ ଶରଣ ପ୍ରଭୁ ଅଶ୍ରୁ ନିବେଦନ,
ବିକଳ ପ୍ରାର୍ଥନା ସତେ ହେବ ଅକାରଣ ?
ବିଫଳ କି ହେବ ଅସହାୟ ହାହାକାର,
ନ ଫିଟିବ ରୁଦ୍ଧ ତବ ମନ୍ଦିର ଦୁଆର ?
ମରଣ ପ୍ରଖର ସ୍ରୋତେ ଯିବେ ତେବେ ଭାସି—
ମୂକ ପଶୁ ସମ ଜନ ପ୍ରାଣୀ ରାଶି ରାଶି ?
ନୀରବେ ରହିବ ତୁହିଁ ମୂକ ଶିଳା ସମ ?
ନିଷ୍ଠୁର ଏ ନୀରବତା ତୁମରି ଧରମ ?
ନ ଟଳିବ ତଳେ ତୁମ ନିଷ୍ଠୁର ବିଧାନ ?
ମଳିନ ସକଳ ଦମ୍ଭ ଜ୍ଞାନ ଅଭିମାନ ?
ସୃଜନ ପ୍ରଳୟ ତବ ନିତ୍ୟ ମହୋତ୍ସବେ
ନିର୍ବିକାରେ ତବ ଶଙ୍ଖ ନିର୍ଘୋଷେ ନୀରବେ !

୨—ଉଠେ ହସେ ଜଳ ସ୍ରୋତ ! ପ୍ରବଳ ଗର୍ଜନ !
ପ୍ରାଣ ଭିକ୍ଷା ଶୁଣି ବ୍ୟଙ୍ଗ କରଇ ମରଣ !
ଉପହାସ କରେ ବାତ୍ୟା, ଭାସିଯାଏ ତରୀ,
ମରଣ ଗରବେ ତରୁ ଜୀର୍ଣ୍ଣ ପତ୍ର ପରି !

ନିଷ୍ଫଳ ବେଦନା ଅଶ୍ରୁ ଆତ୍ମସମର୍ପଣ,
ଆତ୍ମ ତ୍ୟାଗ ସେବା ନିଷ୍ଠା ଜଳ ନିମଗନ
ପାପ ପୁଣ୍ୟ ରାଶି ଦବା ସବୁ ଏକାକାର,
ଧର୍ମାଧର୍ମ ଭେଦ ବୁଦ୍ଧି ମାନସ ବିକାର,
ଲୁପ୍ତ କରି ବହି ଯାଏ କାଳ ବନ୍ୟା ସ୍ରୋତ,
ମାନବର ପ୍ରଜ୍ଞା ଯେବେ ଅସହାୟ ପୋତ !
ସବୁ ମିଥ୍ୟା କରି ପ୍ରଭୁ ହୁଏ ପରତୀତ
ଅଲଙ୍ଘ୍ୟ ବିଧାନ ତବ ! ମଙ୍ଗଳ ସଙ୍ଗୀତ—
ମୃତ୍ୟୁ ଗର୍ଜ୍ଜନ ରଣି ମାଗେ ପରାହତ ଜନ,
ତୁମ ଦୀପାଲୋକେ କର ତମିର ହରଣ !

୩—ମରିବୁ ସକଳ ଜନ ମୂକ ପଶୁ ସମ ?
ଏ ସକଳ ହାହାକାର ଆତ୍ମନିବେଦନ—
ନିଷ୍ଫଳ ହେବ କି ସତେ ପରାଣ ଦେବତା ?
ନ ଫିଟିବ ରୁଦ୍ଧ ଦ୍ୱାର ? ନ ବାଜିବ ବ୍ୟଥା ?
ମରିବୁଁ ନୀରବେ ନିଷ୍ଟେ ମରିବୁଁ ମାତର,
ତୁମ୍ଭ ନାମ ନିଷ୍ଠୁରତା ଗାଇବୁଁ ନିକର,
ଉଚ୍ଚସ୍ୱରେ କମ୍ପାଇ ଏ ଅସୀମ ଗଗନ,
କରି ନମସ୍କାର ପ୍ରଭୁ ବରିବୁଁ ମରଣ !
ଯାହାର ଇଚ୍ଛାରେ କୋଟି ଗ୍ରହ ଚନ୍ଦ୍ର ତାରା,
କରନ୍ତି ବିହାର ଅବନତ ସୃଷ୍ଟି ସାରା,
ମୁଷ୍ଟିମେୟ ନିଃସ୍ୱଜନ କିବା ଆମେ ଛାର ?
ନୀରବେ ବିଧାନ ତବ କରିବୁଁ ଟ୍ରସ୍ତର ।

ନିଅ ଅଶ୍ରୁ ସୃଷ୍ଟି ସ୍ଫୀତ ପ୍ରଳୟ କରତା
ଜଳସ୍ରୋତେ ଭାସିଯିବୁ ନାହିଁ ତଳେ ବ୍ୟଥା ।

୪—ଦୁର୍ଭେଦ୍ୟ ଏ ମରଣର ଅନ୍ଧକାର ଭେଦ
କରେ ବହ୍ନି ଆଶା ଦୀପ ଆସ କିଏ ଖେଦ ?
ନିଃସ୍ୱର ଜୀବନ ଦାତା ? ମାନବ ସେବକ ?
ଦେବତାର ଦୂତ ଅବା ? ରଖ ପ୍ରାଣ ରଖ !
ଲକ୍ଷ ମୂକ ଜନଙ୍କର ଉଡ଼ଇ ଜୀବନ,
ପାଞ୍ଚଧନ ହେଲା ପିଣ୍ଡେ ପଡ଼ି ନାହିଁ ଅନ୍ନ !
ନୀରବେ ଗଲେଣି ଭାସି ମୂକ ପଶୁ ଯେତେ
କରନ୍ତି କଳନା କେହି ? ବାକି ଜଣି କେତେ—
ନୀରବେ ରହିଛନ୍ତି ଶୁଣି କାଳର ଆହ୍ୱାନ,
ଦେବତାରୁ ବଳି ତୁମେ, ରଖ ରଖ ପ୍ରାଣ !
ସାମାନ୍ୟ ମାନବ ନୁହ ତୁମେ ଦେବ ଦୂତ,
ତୁମ ରକ୍ତେ ନିର୍ଜୀବ ଏ ଧରା ନିତ୍ୟ ପୂତ !
ଅମୃତ ମଙ୍ଗଳମୟ ତୁମ ପାଦ ସ୍ପର୍ଶେ !
ମୃତ୍ୟୁ-ତଳେ ପ୍ରାଣ ପଦ୍ମ ବିକଶେ ହରଷେ ।

୫—ବନ୍ୟା ପ୍ରପୀଡ଼ିତ ପଞ୍ଚଶତ ନିଃସ୍ୱ ଦୀନ ଗ୍ରାମବାସୀ,
ସହାୟ ସମ୍ବଳ ହୀନ କ୍ଷୁଦ୍ର ପଲ୍ଲୀ ଯାଇଛି ଯେ ଭାସି—
ଗତ ରାତେ ! ଶୂନ୍ୟ ହସ୍ତେ ଛାଡ଼ି ସବୁ ଆସିଲେ ପଳାଇ
ପଥ ପାର୍ଶ୍ୱେ ! ବୃକ୍ଷତଳ ବିନା ତାଙ୍କୁ ଆଶା ଅନ୍ୟ ନାହିଁ !

ତା ପରେ ପ୍ରବଳ ବୃଷ୍ଟି, ଅବିରଳ ଧାରା ପଡ଼େ ଝରି,
ଶୂନ୍ୟ ପିଣ୍ଡ, ବିବସନ ଦେହ, ମଜ୍ଜା ଅସ୍ଥି ଉଠେ ଥରି ।
ଲଜ୍ଜା ସ୍ଥୂଳ ଅନ୍ତରାଳେ ଯୁବା ନାରୀ ରଖେ ତାର ମାନ
ତା କୋଳେ ବୁଭୁକ୍ଷୁ ଶିଶୁ ପାଶେ ବୃଦ୍ଧା କହେ ଗଲା ପ୍ରାଣ ।
ମୂକ ପଶୁ ସମ ସର୍ବେ ଶୂନ୍ୟଠାକୁ ରହିଛନ୍ତି ଚାହିଁ,
କାନ୍ଦିବେ ଅଶ୍ରୁଯୁ ଲାଗି ? ନେତ୍ରେ ତାଙ୍କ ଜଳ ବିନ୍ଦୁ ନାହିଁ ।
କାହା ମୁଖେ ନାହିଁ ଦିଶେ କ୍ଷୋଭୀ ଜନ କ୍ଷୀଣ ଆଶା ରେଖା,
ଗୋଷ୍ଠ ଗାଭୀ ସମ ମୂକ କରୁଛନ୍ତି ମରଣ ଅପେକ୍ଷା ।
ଗୃଧ୍ର ଦଳ ବୃକ୍ଷ ଶାଖେ କରୁଛନ୍ତି ଅବା ଉପହାସ,
ନର ଭାଗ୍ୟ ଦେଖି ତହିଁ ! ଚତୁର୍ଦ୍ଦିଗ ମରଣର ହାସ !

୬—ସାମ୍ୟବାଦୀ ଦେଶସେବୀ ଧନୀ-ସୌଧେ ଅଙ୍ଗୁଳି ଦର୍ଶାଇ,
ତର୍କି କହେ ଧ୍ୱଂସ ବିନା ଦରିଦ୍ରର ଅନ୍ୟ ଗତି ନାହିଁ !
ପର ଅଙ୍ଗ ପୃଷ୍ଟ ଯେତେ ନିବସନ୍ତି ବିଳାସ ବ୍ୟସନେ
ଗତ୍ୟନ୍ତର ନାହିଁ ଯେବେ ନ ମିଶିବେ ମାଟିରେ ସେ ରଣେ ।
ବନ୍ୟାକ୍ଲିଷ୍ଟ ବୃଦ୍ଧ କହେ "ଲୋଡ଼ା ନାହିଁ ବାବୁ ଅଭିଶାପେ,
ସୃଷ୍ଟିର ମଙ୍ଗଳ ହେଉ ଆମେ ପଛେ ମରୁଁ ଆତ୍ମ-ପାପେ !"
ପୁରାତନ ଏ ଧରାରେ କେତେ ଧ୍ୱଂସ କେତେ ସୃଷ୍ଟି ଲୀଳା
ପ୍ରାଣ୍ୟାହ କରଇ ବ୍ୟର୍ଥ—କହ ଏହୁ ବନ୍ୟା କାହିଁ ଥିଲା ?
ସକଳ ଉଦ୍ଦେଶ୍ୟ ତାର ! ନ ବୁଝେ ସେ ଯେତେ ପରକାର,
ନାଚେ ନରଜୀବନକୁ ପଶୁ ସମ କରେ ହାହାକାର !
ଜାଣେ ଏକା ସେହି ସିନା ପଥ ଧାରେ କ୍ଷମା କଲା ଠିଆ
ଉଦ୍ଦେଶ୍ୟ ତା ହେଉ ସିଇ ଏ ଜୀବନ ଯାଉ ଦଅ ନିଅ !

ଜଗନ୍ନାଥ, ଜଗନ୍ନାଥ, ସେହି ଏକା ଭରସା ଜୀବନେ !
ଭକ୍ତ ନୀରବଲ ବୃଦ୍ଧ ଶାଶୁ ନେବେ ନମେ ଜବା ଜଣେ !



## ରୂପହୀନା—

୧—ରୂପସୀ କୁଳେ ତୋତେ ନ ମିଳୁ ପଛେ ଥାନ
ଶୋଚନା ନ କରବୁ ସଜନ ମୋହ ଗୁଣ ।
ଅସିଲେ ଫୁଲ ତୋଳ ଦେବତା ଜପବନେ,
ନମେଷେ ଦେଲେ ଗୁହିଁ ନିଜକୁ ଭୁଲେ ଷଣେ !
ଶ୍ରାବଣ ଘୋର ଘନ ନଟମେଷେ ଗଲେ ତୁଟି,
କୌମୁଦୀ ମାୟା ଲୋକ ଯେସନେ ଜଠେ ଫୁଟି,
ତା ବଳ ବମୋହନ ଗୃହାଣୀ ସହୁ ତୋର,
ଶାଯ୍ୟକ ହାଣେ ବସି ତହିଁକେ ମନ ଚୋର !
ମଧୁର ଗ୍ରୀବାଭଙ୍ଗୀ ମଧୁର ମନ୍ଦହାସ,
ଅମର ଜୀବନର ଭାରତୀ ପରକାଶ;
ମଧୁଭ ଭ୍ରୁଯୁଗ କଞ୍ଚିତ ବ୍ରୀଡ଼ାନତ,
ସେ ପାଦତଳେ ଫୁଟେ କୁସୁମ କେତେ ଶତ !
ଦେଖିଲେ କୋଟିନିଧି ଲଭଇ ଅବା ପ୍ରାଣ,
ରୂପସୀ କୁଳେ ତୋତେ ନ ମିଳୁ ପଛେ ସ୍ଥାନ ।

୨—ଜୀବନ ମଧୁମାସ ଅବା ମଳୟ ବାଇ
ସେ ତନୁଲତା ତୋର ଛୁଇଁଛି ଅବା ନାହିଁ;

ହେ ଶର ଚପଳଗୋ ଅଧୀର ତୋର ଗତି,
କୁସୁମ ବନେ ଅବା ଖେଳଇ ପ୍ରଜାପତି !
କଥା କଥାକେ ତୋର ସ୍ଫୁଟି ପରକାଶ;
ଜୀବନ ସୁରଧୂନୀ ସମାନ ଝରେ ହାସ !
ଜାଣଇଁ ନୋହୁ ତୁଚ କା ହୃଦ ସୋହାଗିନୀ,
ଏ ରୂପ ଶ୍ୱପଣୀର କାହାକୁ ନାହୁଁ କଣି ।
ସ୍ଫୁରୁଷି ତେବେ ତୋର ନୁହଇ ଢଳେ 'ଓଣା
ଏ ପଥେ ଅକାଉରେ ହାସ ପିୟୂଷ ଭୃଣା ।
ସେ ରୂପ ସ୍ମୃହୁଁ ଯେବା କରୁ ଗୋ ଉପହାସ
ପଦ୍ମଣ-ଶତଦଳ ତୋଲାଗି ପରକାଶ
ସ୍ଫୁରୁଷି ଭଙ୍ଗୀ ତୋର ନୀରବେ କରେଁ ଧ୍ୟାନ,
ରୂପସୀ କୁଳେ ତୋତେ ନ ମିଳୁ ପଛେ ଥାନ ।

୩—ଚମ୍ପକ ତୋର୍‌ ତନୁ ନୁହଇ ତୋର ସମ୍ଭ
ତୋ ତହୁଁ ବଳି ରୂପ ଧରଇ କେତେ ମହ୍ମୀ ।
କବିତା କଳପନା ସ୍ଫୁରେନା ତୋତେ ଦେଖି
ଭରମେ ରୂପକାର ନ ଯାଏ ରୂପଲେଖି ।
ନାହିଁ ତୋ ତଳ ଫୁଲ୍ ନାସିକା ଗଜଗତି
ତୋ ଦେହ ବାସେ ଅଳି ନ ବୁଲେ ଚଉକତି ।
ତେବେ ତ ସମ୍ଭ ମୋର ଉପମା ନୁହେଁ ଶେଷ
କବିବେ କେତେ ଗୁଣୀ କବିଏ ମୋତେ ଶ୍ଳେଷ ।
କହିବେ ଜଗଦ୍‌ଗବ ହେଲଣି ମତିଭ୍ରମ
ଅପାନେ ପାନେ ତେଣୁ ଢାଳଇ ସବୁ ଶ୍ରମ ।

—୧୨୮

ମାତର ଅନୁରାଗ ବଢ଼ଇ ଦନୁ ଦନ !
ତୋ ଲୀଳା ପରକାଶେ ସକଳ ଅମଳିନ !
ଅସଇ ନାଭି ଧୀରେ ଜୀବନ କ୍ଷୀଣବତ
ମରଣ ପରଶାତ ମୋର ଅମରାବତୀ ।

୪—ରୂପର ଗଉରବ ତୋର ଗୋ ଅପ୍ରକଟ
ସେ ଲାଗି ସହଜେ ମୁଁ ଛାଡ଼ ତୋ ତଟ୍ଟତଟ ।
ବୁଡ଼ଇ ମନମତେ ତୋ ପ୍ରାଣ ପାରାବାରେ
ସଫଳ ବେଳାମୋର ନୁହଇ ଭୂମିଧାରେ ।
ଏ ଭବ ହାଟେ ସଦା ଦଦନ ବ୍ୟବସାୟ
ତମିରେ ଭ୍ରମି ମିଛେ କାହିଁକ ଅସହାୟ ?
ତୋ କ୍ଷୀଣ ହାସ ଭଙ୍ଗୀ ସ୍ମୃତୁସି ନୁହେ ହେୟ
ହୃଦୟ ପୁଟରେ ତୋର ଅମୂଲ୍ୟ ମୋ ପାଥେୟ ।
ନୟନ ଅନ୍ତରାଳେ ପୀରତ କମଳ ଗୋ
ନଶ୍ୱର ତଳେ ପ୍ରାଣ ପିୟୂଷ ଉରଲ ଗୋ ।
ଦେଖି ସେ ପୁଣ୍ୟ ଶିରୀ ପରାଣ ମନ ଲୁବଧ
ଗଣିତା ନୋହୁ ପଛେ ମୋ ପ୍ରୀତ ମଣି ଶୁଦ୍ଧ ।
ଲୋତକ ଅସେ ଭରି କ ଦେବ ସନମାନ
ହେ ଶର ରୂପହୀନା ଦୂର ସାଗର ଗାନ ।

[ ୧୯୩୩ ]



## ଅଗସ୍ତ୍ୟ——

୧—ଅଗସ୍ତ୍ୟ ଅସ୍ତିଛ ତୁମେ ? ଦେଖି ନାହିଁ ଥରେ
ମାତର ପାରୁଛି ବୁଝି ଆକାଶ ସାଗରେ—
ଉଠିମା ପୁଲିନେ ଦୂର ଶ୍ୟାମ ଶୈଳ ଦେହେ
ଲଗାଇ ଗଲାଣି ପୁଣ୍ୟ ପରଶଟି ସ୍ନେହେ ।
ନୀଳଇନ୍ଦବର ବାଣ୍ଡି ରୌଦ୍ରେ ବିକାଶ
ଅସ୍ପୃଷ୍ଟ ଅଶାର ଛବି କ୍ଷୀଣ କାଶ-ହାସ !
ଲଭିଛି ଆକାଶେ ନବ ଜୀବନ ସ୍ପନ୍ଦନ
ଅଭିଶପ୍ତ ଏ ଧରାର ଶାପ ବିମୋଚନ ।
ସକଳ ପବନ ସ୍ୱଚ୍ଛ ବିଲୋକ ମଙ୍ଗଳ
ବନ୍ଦୀମୁହିଁ କାରାବାସୀ ଅଶ୍ରୁ ଢଳ ଢଳ ।
ଦେଖିନାହିଁ ; ମାତ୍ର ତୁମ ପ୍ରୀତ ସ୍ପର୍ଶ ଲାଗି—
ମୋ ପରାଣ ପ୍ରଣୟିନୀ ନିତ୍ୟ ଅନୁରାଗୀ ।
ଗାଉଛି ଗୋପନ ସୁରେ ନମ୍ର ପ୍ରତିମା
ଶୁଭ୍ରହେବ କେବେ ମୋର କର୍ଦ୍ଦମ କାଳିମା ?

୨—ନିସ୍ତରଙ୍ଗ ଜଳସ୍ରୋତ ! ପ୍ରଶାନ୍ତ ଆକାଶ !
ରୌଦ୍ରରେ ଖେଳଇ ଯେବେ ସ୍ନିଗ୍ଧୋଜ୍ଜ୍ୱଳହାସ !
କମନୀୟ ସ୍ଥଳପଦ୍ମ ଦୂର ଅଲୋକର
ଉନ୍ମିଳିତ ଚତୁର୍ଦ୍ଦିଗେ ପୁଲକେ ଅନ୍ତର ।

ଦୂର ଶ୍ୟାମ ଧାନ୍ୟ କ୍ଷେତେ ଲହରୀ ଦୋଳନ
ସୁଦୂର ନୀରଦ ମାୟା ସ୍ୱପ୍ନର ସ୍ପନ୍ଦନ ।
ସକଳ ପଲ୍ଲବ କଲ, ସ୍ପର୍ଶେ ତବ ଧନ୍ୟ,
ଅନ୍ଧକାର ଗୃହ କୋଣେ ମାତ୍ର ମୁଁ ନଗଣ୍ୟ—
ଏକାକୀ ରହିଲି ପଡ଼ି ଜଞ୍ଜାଳ ସେ ଭ୍ରମା
ତୁମରି ପରଶ ବିନା କରିବ କେ କ୍ଷମା ?
ନିଶିଦିନ କରୁଛି ମୁଁ ତୁମରି ପ୍ରତୀକ୍ଷା
ଅଶ୍ରୁନେତ୍ରେ, ନିତ ତବ ଅନୁଗ୍ରହ ଭିକ୍ଷା ।
ପରଶେ କରିବ ବୋଲି ସୁବର୍ଣ୍ଣ ମୋ ଲୁହା
ଜାଗିଛି ପ୍ରଭାତେ ପ୍ରାଣେ ଅଭିସାର-ସ୍ପୃହା !



## *ଦେବଦୂତ

୧—ପଠାଇଛ ଦେବଦୂତ ମାନବ ସ୍ୱରୂପେ
ଲଭିବୁଁ ଆଲୋକ ପ୍ରେମ ଭାଳି ଅନ୍ଧକୂପେ ।
ନଗଣ୍ୟ ଜୀବନ ମୂକ ଦୈନ୍ୟ ନିପୀଡ଼ିତ
ଶୁଣାଇଛ ମର ମୁଖେ ଅମୃତ ସଙ୍ଗୀତ !
ଶୁଣାଇଛ ତୁମ ବାଣୀ ଅକ୍ଷର ଭରସା,
ଶୁଷ୍କ ରୁକ୍ଷ ପ୍ରାଣେ ତୁମେ ମଙ୍ଗଳ ବରଷା ।
ଜୀବନ ଭରସା ନିତ୍ୟ ଜୀବନ ଆଧାର !
ଅସୀମ ଅନନ୍ତ ତବ କୃପା ପାରାବାର ।

---

* ୧୯୩୩ ସାଲ । ରାଜା ରାମମୋହନଙ୍କ ବ୍ୟକ୍ତିତ୍ୱ ବିଷୟରେ ଦୀନବନ୍ଧୁ ଅଣ୍ଡ୍ରୁଜଙ୍କ ବକ୍ତୃତା ଶ୍ରବଣାନ୍ତର ରଚିତ ।

ଜାଣି ଜାଣୁ ନାହୁଁ ଏ ସକଳ ମୂକ ପଶୁ
ତେଣୁ ନିତ୍ୟ କାଳ ଧରି ମାନବ ପରଶୁ—
ପଠାଉଛ, ଚିର ମୌନ ! ଦୟା ନୁହେଁ ଗୁଣ ! ;
କୋଟି ପଶୁ ପ୍ରାଣଦ୍ରୋହ କରିବାକୁ ପୁନ ।
ଅଟଳ ନ ହେଲ ତେବେ ଅଧ୍ରୁବ ବିଶ୍ୱାସ
ଚିରଦିନ ଅନ୍ଧକୂପେ ସର୍ବନାଶ ଦାସ ।

୨—ଦେବତା ତୁମର ଦୃପ୍ତ ପ୍ରଶାନ୍ତ ମୂରତି
ଉଜ୍ଜ୍ୱଳ ନୟନ ଦିଶେ ଯେସନେ ମୁକତି !
ଦେଖିଛୁ ମୁଁ ଅନ୍ଧକାରେ, ଲଭିଛୁ ସାନ୍ତ୍ୱନା,
ଭୁଲିଛୁ ନିରେଖି ରୂପ ସହସ୍ର ଲାଞ୍ଛନା ।
ଶତ ପ୍ରବଞ୍ଚନା ଦୈନ୍ୟ ମୋ କାଳିମା ରାଶି,
ତା ଅମୃତ ବାଣୀସ୍ପର୍ଶେ ଯାଏ କ୍ଷଣେ ଭାସି ।
ଉଜ୍ଜ୍ୱଳ ସୁନ୍ଦର ନର ହୃଦୟର ମଣି
ତା ପାଦ ପରଶ ବହି ଗର୍ବିତା ଅବନୀ ।
ଅଟଳ ବିଶ୍ୱାସ ଆଶା ଯେସନେ ବଢ଼ଣୀ
ନିମେଷକ ଲାଗି ହେଲେ ନିଏ ଅପହରି ।
ପଙ୍କିଳ ଏ ସରୋବରୁ ! ଫୁଟେ ଶତଦଳ
ବିକଚ ପରାଗେ କ୍ଷଣେ ବାସ୍ପ ଛଳ ଛଳ ।
ମାନବ ସେ ? ହେଉ ପଛେ, ମାନବ-ଦେବତା !
ତାପଦ ଧୂଳିରେ ଲୋଟି ଯାଉ ଦୀନ ମଥା ।

୩—ରଜନି ଅବସାନେ ଯେମନ୍ତେ ଧୀରେ ଉଠେ ସୂର୍ଯ୍ୟ
ଅବସାଦ ପାରାବାରୁ ତେସନେ ହେ ପୂଜ୍ୟ—
ଆସ ଯୁଗେ ଯୁଗେ ବୁଦ୍ଧ, ଖ୍ରୀଷ୍ଟ ଚୈତନ୍ୟ
ବଜାଇ ଗମ୍ଭୀର ସ୍ୱରେ ପ୍ରୀତି ପାଞ୍ଚଜନ୍ୟ ।
ସେ କି ମିଥ୍ୟା ? ମାନବ କି ଶୁଣିନାହିଁ ବାଣୀ ?
ପ୍ରଖର ଧ୍ୱଂସର ବନ୍ୟା ଆସିନି ଉଜାଣି ?
ଆସିଛୁ, ଆସୁଛୁ ଆଜି ନାହିଁ ଅବକାଶ,
କ୍ଷୁଦ୍ର ଏ ମାନବ ପ୍ରାଣେ ଦେବତା ପ୍ରକାଶ,
ସହଜ ସରଳ ଭାବେ ହୁଅଇ ସମ୍ଭବ,
ନୀରବେ ଲଭିଛି ପ୍ରୀତି-ବିଶ୍ୱାସ-ଉତ୍ସବ ।
ନିଶବଦେ ପ୍ରୀତିସିନ୍ଧୁ ଉଠଇ ଉଚ୍ଛୁଳି
ମରେଁ ମୁଁ ବିଫଳେ ସିନା କୂଳେ ବୁଲି ବୁଲି ।
ପୂଜନର କୋଳାହଳେ ନିତି ହେଲି ବଣା
ତୁମ ନିଶବଦ ଗତି କାହୁଁ ପଡ଼େ ଜଣା ?

୪—ହେ ମାନବ ବନ୍ଧୁ ! ଆଜି ମୋ କୁଟୀର ଦ୍ୱାରେ,
ଆସିଲ କରୁଣା ବହି ଯେବେ ଦୈନ୍ୟ ବାରେ—
ଶୁଣି ନିଃସ୍ୱ ଅନ୍ତରର, କରତାକୁ ସ୍ପର୍ଶି,
ତୁମ ନିତ୍ୟ ପ୍ରେମ ପଥେ ରହୁ ତାର ଯଶ ।
ସେ ଶିଳା ପ୍ରସ୍ତର ଖଣ୍ଡ ହେଲେ ଯାଉ ଦବି
ଧନ୍ୟ ହୁଏଁ ମୂକ ପଶୁ ଅଙ୍ଗ ସଙ୍ଗ ଲଭି ।

ଅଛୁ ଅଶ୍ରୁ ? ଦୀର୍ଘଶ୍ୱାସ ପ୍ରଚ୍ଛନ୍ନ ଅନ୍ତରେ ?
ବରଷି ଯାଅଗୋ ଥରେ ମୋ ପରାଣ ପରେ ।
ଶୁଣାଅ ପୁଣି ସେ ବାଣୀ ଯେ ବାଣୀ ଶ୍ରବଣେ
କମଳ ସେ କେତେ ଫୁଟେ ବିଶ୍ୱାସ ଜୀବନେ ।
ଜୀବନେ ଜାଣିଛ ତୁମେ ଦେବତା କରୁଣା
ଦୀନଜନେ ସେ ସମ୍ପଦୁ କରନାହିଁ ଊଣା ।
ଢାଳିଦିଅ ଅଶ୍ରୁ ବନ୍ଧୁ ! ଭୁଲି ଏ ମରଣ
ଲଭିବି ଅନ୍ତରେ ସତ୍ୟ-ଜୀବନ-ସ୍ପନ୍ଦନ ।

୫—ତୁମ ବାଣୀ ଶୁଭେ ଯଥା ଅତଳ ସାଗରୁ
ଗମ୍ଭୀର ମୃଦଙ୍ଗ ଧ୍ୱନି ! ବ୍ରହ୍ମାଣ୍ଡ ଅନ୍ତରୁ—
ସୃଷ୍ଟି ଅଦ୍ୟ ସ୍ତୁତି ବାଣୀ ପବିତ୍ର ମଙ୍ଗଳ,
ସ୍ଫୁରେ ଅବିରାମ ଚିରପ୍ରେମୀ ଅବିରଳ—
ନିର୍ବିକାରେ; ପ୍ରାଣଦୀପ କ୍ଷଣେ ଉଠେ ଜଳି,
ତୁମ ପୁଣ୍ୟ ସ୍ପର୍ଶେ ଶିଳା କ୍ଷଣେ ଯାଏ ଗଳି !
ମାତ୍ର ତୁମେ ଛାୟା ସମ ଗଲେ ଅପସରି,
ସକଳ ପାଶୋରି ପୁଣି ବରଇଁ ଶର୍ବରୀ ।
ଅନ୍ଧ ବିକଳାଙ୍ଗ ମୁଁ ଯେ ! ପଡ଼ି ପଥ ପାର୍ଶ୍ୱେ—
ଦେଖିଛୁ ମୁକତି ପଥ ବୋଲି ମୁଁ ଆଶ୍ୱାସେ—
ଆପଣାକୁ, ଭୁଲେ ପୁଣି ଆତ୍ମ ଅଭିମାନେ—
ଲଭିଛୁ ମୁଁ ଦିବ୍ୟଗତି ଅମୃତ ପରାଣେ !
ଅବିଦ୍ୟା ଗହ୍ୱରୁ କିଏ କରିବ ଉଦ୍ଧାର
ଦେଖାଇ ନ ଦେଲେ ପଥ ଚିର ଆପଣାର ?

୨—ଅଲେକ ସନ୍ଦେଶ ନେଇ ଆସ ଦେବଦୂତ,
ଅନ୍ଧକାର ଦୈନ୍ୟ ମେଳେ ନୁହ ଅଦ୍ଭୁତ !
ମାତର ମାନବ ରକ୍ତ ମାଂସ କଳେବର
ପ୍ରସ୍ଫୁଟିତ ପଙ୍କେ ଯଥା କମଳ ସୁନ୍ଦର !
ସହଜ ସରଳ ଭାବେ ଲଭିଛ ବିକାଶ,
ତେଣୁ ଦୀନ ମାନବର ଅଲେକ ଆଶ୍ୱାସ !
ତୁମ ନେତ୍ର ଯୁଗେ ଫୁଟେ ନୈରାଶ୍ୟର-ଆଶା,
ତୁମର ଅନ୍ତରେ ପ୍ରୀତି ଅନୁକମ୍ପା—ତୃଷା,
ବଦନ ମଣ୍ଡଳେ ନିତ୍ୟ ତିତିକ୍ଷା ସୌମ୍ୟତା,
ନିରେଖିଲେ ଥରେ ନର ଭୁଲେ ଛତ ବ୍ୟଥା !
ଅବିଦ୍ୟା ବିଧୃତ ବୁଦ୍ଧି କରେ ପ୍ରତ୍ୟାଖ୍ୟାନ ?
କ୍ଷମ ଅପରାଧ ସେ ଯେ ଶୈଶବ ଅଜ୍ଞାନ !
ପ୍ରସାର ଦକ୍ଷିଣ ଭୁଜ ! ପରମ ସୁହୃଦ !
ଧୃଷ୍ଟ ସ୍ପର୍ଶେ ହେଉ ଧନ୍ୟ ପରାଣ ଜଡ଼ଦ୍ଭିଦ୍ !



# ପ୍ରଣୟର ଆଦ୍ୟାଶଙ୍କା

—୧—

ମୋ ଯୌବନ ଉପବନେ ବିକଶିତ ଯେତେ ଜାତି ଫୁଲ,
ଶାରଦ ପ୍ରଭାତେ ବନ୍ଧୁ ସେ ସକଳ ଯତ୍ନେ କର ତୋଳ,
ଦେବତାର ବେଦୀ ପ୍ରାନ୍ତେ ହେଲି ଢଳି ! ଶିର ଅବନତ !
ଯେନା ହେବ ନାହିଁ ଭଲ ଶଙ୍କା ଭୀତ ପୀଡ଼ଇ ନିରତ !

ମାତର ଦୁର୍ଭାଗ୍ୟ ମୋର ! ପୂର୍ବ ଜନ୍ମେ ନାହିଁ ତପ ପୁଣ୍ୟ,
ମନ୍ଦରେ ନ ଦେଇଁ ପାଦ ଦେବତାର ସିଂହାସନ ଶୂନ୍ୟ !
ବ୍ୟଥିତ ଅନ୍ତରେ ତହୁଁ ଅସୁଥିଲ ଅଭାଗୀ ବାହାର
ଡାକିଲ ଯେ କ୍ଷୁବ୍ଧ-ଅମ୍ବା ରକ୍ତ-ମାଂସ-ପ୍ରଣୟ ଭିଖାରୀ—
ସେ କି ତୁମେ ? ତୁମେ ? ହେଉନାହିଁ ତଳେ ପରତୀତ ।
ତୁମର ପ୍ରଣୟ ହେଉ୍ହେ ଅକି ଏଥୁଁ ଯୋଜନ ଅତୀତ !
ରୂପସୀ ରମଣୀ ମୁହିଁ ? ଗର୍ବିତ ଧରଣୀ ମୋତେ ଧନ୍ୟ ?
ରମଣୀର ଅଭିମାନ ଭାଳି କ୍ଷଣେ ଲାଜେ ଯାଏ ମରି !
ଯେ ଧନେ ବଢ଼ଇ ଭ୍ରାନ୍ତ ଦେବତାର ଜୁଟିଛି ପରିଚୟ
ନାରୀ ମୁହିଁ—ନୁହେଁ ମାଂସମେଦ—ସେ ମୋ ଶରୀ ପରାଜୟ !

—୨—

ନାହିଁ ମୋର ତତ୍ତ୍ୱପ୍ରଜ୍ଞା, ଅତି ଦୀନା ମୁଁ ତରୁଣୀ ବଧୂ,
ଜାଣିନାହିଁ ଯବାଧରେ ପ୍ରଚ୍ଛନ୍ନ ବା କେତେ ମୋର ମଧୁ,
ନ ଜାଣେ କି କଥା କହେ କାନ୍ତ ଏ ମୋ ନୟନ ଭଙ୍ଗିମା,
ଅକ୍ଷୁଣ୍ଣ ପରାଣ ମାନ ନାହିଁ ପାଏ ଅପମାନ ସୀମା ।
ଦାରୁଣ ବ୍ୟଥାରେ ଝରେ ନୀର ନେତ୍ର ଭାଳଇଁ ନିକର,
ଭସ୍ମ କେ କରନ୍ତା ହେଲେ ଗୌର ତନୁ ଲଳିତ ଅଧର !
ଲଭନ୍ତ ସହଜେ ଅବା ଶରୀରୀ ଦେବତା ସନ୍ଧାନ
ଯା ଲାଗି ନିଭୃତ ପୁରେ ମରେ ଝୁରି ତରୁଣୀ ପରାଣ !
ଯେ ରୂପ ଜାଳଇ ବହ୍ନି, ମୁକ୍ତ ପଥ କରେ କଣ୍ଟକିତ,
ଯା ମୋହେ ନିର୍ବାଣ ଲଭେ ଏ ଜୀବନ ମଙ୍ଗଳ ସଙ୍ଗୀତ,
ଶୋଷେ ଯେ ଅନନ୍ଦ ପ୍ରୀତି ପରତୀତ ଦୁର୍ବହ ଜଞ୍ଜାଳ,
ତା ଘେନି କରିବ ଗର୍ବ କେଉଁ ନାରୀ ? ବନ୍ଧୁ, ସେ ତା କାଳ !

ସେ ଦୃଷ୍ଟି ଫେରାଅ ସଖା ! ବ୍ୟର୍ଥ ନୋହୁ ପୂଜା ଅୟୋଜନ !
ଦେବତା ସାନ୍ନିଧ୍ୟେ ହେଉ ଧନ୍ୟ ପ୍ରୀତି-ପ୍ରଥମ-ମିଳନ !

—୩—

ନୁହେଁ ମୁଁ ଉର୍ବଶୀ ମେନା, କଳ୍ପଲୋକେ ନୁହେ ମୋର ବାସ,
ନାହିଁ ମୋ ଚତୁରି ଭଙ୍ଗୀ କରିବାକୁ ଲୀଳା ପରକାଶ !
ହାବ ଭାବ ବ୍ରୀଡ଼ା ଛଳ ନାହିଁ ଜାଣେ ସ୍ତମ୍ଭନ କୌତୁକ,
ବାସ୍ତବ ବାଳିକା ବଧୂ ! ଅସହାୟ ଅନଭିଜ୍ଞ ମୂକ !
ତୁମର ହୃଦୟ ବନ୍ଦି ଜାଲ ବନ୍ଧି ରଚିବାକୁ ମାୟା,
ଜାଣିନି କୁହୁକ ମନ୍ତ୍ର କହ ତୁମ ଇଚ୍ଛା ଯାହା ତାହା ।
କାହିଁକି ହତାଶ ହେବ ଭାଳି କଳ୍ପଲୋକ ମାୟାବିନୀ ?
ବିନୟେ କହୁଛି ମୁଁ ଗୋ ସେ ମନ୍ଦିରେ ନିତ୍ୟ ପୂଜାରିଣୀ !
ତବ ପୁଣ୍ୟ ପିଠେ ଯହିଁ ଧ୍ୟାନରତ ନିର୍ବିକାର ଶିବ
ବାଢ଼ିବ ଜୀବନ ପୂଜା ସକଳ ସାଧନା ନିବେଦିବ ।
କରି ତନୁ ପ୍ରାଣପାତ ଜାଣେ ନାହିଁ ହେବନା ସଫଳ,
ଶକ୍ତ ହୀନା ନାରୀ-ତପଃ ଢାଳି ଶତ ନୟନର ଜଳ ?
ହେବ କି ଗ୍ରହଣ ଯୋଗ୍ୟ ? ସୁଲଭ କି ହେବ ସାର୍ଥକତା ?
ବିମୁଗ୍ଧ ପ୍ରଣୟୀ ମୋର ! କି ବୁଝିବ ନାରୀ ହୃଦ ବ୍ୟଥା ?

—୪—

ବାସ୍ତବେ ରଚିବା ବନ୍ଧୁ ଜୀବନର ସକଳ ସ୍ୱପନ,
କାଳ ସିନ୍ଧୁ ଅନ୍ଧକାରୁ ଖୋଜି ନେବା ଅମୂଲ୍ୟ ରତନ,
ଚିର ଅଭିପ୍ରାୟ ତୁମ ଅନଭିଜ୍ଞା ବାଳିକା ବଧୂର,
ସଂଗ୍ରାମେ ଅକ୍ଷତ ସତେ ହେବ ମୋର ସୀମନ୍ତ ସିନ୍ଦୂର ?

ନାହିଁ ସେତେ ଆଶା ! ...          ...          ...
ତେଣୁ ଲକ୍ଷ୍ୟ ପଦେ ଧରିବାର ଲାଗି
ପ୍ରୟାସ ନ କରୁଁ ତୁମେ ଖର ସ୍ରୋତା ହେଉଛ ବୈରାଗୀ !
ଛୁଟ କେଉଁ ସ୍ୱପ୍ନ ପଛେ ଅବୋଧ ମୁଁ ନ ପାଏ ତା ଅନ୍ତ,
ପଞ୍ଜର ପଞ୍ଜିର ଭେଦ ଖୋଜ ଭୁଲ ଅକୁଳ ବସନ୍ତ !
ବନ୍ଧୁ ତେଣୁ ଥରେ କର ! ଶିଥିଳ ମୋ ମାଧୁରୀ ଅଛେଦ୍ୟ !
ସ୍ୱପ୍ନ ନୁହେ ବାସ୍ତବ ମୁଁ ! ସ୍ୱଳ୍ପ ପ୍ରୀତି ମୋ ଦୀନ ନୈବେଦ୍ୟ !
ନେବ ଅବା ନାହିଁ ତାକୁ, ଫେଡ କହ, ଅଛୁ ନା ସାହସ ?
ତୁମରି ପୌରୁଷେ ବନ୍ଧୁ କହ ସତେ ରଖିବ ତା ଯଶ ?
ରୂପ ଅଭିଳାଷୀ ଅବା କର ଯେବେ ଦଗ୍ଧ ଅସହାୟ—
ଅମ୍ଳ ପ୍ରବଞ୍ଚନା ପାଇଁ କ୍ଷମି ବନ୍ଧୁ ଦିଅ ଗୋ ବିଦାୟ !

[ ୧୯୩୪ ]



## ଚନ୍ଦ୍ର ଚକୋରକୁ

ଯେ ନୟନେ ନାହିଁ ବାସନା ତୀବ୍ର ପୀଡ଼ା,
ନିତ୍ୟୋତ୍ସବ ଯେ ନୟନେ କରେ କ୍ରୀଡ଼ା,
ସେ ବେଳି ନୟନ ଦବାନଳି ଗ୍ରହି ଗ୍ରହି
ବ୍ୟଥିତ ଚକୋର ଗୀତ ତାର ଯାଏ ଗାଇ । ୧ ।

—ଖା

ସୁପ୍ତୋତ୍‌ଥିତ ଶାରଦ ପ୍ରଭାତ କାନ୍ତି,
ଅଥବା ବ୍ୟଥିତା ସନ୍ଧ୍ୟା କରୁଣ ଶାନ୍ତି,
ମଙ୍ଗଳ ସଦା ଯେ ବେନି ନୟନୁ ଝରେ;
ବ୍ୟଥିତ ଚକୋର ଚାହିଁ ଚାହିଁ ତାକୁ ମରେ । ୨ ।

ମେଘ ଅବୃତ କରୁଣ ଜୋଛନା ପରି ?
ପରଶି ପରାଣ ଦିଏ ନାହିଁ ପୁଣି ଧରି,
ଶୂନ୍ୟ କାସାରେ ସଜଳ ସେ ନୀଳକଇଁ,
ଚାହିଁ ଏ ଚକୋର ତା ବେଦନା ଯାଏ କହି ।୩।

ଦେଖିଛ ପଥିକ ସାର୍ଥକ କରି ଶ୍ରମ ?
ବହିଲ ସେ କେବେ ସବୁଜ କ୍ଷେତ ଭ୍ରମ !
ଶୂନ୍ୟ ଅକାଶେ ଅବା ଏକାକିନୀ ତାର,
ପ୍ରତପ ଚନ୍ଦ୍ର ତମିର ଗର୍ଭୁଁ ଢାଳଇ ଲୋତକ ଧାର ! ।୪।

ଜନନୀର ତହିଁ ଚିର ମଙ୍ଗଳ ଗୀତ,
ଚାଉନି ମାତର ପ୍ରଣୟୁ ଶଙ୍କା ଭୀତ;
ସଜଳ ଯେସନେ ଶୈଶବ ସରଳତା
ଭରେ ସେ ନୟନ ନୀଳାକାଶ ଅବା
ସାଗର ଗଭୀର ବ୍ୟଥା ! । ୫ ।

ଶାନ୍ତ ମାଧୁରୀ ହୁଏ ନାହିଁ ତଳେ ମାପି,
ପ୍ରଣୟେ କାବ୍ୟେ ପାରେ ନାହିଁ କେହି ଥାପି,
ସାଗର ସେ ପାରୁଁ ଗଭୀର ବଂଶୀ ତାନ !
ସେ ନୟନେ ଚାହିଁ ବ୍ୟଥିତ ଚକୋର
ଭୁଲେ ତାର ଅଭିମାନ । ୬ ।

'ପ୍ରଭାତ କମଳ ସମାନ ସେ ଅକ୍ଷିପତା !
ମେଲିଲେ ଝରଇ ଅମୃତ ମାଦକତା,
ମୃତ୍ୟୁ ଆକୁଳ ଜୀବନ ସ୍ପର୍ଶ ପାଇ,
ବ୍ୟଥିତ ଚକୋର ଗାଏ ନିଶିଦିନ
ଯୁଗଳ ନୟନ ଗୁହ୍ନି । ୭ ।

[ ୧୯୩୪ ]



## ବାସର ଗୃହ—

— ୧ —

ବାସର-ମିଳନ-ରଜନି ! ଶେଷ ଯାମ ! ଅସ୍ତାଚଳେ ଶଶୀ !
ବ୍ରୀଡ଼ା, ନିମୀଳିତ ନେତ୍ରେ ପ୍ରଣୟୀରେ ମୁଗ୍‌ଧେ କହେ ହସି
ବିହ୍ୱଳିତା ପ୍ରଣୟିନୀ "ମନେ ଥିବ ମନେ ଥିବ ବନ୍ଧୁ ?
କହୁଅଛି ସତ କର ?...... ଅନଭିଜ୍ଞା ଏ ତରୁଣୀ ବଧୂ—
କରିଛୁ କି ଏଡ଼େ ଭାଗ୍ୟ ହେବ ବୋଲି ଅମର ଅଙ୍କିତ
ସ୍ୱ ଚପଳ ଚିତ୍ତପଟେ ? ... ... କିବା ଗୁଣେ ? ... ...
ଭାଳି ସଙ୍କୁଚିତ !

ମନେ କି ପଡ଼ିବ ବନ୍ଧୁ ଆଜିର ଏ କ୍ଷଣିକ ମାଧୁରୀ ?
ପରାଣ ପରଶି ଜ୍ୟୋତ୍ସ୍ନା ପୁଣି ଏହି କ୍ଷୁଦ୍ର ସ୍ୱପ୍ନପୁରୀ ?
ମନେ କି ପଡ଼ିବ ନିଃସ୍ୱ—ନିବେଦନ, ପ୍ରୀତି—ଅଭିମାନ ?
ଚାତୁରୀ ସୋହାଗ ? ଯେବେ ଭୀମ ସ୍ୱରେ ଜୀବନ ସଂଗ୍ରାମ—

—୧୯୦

ତାଙ୍କର ପୌରୁଷେ ତବ ଧୂମ ହେବ ସହସ୍ର କଳ୍ପନା !
ଅଗ୍ରଜନ ସଙ୍ଗୀନରେ ନ ଭୁଲିବ ? ହେବନାହିଁ ବଣା ?
ତାଙ୍କର ଅଦର-କଣ୍ଠେ ଶୁଷ୍କ ଯେବେ ପ୍ରାଣ-ଧାର ? ହାୟ !—
ବିଦାୟ ବାସର-ଗୃହ ! ବନ୍ଧୁ ମୋର, ବିଦାୟ···ବିଦାୟ !

—୨—

"ଭୁଲି ଯିବ ? ଭୁଲି ଯିବ ?" ଝାଣି ଦେଇ କମ୍ପିତ ଉତ୍ତର—
ଉତ୍ତରେ ପ୍ରଣୟୀ ହସି—ରହ, ଦେଖିନ ଏଁ ଭଲି କର
ଚନ୍ଦ୍ରରୁ ଚପୁଡ ସୁଧା ଝର ବେନ ଚତୁର ନୟନ,
ବନ୍ଧୁଲି ନନ୍ଦିତ ସେହୁ କମନୀୟ ଅଧର କମ୍ପନ,
ଅନାବୃତ ଶୁଭ୍ର ଗ୍ରୀବା, ତୁଷାର ଧବଳ ବାହୁ ଲତା,
ବିନୟେ କହୁଛୁ ଖୋଲି ଖୋଲି ଥରେ ନିମୀଳିତ ପତା !

ରୁଚିର ସର୍ବାଙ୍ଗୁ ତବ ସ୍ଫୁରଇ ଯେ ଅଜ୍ଞ ଅବାରିତ—
ପଥଶ୍ରାନ୍ତ ଏ ପଥିକ ପିଇ ନେଇ ଜୀବନ-ସଙ୍ଗୀତ !
ବାସ୍ତବ ସଂଗ୍ରାମ ଭୟ ? ଛି ! ଛି ! ସେ ଯେ ବାଞ୍ଛା ଚପଳତା ।
ଏ ଜୀବନ ଯାର ଦାନ ବୁଝିବେ ସେ ସଂଗ୍ରାମ ବାରତା !
ଶ୍ରାନ୍ତ ପାନ୍ଥ-ଜନ ପ୍ରାଣ କଲେ ଯେବା ମାଧୁର୍ଯ୍ୟ ମଣ୍ଡିତ,
ଅଜର ଏ ପ୍ରୀତି-ରସ କରେ ଯାର କରୁଣା ଇଙ୍ଗିତ,
ଏ ପୌରୁଷ କଲେ ଦାବି ପୂର୍ଣ୍ଣ ହେବ ପୀରତି ଆଧାର !
ଅଜର ମାଧୂର୍ଯ୍ୟ ଲାଗି ପ୍ରାଣ—ପ୍ରିୟା କର ନମସ୍କାର !

—୩—

ଏ ପଥିକ-ପାନ୍ଥଶାଳା ତୁମର ଏ ବାସର ଭବନ !
ଅଶେଷ ମାଧୁର୍ଯ୍ୟ ଭରା ସେଥିରେ ସ୍ୱର୍ଗ-ଜୀବନ୍ତ-ସ୍ୱପନ !

ଅଥବା ସାଗର ପାରେ ମୁକ୍ତ କବ୍ର ଚନ୍ଦ୍ର—କାନ୍ତଲୋକ !
ତୁମେ ଅଧିଷ୍ଠାତ୍ରୀ ଦେବୀ ! ଭୁଲିଯାଏଁ ନିର୍ଯାତନ ଶୋକ !
ନିରେଖିଲେ ସେ ଆନନ, ସ୍ୱେଦବିନ୍ଦୁ ଯହିଁ ପଡ଼େ ଖସି,
ମଳିନ ସୁନ୍ଦର କ୍ଷଣେ ! ତବ ସ୍ପର୍ଶେ ଚପଳ-ଉର୍ବଶୀ !
କି ଜୟ ଭାବନା ମୋର ? ଲଭୁ ପ୍ରାଣେ ସଂଗ୍ରାମର କାଳ !
ସକଳ କଳଙ୍କ ଧୌତ କରିବ ଗୋ ସେ ଅଙ୍ଗୁଳି ଚାଳି,
ପୋଛିବ ବେଦନା ଅଶ୍ରୁ, ପ୍ରଦୀପ ଗୋ ଜାଳିବ ଅନ୍ଧାରେ,
ତୁମରି ଆଶ୍ୱାସ ଲଭି ବାହିବି ଅକୂଳ ପାରାବାରେ
କ୍ଷୁଦ୍ର ମୋ ତରଣୀ ଗୋଟି ! ପ୍ରୀତି-ହାସ୍ୟେ ପଥ ଆଲୋକିତ !
ତୁମ କଣ୍ଠେ ମିଶାଇ ମୁଁ ଗାଇବି ଗୋ ବିଜୟ ସଙ୍ଗୀତ !
ଫେରିବ ସୈନିକ ଅବା କ୍ଷୁଣ୍ଣ ପରାହତ, ବ୍ୟର୍ଥ କାମ !
ବାସର ଭବନେ ନିକି ରହି ଲାଗି ନ ଦେବ ବିଶ୍ରାମ ?"

—୦—

"ଜାଣିଛୁ ପଥିକବନ୍ଧୁ ! ହେ ଅଜ୍ଞାତ ଦୂରଦେଶ ପାନ୍ଥ !
ଚାଲିବା ଅଗମ୍ୟ ପଥ ତୁମରି ଯେ ସାରା ଅବିଶ୍ରାନ୍ତ ।
ନ ଜାଣେ ମାତର କିବା ଶୁଣି ତବ ଦୂର ବଂଶୀସ୍ୱନ
ତୁମରି ଆହ୍ୱାନ କିବା ଲଗାଇଲା ପ୍ରାଣେ ଉଚ୍ଚାଟନ !
ନିସ୍ତବ୍ଧ ମାଧବୀ ଜ୍ୟୋସ୍ନା କୁହୁ ତାନ ପରା ଏ ମଧୁର
ବନ୍ଦୀ କଲା ମନ ପ୍ରାଣ ତୁମ ମୁଗ୍ଧ ବାଳିକା ବଧୂର !
ସେଦିନୁ ଆରମ୍ଭ ହେଲା ଅନଭିଜ୍ଞା ଦୀନା ବାଳିକାର,
ଲାଜ ନିବନ୍ଧନ ଭୁଲି ନିର୍ଜନ ନିଶୀଥ ଅଭିସାର !
ସେ ଦିନୁ ବାସର-ଗୃହ ଗନ୍ଧେ ପୁଷ୍ପେ କରି ସୁସଜ୍ଜିତ,
ଚାହିଁଛି ବାସକ-ସଜ୍ଜା ତୁମ ପଥ ଉନ୍ନିଦ୍ର-ନିଶୀଥ !

ଅସିଲ ତ ଅଜ ! ଧନ୍ୟ ତୁମ ବଧୂ ! ଚପଳ ଦେବତା—
ନ ରହୁବ ? କୋହୁ ପଛେ !
ବୃଥା ପ୍ରାଣେ ଦେବ ନାହିଁ ବ୍ୟଥା !
ଜୀବନ ଅମୃତ ଲଗ୍ନ ବାନ୍ଧିବାର ବିଫଳ ପ୍ରୟାସ,
ନିରେଖି ତୁମରି ବଧୂ ଅପଣାକୁ କରେ ଉପହାସ !
ମୁକ୍ତ ଦ୍ୱାର ତୁମ ଲାଗି ! ଜୀବନ "ସୁଦୂର ସ୍ମୃତି"...ହାୟ !
ବିଦାୟ ବାସର-ଗୃହ ! ବନ୍ଧୁ, ପ୍ରିୟ, ବିଦାୟ ବିଦାୟ !

୫— ଅଗୁରୁ-ଚନ୍ଦନ ଗନ୍ଧେ ମନ୍ଦ ସମୀରଣେ ଯାଏ ମିଶି,
ବାସର ଉତ୍ସବ ଶେଷ ! ପାହୁ ଅସେ ପ୍ରୀତି-ଶୁଭ-ନିଶି !
ପ୍ରଣୟୀ ପରାଣେ ବାଜେ ଦୂରପଥ କରୁଣ ଅହ୍ୱାନ,
ଧୂପଶିଖା ସମ ତାର ପ୍ରାଣୁ ସ୍ଫୁରେ ଗାନ ! ... ... ...

"ବାସର ଭବନ ବିଦାୟ ପ୍ରଣତି ଘେନ !
ମଳିନ ଦିଶିଲା ଉତ୍ସବ ଦୀପ ହେମ !
କଣଳୟ ଶେଯେ ନୟନ ମୁଦନ୍ତି ବଧୂ,
ଅସ୍ତ ଚନ୍ଦ୍ର ଡାକି କହେ "ଗଲି ବଂଧୁ !"

ବକୁଳ ମଲ୍ଲୀ କେତକୀ କୁସୁମ ଦାମ,
କେଉଁ ଅଯତ୍ନେ ଧୂଳିରେ ଦିଶଇ ମ୍ଳାନ,
ଘର୍ମ ବିନ୍ଦୁ ଲୁଣ୍ଠିତ ନୟନ ପତା,
ସୁଦୂର ଅନ୍ତରେ ବାଧୁର ସ୍ମୃତିର ବ୍ୟଥା !

ଉଠ ନବ ବଧୂ ଉଷା ସମୀରଣ ଡାକେ,
ଡାକେ ଖଞ୍ଜନ ସୁଦୂର ମୁକୁଳ ଶାଖେ,

୧୯୩—

ମୁଗ୍ଧ ନୟନେ ସ୍ନିହେଁ ରହେ ମୀରବତା
ସବୁ ଅନନ୍ଦେ ବାଜେ କବା ବ୍ୟର୍ଥତା !
ଶୂନ୍ୟ ଜୀବନ ସୂଳନ୍ତୁ ପୁଣି କେ ଡାକେ ?
ବଧୂର ସଜନୀ ଯେସନେ ଚକ୍ରବାକେ !
କରୁଣେ ଡାକଇ ଦୂରପଥ ଅବିରଳ
ସକଳ ତେଆଗି ଦୂର ପରବାସୀ ଚଳ ।
ଓଠ ବଧୂ ବୋଲି ଡାକିବାକୁ ଅଛ ଥରେ ?
ମଳିନ ପ୍ରଦୀପ ସମାନ ମରମେ ମରେଁ !
କହିବାର କଥା କଣ୍ଠେ ରହଇ ଲାଗି,
ଆପଣାର ସ୍ନେହେଁ ଶୀଥିଳ ପୀରତି-ରାଗି !
ନିମୀଳିତ ଆଖି, ସୁପ୍ତ କୁଣଳେ ବଧୂ,
ନ ଜାଣଇ କେବେ ଫେରିବ ଏ ତୁମ ବଂଧୁ,
ଫେରିଲେ ଥିବଟି ଅଧରେ ହାସ୍ୟ ହେମ ?
"ବାସର ବଦନ ଵଦାୟ ପ୍ରଣତ ପ୍ରେମ ।"

[ ୧୯୩୪ ]



## ପଥ ଛାୟା

ମୁ ଚିର ପଥିକ, ଯାତ୍ରୀ ! ···ଏ ମରତେ ଦୂର ପରବାସୀ
ଜୀବନର ଅର୍ଦ୍ଧପଥେ କେତେ କଥା ମନେ ପଡ଼େ ଆସି !
ଅତୀତ ସହସ୍ର ସ୍ମୃତି ଲୁପ୍ତ, ଅର୍ଦ୍ଧ ଲୁପ୍ତ, ଜାଗରିତ,
ରଜନୀର ଶେଷ ଯାମେ ଶାନ୍ତ ନଭେ-ତାରକା-ଇଙ୍ଗିତ !
ପଥ ପାର୍ଶ୍ୱେ ଯେତେ ତରୁ ଏ ଯାତ୍ରୀରେ କଲେ ଛାୟା ଦାନ
ଅଛୁ କି ସକଳ ମନେ ? ନାହିଁ, ନାହିଁ, ସର୍ବେ ମ୍ରିୟମାଣ !

ସୁବିପୁଳ କାଳଗର୍ଭେ ସ୍ମୃତି ମାତ୍ର ଏ ଯାତ୍ରୀର ସାର,
ସଜଳ ଅଶ୍ରୁ ! ଘେନ ଏ ପାନ୍ଥର ଭକ୍ତି ନମସ୍କାର !
ସକଳ ବିସ୍ମୃତି ମଧ୍ୟେ ଜାଗ୍ରତ ଏକଇ ବନସ୍ପତି,
କୋଟି ସ୍ପୃହଣୀୟ ମଧ୍ୟେ ଯେତେକେ ସେ ମୋ ଅମୃତ ସମ୍ପତ୍ତି !
ପ୍ରୀତି ନେତ୍ର ଛାୟା ସମ ସ୍ୱପ୍ନମାଧୁରୀରେ ସୁଶୀତଳ,
ଯା ସ୍ମୃତି ସମ୍ପାଦେ ଶୂନ୍ୟ ପଥେ ଯାତ୍ରୀ ନୟନର ଜଳ ।
ଅନନ୍ତ ମାଧୁର୍ଯ୍ୟରସେ ସତ୍ତା ଯହିଁ ହେଲା ଅନୁଭବ,
ଦିବ୍ୟ ବନସ୍ପତି ସ୍ମୃତି ! ଏ ପାନ୍ଥର ପରମ ଗୌରବ !



[ ୧୯୩୫ ]

# ପାନ୍ଥଶାଳା

—୧—

ଲକ୍ଷ କୋଟି ପାନ୍ଥଶାଳା !···ଅର୍ଦ୍ଧ-ରାତ୍ରି ଛାୟାପଥ ସମ
କ୍ଷୁଧା ତୃଷା ହର ଅହା ପୁଷ୍ଟ କଲେ ଏ ଜୀବନ ମମ ।
ନାହିଁ ନାହିଁ ମନେ ଆଜ କାହିଁ କେତେ ପୁହାଇଛି ରାତ୍ରି,
ଲଭିଛି ଜନନୀ-ସ୍ନେହ ଦୂରପଥ-ଆତ୍ମଭୋଳା-ଯାତ୍ରୀ !
ସକଳ ସ୍ମରଣେ ଆଜ ଶୁଷ୍କ ନେତ୍ରେ ଅଶ୍ରୁ ହୁଏ ଜମା,
ଶତ-ପ୍ରୀତି-ଅଶ୍ରୁ ମମ ! କ୍ଷିପ୍ର ଏ ପଥିକେ କର କ୍ଷମା !
ଏ ଯାତ୍ରୀର ଆତ୍ମସତ୍ତା ତବ ପ୍ରୀତି-ସ୍ମୃତି-ଇତିହାସ,
ବିସ୍ମୃତି ଯେସନେ ସତ୍ୟ ମାତ୍ର ନିତ୍ୟ ପରମ ପ୍ରକାଶ ।
ଦୀର୍ଘ ଶୂନ୍ୟ ଏହି ପଥେ ହୋଇଯାଏ ଅହା କେତେ ଭୁଲ,
କ୍ଷୁଦ୍ର ଏକ ପାନ୍ଥଶାଳା ମାତ୍ର ନିଃସ୍ୱ ସମ୍ପତ୍ତି ଅତୁଳ !

ଦୂରେ, ଦୂରେ ! ଯାର ଅଶ୍ରୀ ଲଭି ସତ୍ତ୍ୱ ହେଲ ମୋ ପାଶୋର—
ବିସ୍ମୃତ ମୋ ଯାତ୍ରାପଥ, ଚନ୍ଦ୍ରେ ଯଥା ନିରେଖି ଚକୋର !
ଅମୂଲ୍ୟ ସମ୍ପଦ ପ୍ରୀତି ନେଲ କେବା ଅପହୃତ କରି,
ଅନ୍ଧଯାଏ ଖୋଜେଁ ତାକୁ ଝୁରି ହୁଏଁ ସେ ଅଶ୍ରୟ ସ୍ମରି ।

—୨—

ଦୂରେ ସେହି ପାନ୍ଥଶାଳା !···ସହଯାତ୍ରୀ ଅଛ ତାକୁ ଦେଖି ?
ସକଳ ମାଧୂର୍ଯ୍ୟ ଖଣି ଶୋଭା ତାର ନୁହେଁ କାହୁଁ ଲେଖି !
ନନ୍ଦନ ସୁରଭି ସେତା, ଉପବନ କୌମୁଦୀ ପ୍ଲାବିତ,
ସ୍ପର୍ଶେ ପଡ଼େ ନାହିଁ ଧବ ଶଷ୍ପ ଖାଲି କରେ ପୁଲକିତ !
ଶ୍ରାନ୍ତ କ୍ଲାନ୍ତ ପାନ୍ଥ ଯେତେ ଭିକ୍ଷା କଲେ ରଜନୀ ଅଶ୍ରୟ,
ଧନ୍ୟ ହେଲେ, ହେଲେ ପୂତ ଲଭି ସେ ଜନନୀ ବରାଭୟ !
ଅମୃତ ଅଶ୍ରୟ ସ୍ମୃତି ! ଶୂନ୍ୟ ମମ ଜୀବନ ସମୃଦ୍ଧି !
ସ୍ମୃତିରେ ସରଳ ପଥ ବସିଲେକ ଥରେ ନେଇ ବୁଝି ।
ଏତ ନ ପାରଇ ବନ୍ଧୁ ଦୂର ଶୂନ୍ୟ ପଥଯାତ୍ରା ନିଶା,
ସୁଦୂର ଅହ୍ୱାନେ ଜାଗେ ଭଗ୍ନ ପ୍ରାଣେ ଅଦମ୍ୟ ଜିଗୀଷା,
ବାହାର ପଡ଼ିଛି ଘରୁ ! କ୍ଷଣେକ ନ ଗଣି ଯାତ୍ରା କ୍ଲେଶ,
କହିବ କେ ସହଯାତ୍ରୀ ଏ ଯାତ୍ରାର କାହିଁ ହେବ ଶେଷ ?
ସକଳ ତମା ଅନୁଭୂତ ବ୍ୟଥା ସିକ୍ତ ସ୍ମୃତି ଅନ୍ଧକାରେ,
ଦୂର-ପାନ୍ଥ-ଶାଳା-ସ୍ମୃତି କୌମୁଦୀ-ପ୍ଲାବନ ପାରାବାରେ !



# ଯଶାକାଙ୍କ୍ଷା

୧—ଅସ୍ପଷ୍ଟ ସେ ସନ୍ଧ୍ୟାଲୋକେ ପୁଛଇ ରହସି
ଉତ୍କଣ୍ଠା-ଆବେଗେ ପ୍ରିୟା···"ତୁଚ୍ଛାଟାରେ ବସି
ଅନ୍ଧକାର ଗୃହ କୋଣେ ରଚୁଅଛ ଛନ୍ଦ—
ମୂକବଧିର ସମ ଅନ୍ଧ ! କି ଅବା ଆନନ୍ଦ
ଜାଣୁଥିବ ଅବା ଆପେ, ଆନ କେହି ଜଣେ
ନ ଦେଖିଲେ ଯାହା ପୃଷ୍ଠାଭର ଅକାରଣେ ।
ନ ଦଣେ ବସିଛୁ ଆଜ ରାଜ ଦରବାର ?
କେବା ଗୁଣୀ ଜ୍ଞାନୀ ସମୁଚିତ ପୁରସ୍କାର—
ଲଭି ଫେରୁଛନ୍ତି, ସୁଖେ ମୁଖ ହସ ହସ,
ଅସ୍ଥିର ଜନତା ଗାଏ କୋଟିମୁଖେ ଯଶ !
ନାହିଁ କି ପୌରୁଷ ତଳେ ? ଖାଇଲଣି ପୋକ ?
ବୁଦ୍ଧି ରସାତଳଗାମୀ ପାଦେ ପାଦ ଯୋଡ଼ି !
ଯେତେ ସବୁ କବ୍ୟମତ୍ତ ମୋହର ଉପରେ;
ପରଖି ଆସିବ ଭାଗ୍ୟ ଯାଅ ତହିଁ ଥରେ ।"

୨—ଇତସ୍ତତ କରି କବି ଭାଷଇ ଉତ୍ତର—
ଅପରୂପ ବ୍ୟଙ୍ଗ ହାସେ କମ୍ପିତ ଅଧର ।
"ଯିବି ଦରବାରେ ? ମିଳିବଟି ପୁରସ୍କାର ?
ମିଳିବ କୁଣ୍ଡଳ ଯୋଡ଼ା ? ଅବା ରତ୍ନହାର—
ଲମ୍ବାଇବ ତମ୍ଭ କଣ୍ଠେ ? ବଳେଇ ରସନା ?
ଜାଣିଛକି ଅଛି ତହିଁ କେତେ ସମ୍ଭାବନା ?
ବଧିର ଯେବେ ଗୋ କାନ ଶୁଷ୍କ ରାଜ ପ୍ରାଣ
ରହିବଟି ତୁମର ଏ ଆଶା ଅଭିମାନ ?

ତା ତହୁଁ ଗୌରବ ମୋର ଜୀର୍ଣ୍ଣ ଏ କୁଟୀର,
ଅଳପ ଆଦର, ପ୍ରୀତି, ତୁମ ନେବ ମୀର !
ଦେଖୁନାହିଁ ଦବାନଳି ଶ୍ରମ-ଜୀବୀ-ଶତ—
ଅନାହାରେ ତାଙ୍କୁ ଛିନ୍ନ ବିଶାଳ ପର୍ବତ
ରାଜସୌଧ ଲଗି ? କିଏ ଶୁଣେ ସେ କ୍ରନ୍ଦନ ?
ବ୍ୟର୍ଥ ତହେଁ ଲଯ୍ଣ ହେଉ ମୋ ଗୀତ ବେଦନ !

[ ୧୯୩୭ ]



## କବିପ୍ରିୟା ପ୍ରତି

୧—ରଙ୍ଗିନ ସ୍ମାରକ କାହିଁ ଅନ କବିପର ?
ପ୍ରୀତି ନିଦର୍ଶନ କାହିଁ ଦେଇନି ସୁନ୍ଦର ?
ଚଟୁଳ ଗ୍ରନ୍ଥିବନ୍ଧନେ ହରନାହିଁ ମନ ?
ତରଳ ପ୍ରୀତିରେ ସ୍ନିଗ୍ଧ କରନି ଜୀବନ ?
ପ୍ରତିଦାନ ଦେଇନାହିଁ ଆଦର ସେବାର ?
କ୍ଷୁବ୍ଧ ରମଣୀତ୍ୱ ନିତ୍ୟ କରେ ହାହାକାର ?
ସନ୍ଦେହ ଉପୁଜେ ମନେ ? ପ୍ରୀତି-ଅବିଶ୍ୱାସ—
ସକଳ ମାଧୁର୍ଯ୍ୟ ତବ କରଅଛି ଗ୍ରାସ ?
ଶିଖାଇନି ମୋତେ କେହି ପୀରତି ବେଭାର,
ତେଣୁ ମୋ ପୀରତି ହୋଇ ରଣୀ ପରକାର ।
ତରଳ ଉଛୁଳ ପ୍ରୀତି ନାହିଁ ମୋତେ ଜଣା,
ହସ୍ତଧୃତ କାବ୍ୟସମ କରିବ ରଚନା

ସୃଷ୍ଟି-ଗୀତ ? ହେବ ପ୍ରୀତ-ସନ୍ଦେହ ମୋନେ ?
ଅନ ଗୀତ-ଅଦରଣେ ହେବ ମୋ ମରଣ ।

୨—ପ୍ରଖର ଦହନେ ତୀକ୍ଷ୍ଣ ରବିକର ତାପେ,
ଅର୍ଦ୍ଧମୃତ, କ୍ଷୁଧାତୁର, କ୍ୱବା ଅଭିଶାପେ—
କରନ୍ତ ନିଷ୍ଠୁଲାଘାତ ରୁକ୍ଷ ପରବତେ
ଦୁଃଖୀ ଶ୍ରମଜୀବୀ ଅହା ! ଦେଖ ଗୋ ନିରତେ !
ତାଙ୍କର ଶୋଣିତ ଅସ୍ଥିମେଦମାଂସପରେ
ଗଢ଼ି ଉଠେ ରାଜସୌଧ* ଖ୍ୟାତ ଦମ୍ଭଭରେ !
ଭିତରେ ପ୍ରୋଥିତ ଯଥା ଜୀର୍ଣ୍ଣ ହାହାକାର !
ତେହନେ ପୀରତ ମୋର ଲୋତକ-ପ୍ରସାର !

ଅଛୁ ଅନବଦ୍ୟ-ଅଙ୍ଗେ ଶ୍ରମିକ ଶକତ ?
ଅଛୁ ସେ ନୈପୁଣ୍ୟ ଦମ୍ଭ ଅଛୁ ଦୃଢ଼ମତ ?
ଭାଙ୍ଗିଲେ ଅଚଳ ମେରୁ ପାରିବ ଗୋ ଦେଖି
ବ୍ୟଥାର ଶୋଣିତେ ପ୍ରୀତ ହୋଇଛୁ ଗୋ ଲେଖି !
ଲକ୍ଷ କୋଟି ନିଃଶ୍ୱାସ ତହିଁ ସ୍ତୂପୀକୃତ
ସେ ତୁମର ପ୍ରୀତ ! କର ଅଶ୍ରୁ ପରିପ୍ଳୁତ !

[୧୯୩୫]



* ସେ ସମୟରେ ନିର୍ମିତ ହେଉଥିବା ଏକ ସୁବିଶାଳ ରାଜହର୍ମ୍ୟକୁ ଉପଲକ୍ଷ କରି ହୋଇଅଛି । ସେ କରୁଣ ଦୃଶ୍ୟ ଲେଖକପତ୍ନୀଙ୍କର ବ୍ୟକ୍ତିଗତ ଅନୁଭୂତିରେ ମଧ୍ୟ ଆସିଅଛି ।

# ପଙ୍ଗୁର ଆରତି

ଦିବା ଅବସାନେ ଅସ୍ତ ଅରୁଣ ରାଗେ,
ବ୍ୟଥିତ ପଙ୍ଗୁ କି ଗାଇବ ଅନୁରାଗେ ?
ଗମ୍ଭୀରେ ଗାଏ ଧନ୍ୟ କରିଛ
ଅଙ୍ଗ ପଙ୍ଗୁ କରି !
ଧନ୍ୟ ହରି ହେ ହରି !
ନିରାଶ ଭମିରେ ସହଜେ ଦେଇଛ ଧରା,
ମଧୁର ବେଣୁରେ ଡାକୁଛ ସୋହାଗେ ପରା,
ଜୀବନର ରାସେ ନେଇଛତ ହାତଧରି,
ଧନ୍ୟ ହରି ହେ ହରି ।
ମୂକ ଏ କଣ୍ଠୁ ନେଇ ବେଦନାର ଭାଷା,
ଅଶ୍ରୁ ପୂଜାରେ ଦେଇ ଉତ୍ସବ ଆଶା,
ଗିରି ଲଙ୍ଘନ ଦେଇଛ ସହଜ କରି
ଧନ୍ୟ ହରି ହେ ହରି ।
ଗଳିତ ଅଙ୍ଗ ତଳେ ମୋ ଶୋଚନା ନାହିଁ,
ସକଳ ଯେ ପ୍ରଭୁ ତବ ଆରାଧନା ପାଇଁ !
ପଙ୍ଗୁ ଆରତ ଯେବେ ଆନ ଜନ ପରି,
ଧନ୍ୟ ହରି ହେ ହରି ।
ଓର ନିର୍ଝର ! ଅଶ୍ରୁର ଜ୍ୱଳନମୟ
ଅପାର ଶାନ୍ତି ପୁଣି ତବ ବରାଭୟ,
ଏ ହୀନ ପରାଣେ ଦେଇଛତ ପ୍ରିୟ ଭରି,
ଧନ୍ୟ ହରି ହେ ହରି ।
ଜୟ ଜୟ ପ୍ରିୟ ପଙ୍ଗୁର ଭଗବାନ,
ଗୌରବ ମୋର ବନ୍ଧୁ ତୁମରି ଧ୍ୟାନ,

ସ୍ତୁହିଁ ସେହ୍ଲ ମୁଖ ପାଦ୍ଲଯାଏ ବିଭବସ୍ଥ,
ଧନ୍ୟ ହରି ହେ ହରି ।

ଜୀବନ ଦୈନ୍ୟେ ତୁମେ ହେ ପରମଧନ
ଅମା ଅଙ୍କନେ ସହଜ ମୋ ଦରଶନ !
ଦେଇଛତ ଧର୍ ଅଞ୍ଚଳ ନିଧିସରି,
ଧନ୍ୟ ହରି ହେ ହରି ।

ନାହିଁ ଯେ ଦୈନ୍ୟ ନାହିଁ କଷ୍ଟ ଅନୁନୟ
ତୁମ ସଙ୍ଗୀତ ଶିଖାଇ ହରିଛ ଭୟ ।
ତୁମରି ଇଚ୍ଛା ସହଜ ଲଭ୍ୟ କରି
ପଙ୍ଗୁରେ ଅଜ ଧନ୍ୟ କରିଛ ହରି !

ନିଃସ୍ୱ ଜୀବନ କଲ ଗୌରବମୟ,
ଜଳନ୍ତୁ ମୋ କ୍ଷୀଣ ପ୍ରଦୀପ ଜୟ ହେ ଜୟ !
ଜୀବନର ବୀଣା ଉଠେ ଜଠରେ ଥରି,
ଧନ୍ୟ ହରି ହେ ହରି ।

ଅସ୍ତ ସୂର୍ଯ୍ୟ ନାହିଁ ଅନ୍ତର ଗ୍ଲାନ
ଅଶ୍ରୁସାଗରେ ଜାଗେ ଅନ୍ଧାରେ
କୌମୁଦୀ ସୁଧାବାଣୀ !
ଧୌତ କ୍ଷତ ପରାଣ ଯେ ଯାଏ ଭରି,
ଧନ୍ୟ ହରି ହେ ହରି ।

ପଙ୍ଗୁ ଯେ ଅଜ ନବ ଅଭିସାର ପଥ
ବିଭୂଷିତ ତନୁ ତୁମ ଇଙ୍ଗିତ ମତେ ।
ପୀରତ ପୂଜାର ହେମ ଦୀପଗୋଟି ଧରି,
ପଙ୍ଗୁର ବୀଣା ନିର୍ଭୟେ ଗାଏ—
ଧନ୍ୟ ହରି ହେ ହରି ।

# * ବିୟେତ୍ରିଶ

—୧—

ରୂପତଳେ କିବା ସତ୍ୟ ରଖିଛ ଲୁଚାଇ,
ନ ସରେ ରୂପସୀ ଦିବା ନିଶି ଗୀତେ ଗାଇ;
ପ୍ରଶାନ୍ତ ଶାରଦ ତାରା ସେ ରୂପ ପ୍ରଭବା,
ମଙ୍ଗଳର ଆଦରଣ ବହିଆଣେ କିବା !

—୨—

ଧନ୍ୟ ସେ ଚୁମ୍ବିଛନ୍ତି ରୂପ ପ୍ରୀତି ମାଦକତା,
ଲଭିଛନ୍ତି ସେ ରୂପାଲୋକେ ଜୀବନର ସତ୍ତା !
ନୟନ ଅରୁଣା ଲୋକେ ମରିଛନ୍ତି ସେ ଥରେ,
ଧନ୍ୟ ସେ ବନ୍ଧିଛନ୍ତି ପ୍ରୀତି କ୍ଷତ ମରମରେ !

—୩—

ଥରେ ହେଲେ ଚିଦାକାଶେ ରୂପଛାୟାପାତ
କୌମୁଦୀ ପ୍ଲାବନ କେବେ ଅରୁଣ-ପ୍ରଭାତ !
ଶୂନ୍ୟ ପ୍ରାଣ ବିପିନରେ ମୁରଲୀ ନିନାଦ,
ସତ୍ତା ଯାଏ ହଜି କାହିଁ ଲୟ ଅବସାଦ !

—୪—

କି ମାୟା ଏ ଦୀନପ୍ରାଣେ ରଚିଲ ରୂପସି !
କି ଅମୃତ ଢାଳିଦେଲ ମୋ ବଳ ନ କଷି,
ଭୁଲେଁ କାହିଁ ସମ୍ପାଦିବ ପରମ ସମ୍ପଦ,
ନିତ୍ୟ ପ୍ରାଣାରାମ କାବ୍ୟ-ଅମୃତ ସୁଖଦ !

* ଇଟାଲୀୟ କବି ଦାନ୍ତେଙ୍କର ପ୍ରଣୟିନୀ ।

—୫—

ରୂପର ଗୌରବ ଅବା ଗାଇଯିବ ଗୀତେ,
ଅମୃତ ଆଶ୍ୱାସ ଅହା ରହିଗଲ ଚିତ୍ତେ !
ରହିଯିବ ଚିତ୍ର-ବର୍ଣ୍ଣେ ? ଉପହାସ କଥା !
କେ ବୁଝିବ କବି-ଶିଳ୍ପୀ-ଅନ୍ତର ଦୀନତା ?

—୬—

ରୂପ ଆବରଣ ପାଶେ ମରେ ଲାଜେ ବାଣୀ,
ମରଣିକୁ ଧନ୍ୟକରେ ସ୍ନିଗ୍ଧ ସେ ରୂହାଣୀ !
ପୀରତ-ଭାରତୀ-ପଦକର ମାଦକତା
ଅରଜନି ବିଶ୍ୱକଳା ତୁଳା ସାର୍ଥକତା ।

—୭—

ଖେଳ ଲୋଳ ନୟନର ମାଧୁର୍ଯ୍ୟ ପ୍ରକାଶ
ସୃଷ୍ଟିର ଅନାଦି ଉତ୍ସ ଲୀଳା ପଦ୍ମହାସ;
ଅତୃପ୍ତ ପରାଣେ ରୁହିଁ ରୁହିଁ ଦବାନିଶି
ଭାଳେଁ ପ୍ରୀତ ନେସାଲେକେ ଯାଅନ୍ତ ମୁଁ ମିଶି ।

—୮—

ହେ ଅରୂପ ଛାୟାବାଜି ଯହିଁ ଯାଅ ଚଳି,
ଚରଣ କମଳ ସେଇଁ ପଥଯାଏ ଦଳି,
ସେ ପଥେ ଫୁଟନ୍ତି ହେଲେ କ୍ଷୁଦ୍ର ଘାସଫୁଲ !
ଅମୃତ ସମ୍ପଦ ସେ ମୋ ସ୍ୱପନ ଅତୁଳ ।

—୯—

ହସିବେ ଜଗତେ କହ ରୂପ ହଳାହଳ,
ପ୍ରୀତ କ୍ଷୀଣଜୀବୀ ମତ୍ସ୍ୟ ବଡ଼ଶୀ କବଳ !

ସାର କରି ଜୀବନରେ କଳଙ୍କ ପସରା,
ଦୂରୁଁ ଦୂରେ ଅପସରେଁ ଦାଏ ନାହିଁ ଧରା !

—୧୦—

ଦୂରେ ଦୂରେ ବହୁଦୂରେ ଥାଅ ରୂପରାଣି
ଦରିଦ୍ର ପୂଜାରୀ-ସତ୍ତା ନ ପାର ଗୋ ଜାଣି,
ଦିବା ନିଶି ପୂଜା ଅର୍ଘ୍ୟ ପ୍ରୀତି ଅଶ୍ରୁଜଳ,
ଜୀବନ ନନ୍ଦନ-ହେଉ ନିତ୍ୟ ମୋ ସମ୍ବଳ !

—୧୧—

ଧନ୍ୟ ହେଉ ଏ ଜୀବନ ସେ ସ୍ମୃତି ସୌରଭେ
ଅଶ୍ରୟ ତୁମେ ଜୀବନ-କ୍ରୁର-ଉପଦ୍ରବେ,
ସେ ରୂପେ ଜୀବନ ସତ୍ୟ ସୁନ୍ଦର ସରଳ,
ସୁନା ହୁଏ ଅଲକ୍ଷିତେ ଜୀବନ ଗରଳ !

—୧୨—

ଜୀବନେ ଯା ସ୍ପୃହଣୀୟ ମରଣେ ପୂର୍ଣ୍ଣତା;
ପରାଣ ପୀଡ଼଼ଇ କାହିଁ ? ବ୍ୟବଧାନ ବ୍ୟଥା ?
ରୂପ କଷଟିରେ ପ୍ରାଣ ପରଖିଲେ ଥରେ
ଅମୃତର ମାଦକତା ସ୍ଫୁରେ ମରମରେ !

—୧୩—

ଅକାଳେ ସ୍ଫୁରଇ ତେଣୁ ସୁରଭି ନିଃଶ୍ୱାସ
ବସନ୍ତ ସନ୍ଧ୍ୟାରେ ନେଇ-ମଦିରା-ପ୍ରକାଶ
ଶାରଦ ଶେଫାଳୀ ତଳେ ଚରଣ ସଙ୍ଗୀତ
ରୂପସୃଷ୍ଟି ଗାଏ ତବ ଅନାମୟ ଗୀତ ।

—୧୪—

ଏ ସୃଷ୍ଟି ପ୍ରଚ୍ଛନ୍ନ ସତ୍ୟ ଏକରୂପ ଶିଖା
ଶିଖାଇ ସରଳ କରେ ଶତ ପ୍ରହେଳିକା;
ସସୀମ ସେ ରୂପ ତବ ଅଗୋ ରୂପରାଣି ?
ବହୁ ଦେଶ କି ବଚନ ଅସୀମର ବାଣୀ !

—୧୫—

ରୂପ ପ୍ରୀତି ଜୀବନର ପରମ-ଗୌରବ,
ଜୀବନ ମରୁରେ ରଚେ ନିତ୍ୟ ମହୋତ୍ସବ !
ବ୍ୟବଧାନେ ଲୁପ୍ତ ହୁଏ ଦେଶ କାଳ ସୀମା,
ଶିଖାଇ ଗୋ ଧନ୍ୟ ଭଲ ପୀରତି ମହିମା ।

—୧୬—

ଦୂରେ ଦୂରେ ଥାଅ ପଛେ ନବ ବଳାହକ
ତୁହିଁ ଚିର ତୃପ୍ତ ରୂପ ପିପାସୁ ଚାତକ ।
ରୂପ ଅଭିମାନ ପ୍ରାଣେ ତେଜିଲେ ଅବଜ୍ଞା
ନ ଭୁଲିବ ରୂପସୀ ଗୋ ଦୀନ କବି ପ୍ରଜ୍ଞା

—୧୭—

ଏ ସୃଷ୍ଟି ମଙ୍ଗଳ ଲାଗି ରୂପ ଅଭିସାର
ଅଭିମାନେ ଅଗ୍ନିଦାହ ନିତ୍ୟ ବ୍ୟଭିଚାର !
ସେ ସମ୍ପଦ ନ ଦହିବ ଅନ୍ଧ କୀଟ ପ୍ରାୟ
ଏ ଜୀବନ ଲାଗି ପ୍ରିୟ ନେଉଛୁ ବିଦାୟ ।



## ଯାତଣା

—୧—

ସେ ନୟନ ଚନ୍ଦ୍ରାଲୋକେ ବସିଲେ ଜୀବନ ଧନ୍ୟ ମୋର !
ଭୁଲି ଅବସାଦ ବ୍ୟାଧି ପ୍ରାଣ କ୍ଷଣେ ଅତୀତ କିଶୋର !
ବଡ଼ ସ୍ନିଗ୍ଧ ସେ କିରଣ ! ନାହିଁ ତହିଁ ବାସନାର ଦାହ,
ମାଲତୀ-କୁସୁମ-ବାସ ଅବା ନବସ୍ନିଗ୍ଧ ବାରିବାହ !
ସୁନ୍ଦର କରିଛ ମୋର ଜୀର୍ଣ୍ଣ ସୃଷ୍ଟି ! ଦୂର ଅବସାଦ !
ତୁମରି ନିଶ୍ୱାସ ପ୍ରିୟ ବକ୍ଷେ ବାଜେ ! ନୁହେଁ ସେ ପ୍ରମାଦ !
ମରଣ ଏ କାଳେ ଯେବେ ଅସିବ ଗୋ କରି ତାର ଧ୍ୱନି—
ପରମ ସୁହୃଦ ସମ କହିବି ମୁଁ ତା କାନେ ସୁନ୍ଦର—
ସୌନ୍ଦର୍ଯ୍ୟ ପରମ ସତ୍ୟ ! ସତ୍ୟ ସିଦ୍ଧି ପରମ ସୁନ୍ଦର !
ପୀରତି ଅଦର୍ଶେ ଅହା ପାଇ ଧନ୍ୟ ମାନବ ଅମର !
ବାଣୀ ହୁଏ ପରାହତ ! ଲଭି ତବ ପୁଣ୍ୟ ଅନୁଭୂତି
ଅପସରି ଯିବ ଦୂରେ ?....ସ୍ମୃତି ହେଉ ଜୀବନ ବିଭୂତି !
ନୀରବ ଜ୍ୟୋତ୍ସ୍ନାରେ ତବ ଅଭିସାର ସ୍ମୃତିଟି ଅତୁଳ !
ରଖିବି ସମ୍ବାଦ ସଖି ଦେବ କି ସେ ଶ୍ରବଣର ଫୁଲ ?

—୨—

ସୁଦୂର ଦିଗନ୍ତେ ସ୍ୱଚ୍ଛ ନୀରବକ୍ଷେ ଜ୍ୟୋତ୍ସ୍ନା ! ଚଳ ଚଳ
କାଃସ୍ତି ଏ ଅନ୍ତରେ ମମ ତବ ପ୍ରୀତି ତେସନେ ଅମଳ !
ନୟନ ମାଧୁର୍ଯ୍ୟ ତବ ଅନ୍ତର ଭୂମିରେ ରଚେ ରାସ,
ଅଣେ କିବା ମାଦକତା ! ହେଉନାହିଁ ତହିଁ କି ବିଶ୍ୱାସ ?

ସଂଜ୍ଞା ଅପହୃତ ସମ ଜ୍ଞାନର ଗରିମା ମରେ ଲାଜେ—
ପାଶେ ଲଭ୍ୟ ହେଲେ ଥରେ ଶାରଦ-ଅରୁଣ-ସ୍ନିଗ୍ଧ ସାଜେ !
ସେ କାଳେ ଚକୋର ଭଳି ଡାକେ ଅହା ଶୂନ୍ୟ ସେ ପୁଳିନ୍ଦ
"ସୁନ୍ଦର ସୁନ୍ଦରତର କେଉଁଠାରେ ସତ୍ତ୍ୱରେ ଦନ୍ତୁ ଦନ୍ତୁ ?"
ଫେରାଇ ନିଅ ସେ ଦୃଷ୍ଟି ! ବାଜେ ବକ୍ଷେ ରୁଦ୍ଧ ଦୀର୍ଘଶ୍ୱାସ !
ସେ ନୁହେଁ ବେଦନା ସତ୍ୟ ସେ ଯେ ପ୍ରୀତି-କୁସୁମ ନିଶ୍ୱାସ !
ପିଇଛୁ ଗୋ ରୂପ ସୁଧା ସକଳ ମୋ ଜୀବନଟା ଧରି
କାହିଁ ତେବେ ଅବସାଦ ? କାହିଁ ତୃପ୍ତି ପରାଣେ ସୁନ୍ଦରୀ ?
ସ୍ୱପ୍ନ ପରତୀତ ସତ୍ୟ ! ଶତ ଦୈନ୍ୟ ଲାଗେ ଅବାସ୍ତବ !
ବଦାନ୍ୟ ଇଙ୍ଗିତ ନେତ୍ରେ ତହିଁ ମୋର ଅପାର ଉତ୍ସବ !
ଏ ସୃଷ୍ଟି-ସୌନ୍ଦର୍ଯ୍ୟବୋଧ ସେ ଯୁଗଳ ନୟନର ଶିକ୍ଷା
କୁସୁମ ସମ୍ପଦ ସ୍ମୃତି ଦିଅ ମୋତେ ପ୍ରୀତି-ପ୍ରହେଳିକା !

—୩—

ଆସିବ ଶ୍ରାବଣ ରାତି ! କହିବ ଗୋ ନୟନର ଜଳ ?
ମଳିନ ଶ୍ରବଣ ଫୁଲ ହେବ ସତ୍ୟ ମୋ ଯାତ୍ରା ସମ୍ବଳ !
ଦୁର୍ଦ୍ଦିନ ଅନ୍ଧକାରେ ଆକୁଳ ପରାଣ ପଥହରା
ସକଳ ତାରୁଣ୍ୟ ମୋହ ନିଗାଡ଼ି ପିଇବ କ୍ରୂର ଜରା,
ଶୂନ୍ୟ ସେ ନିର୍ଜନ ପଥେ ନଥିବେ ଗୋ କେହି ସାଥି ସାହା,
ଅବଶ ଏ ଦେହ ମନ ଖୋଜୁଥିବ ଥରେ କହିବାକୁ ଅହା !
ଅପୂର୍ଣ୍ଣ ଜୀବନେ ସତ୍ୟ ଅପୂର୍ଣ୍ଣ ଗୋ ରହେ ଶତ ଆଶା,
ବାଷ୍ପ ବିଜଡ଼ିତ କଣ୍ଠ ପାଏ ନାହିଁ ଖୋଜି ବ୍ୟଥା-ଭାଷା ।
ସକଳ ଅସାର ମେଳେ ସଜନରେ ସାର ପ୍ରୀତି-ସ୍ମୃତି,
ସହସ୍ର ଜୀବନମେଳେ ସାର କ୍ଷଣ-ରୂପ-ଅନୁଭୂତି ।

ନିମେଷ ମିଳନେ କହେ ଉଦାସ ନୟନ ଯେତେ ବାଣୀ
ତା ତୁଲେ ଅମୂଲ୍ୟ କିବା ଜାଣେ ନାହିଁ ଅରେ ପ୍ରୀତ ଗୁଣି ।
ମଞ୍ଜୁଳ ଯାଉ ସେ ଫୁଲ ମରିବାର ନୁହେ ତାର ବାସ,
ଘନ ଅନ୍ଧକାରେ ପ୍ରୀତି-ସ୍ମୃତି ସଦା ବିଜୁଳି ପ୍ରକାଶ ।



# ରୂପାଭିମାନିନୀ

ମମ ଉଦ୍‌ଭିନ୍ନ ଯୌବନେ
ସ୍ତୁହ ଲମ୍ୱମାନ ଅହା ବାର୍ଦ୍ଧକ୍ୟର ଅମା ଅନ୍ଧକାରେ
ସବୁ ଅଁସିଲଣି ପ୍ରଭୁ ଚିର-ମୁଗ୍ଧ-କୁସୁମ ଚୟନ
ଅଶ୍ରାନ୍ତ ସମ୍ୱଳହୀନ ନାରୀ ପ୍ରାଣ ପୂର୍ଣ୍ଣ ହାହାକାରେ !
ଜୀବନ ପ୍ରଦୀପ କ୍ରମେ କ୍ଷୁର୍ଣ୍ଣ ମ୍ଲାନ ! ଦଶେ ପଥପ୍ରାନ୍ତ !
ମୁକ୍ତାର ସନ୍ଧାନ ତେବେ ନ ମିଳିଲା ଭବ ପାରାବାରେ
ନିଲୀନ ଷଟ୍‌ପଦସମ ସ୍ୱପ୍ନ ଲୋକ ଚିର ଅବଶ୍ରାନ୍ତ
ମତ୍ତ ହେଲି ନିଶି ଦିବା ସାରକର ଆତ୍ମପ୍ରଶଂସାରେ;
ସ୍ୱାଧୀନତା ମୁକ୍ତ ଭୂମି ନିଜ ଗଳେ ପିନ୍ଧାଇଲି ଡୋରି
ଜୀବନ ସରଳ ପଥ କରିଛୁ ଜଟିଳ ଇଚ୍ଛା ମତେ,
ହସୁଥିଲ ମୌନେ-ପ୍ରଭୁ ? ଯେବେ ଚିତ୍ତ ଚପଳ କିଶୋରୀ—
ମଙ୍ଗଳ-ବିଧାନ ତୁଚ୍ଛ ଗଣିଲିକୁ ବରିଲି ନିରତେ ?
ତୁମ କରୁ ମୁକ୍ତ କରି ହେଲି କ୍ଷୁବ୍ଧ ଅମୃତ ବଞ୍ଚିତା
ଆତ୍ମ ସମର୍ପଣ ସୁଖେ ମଗ୍ନ ବିଶ୍ୱ ! ପ୍ରାଣେ ମୋର ଚିନ୍ତା ।

୨—ମନେ ପଡ଼େ ପଥ ପ୍ରାନ୍ତେ, ସେ ଦିନ ମୁଁ ନବୀନା କିଶୋରୀ,
ମୋ ଯୌବନ ଉପବନ କୌମୁଦୀ-ଐଶ୍ୱର୍ଯ୍ୟେ ଗଲା ଭରି,

ଧନ୍ୟ ଯେବେ ସମୀରଣ ମୋ ଅଙ୍ଗ ସୌରଭ କର ସ୍ନେହ,
ଅସିଲ ସେ କମ୍ପ୍ର ପଦେ ସଙ୍କୁଚିତ ଭିକ୍ଷା ପାଶ୍ୱ ଧରି—
ମୋ ଭସ୍ମର ବେଦୀ ପ୍ରାନ୍ତେ ! ସଶଂଙ୍କିତ କ୍ଷୀଣ କଣ୍ଠସ୍ୱନ !
ଅଙ୍କିତ ପରାଣେ ମମ କ୍ଷୁଣ୍ଣ ତାର ମଳିନ ସ୍ମୃହାଣୀ,
ଅଜ ସ୍ମୃତି ପଡ଼େ ମନେ ଅବଜ୍ଞାରେ ପୁଚ୍ଛିଲି କାରଣ
ଫେରାଇ ଦେଲି ମୁଁ ଶେଷେ କ୍ରୂର ଉପହାସ ବାଣୀ ହାଣି !
"କୁଶଳେ ଐଶ୍ୱର୍ଯ୍ୟମୟୀ ରହ ସଦା ! ଯେଜ ନମସ୍କାରେ !
ଶୂନ୍ୟ ମୋର ସିଂହାସନ ରହୁ !" କହି ଯେଜାଲି ମେଲାଣି,
ଦଳିଲି ତା ବରମାଲ୍ୟ ଦୃପ୍ତପଦେ ! ଅଜ ଅନ୍ଧକାରେ—
ସୁଲଭ ହେବ କି ଅଜ ଦିବସର ସେ ଅମୂଲ୍ୟ ମଣି ?
ଅସିବ କି ତବ ଭକ୍ତ ? କାନ୍ଦେ ନିତ ମୋ କୁରଙ୍ଗ ପ୍ରାଣ !
ଦହେ ଅତ୍ମପ୍ରବଞ୍ଚନା, ଅତୀତ ଯୌବନ ଅଭିମାନ !

ଓ—ଖେଳୁଛ ଖେଳୁଛ ମୋହେ ! ତୁମ କରେ ଦେଇ ନାହିଁ ଧରା
ତୁମର ଅସ୍ତିତ୍ୱ ପ୍ରଭୁ ଦିନେ ହେଲେ କରିନି ସ୍ୱୀକାର,
ଚପଳତା ଲାଗି ଦଣ୍ଡ ନିଷ୍ଠୁର ଜୀବନ ସ୍ୱାମୀ ପରା;
ଏ ଶୂନ୍ୟ ମନ୍ଦିରେ ମମ ଘନଘନ କୁଳିଶ ପ୍ରହାର ?
ଅତ୍ମ ପରିତୃପ୍ତି ଲାଗି ବାସନା ବାଡ଼ବ ଦେଲି ଜାଳି,
ପତଙ୍ଗ ସମାନ ପ୍ରିୟ ଅତ୍ମଦାହ ହେଲା ସିନା ସାର ?
ଅନେ ଉପହାସ କରି ନିଜ ମୁଖେ ସିନା ଦେଲି କାଳି ?
ସଂକୀର୍ଣ୍ଣ ମୋ ମାନଦଣ୍ଡେ ତୁମ ବିଧି କଲି ମୁଁ ବିଚାର,
ନିଭିନି ବାସନା-ଦାହ ଶମିନାହିଁ ପ୍ରାଣ ହାହାକାର,
ବିକ୍ଷୁବ୍ଧ ଜନନୀ ଶୂନ୍ୟ ଅବଶ୍ରାନ୍ତ ଝଂକୃରେ ପ୍ରାଣପୁରେ !

ସୃଷ୍ଟିର ଭଗିନୀ ଛାୟା ଦମ୍ଭେ ମୋର କରନ୍ତୁ ଧିକ୍କାର,
ଝୁଣ୍ଟେ ମୋ ନାଗରୁ ସଦା ମୁକ୍ତି ଲାଗି ଗୃହଁଛି ସୁଦୂରେ !
ଅଉ ଶୁଣାହେବ କିବା ହଜିଗଲା ପ୍ରୀତି ବଂଶୀସ୍ୱନ ?
ମୁକୁଳିତ ହେବ ସତେ ଶୂନ୍ୟ ଏ ଜୀବନ କୁଞ୍ଜବନ ?



# ଯୁଗ୍ମରୂପ

"ଉଚ୍ଛନ୍ନ ହେଲଣି ଦେଶ ସର୍ବସ୍ୱାନ୍ତ ଏ ବନ୍ୟା ବିପ୍ଳବେ,
ଲକ୍ଷ କୋଟି ଜନପ୍ରାଣୀ ମୃତ୍ୟୁ ଗର୍ଭେ ଲୀନ ହେଲେ ଲ୍ବ
ଫେରାଇ ନ ଦିଅ, ଦିଅ ଇଚ୍ଛା ଯାହା ଲକ୍ଷ୍ମୀ ସ୍ୱରୂପିଣୀ !"
ମାଗୁଛନ୍ତି ସେବା ଦଳ ଭିକ୍ଷା ଗାଇ କରୁଣ ରାଗିଣୀ ।
ସେ କରୁଣ ଗୀତ ଶୁଣି ଉଦ୍‌ଗ୍ରୀବ ଲୋଚନେ ଦ୍ୱାର ଦେଶେ,
ଭିକ୍ଷୁ ହୁଏ ନାରୀ ଏକ-ଦିନ ତାର ଯାଏ ଅବା କ୍ଲେଶେ !
ବିଷର୍ଣ୍ଣ ବଦନ ମ୍ଳାନ-ବାସ ଅଙ୍ଗେ ଦାରିଦ୍ର୍ୟ ସୂଚନା
ଝରି ପଡ଼େ ଅଶ୍ରୁବିନ୍ଦୁ ଶୁଣି ଗୀତ-କରୁଣ-ମୂର୍ଚ୍ଛନା ।
ତ୍ରିତଳ ପ୍ରାସାଦ ଶୀର୍ଷେ ବିଦ୍ୟୁତ ଆଲୋକ ତୁଚ୍ଛ କରି,
ବସି ବାସକସଜ୍ଜା ଅସାମାନ୍ୟା ଷୋଡ଼ଶୀ ସୁନ୍ଦରୀ;
ଅଳି ତା ଠାପରା କରେ, "ରୂପ ହାଟେ କେ ଦେବ ତୋ ମୂଲ?"
ଜବାଧରେ ଫୁଟେ ହାସ୍ୟ ବହିଯାଏ ସଙ୍ଗୀତ ବ୍ୟାକୁଳ !
ଜନନୀର ଯୁଗ୍ମରୂପ ଭାଳି କବି ସ୍ତବ୍ଧ-ମନ୍ଦ-ମୁଗ୍ଧ
ବିଶେଷ ଆଲୋକପାତେ ଗଢ଼ିଉଠେ ନିତ୍ୟ-ସୃଷ୍ଟି ସୌଧ ।



ଅସିଥିଲ ମାଆକୁଲେ ପଡର ଗୋଠାର,
ସରଳ ସୁନ୍ଦର ବପୁ ଅଭରଣ ନାହିଁ,
ନାହିଁ ବେଶ ପରିପାଟୀ ଅଯନ୍ତ୍ର କବରୀ,
ଦିଶୁଥିଲ ତଥାପି ସେ ପୂର୍ଣ୍ଣିମାଶଶୀ ପରି !
ବିବାଧ ମୁଖମଣ୍ଡଳ ଜାଣିବ ସେ କାହୁଁ ?
ଜୁଟେ ନାହିଁ ଅନ୍ନ ଦୁଃଖେ ଆନ କଥା ଥାଉ !
ରୂପ ଦର୍ପଣଟିରେ କେବେ ସେ କାନନ ଫୁଲ,
ଜାଣିନାହିଁ କେବେ ହେବ ଆପଣାର ମୂଲ,
ନୀରବ ଜୀବନ ତାର ମନ୍ଦେ ଯାଏ ବହି,
ବରଷ ତା କେତେ ପୁଛ ନ ପାରିବ କହି ।
କି ହେବ ବରଷ ଜାଣି ? ଝରଇ କାନନେ—
ଯେତେ ପତ୍ର ପୁଷ୍ପ ଲତା କେବା ତାହା ଗଣେ ?
ଏ ସୃଷ୍ଟି ବିଧାନେ ତାର ନୀରବ ପ୍ରଶାନ୍ତ,
ଆରମ୍ଭ ନିଃଶେଷ ହେବ ତା ମନ୍ଥର ଗତି ।
ହସ ହସ ତା ନୟନ କରେ ଉପହାସ,
ନାଗରିକ କୋଳାହଳ ସଭ୍ୟତା ବିକାଶ ।
କଳ୍ପିତ ସୋହାଗ ପ୍ରୀତି ହାସ୍ୟ ଅଶ୍ରୁ ଧନ
ସେଇକ କଳ୍ପନା ତାର ! ସେ ତାର ଜୀବନ !
ସେ ପୂର୍ଣ୍ଣ ନୟନେ ସଦା ଉଠଇ ଉଛୁଳି
ଲୀଳା ପ୍ରୀତି ସିନ୍ଧୁ ଦେଖି ହୁଏ ନାହିଁ ଭୁଲି ।

× × ×

ପୋଗଣ୍ଡ କୁମାରୀ ଅବା ଯୁବତୀ ତରୁଣୀ,
ନ ଥିଲ ତ ଅବସର ହେବା ମନେ ଗୁଣି ।
କହିବ ହେ କବିକୁଳ 'ଦଶୋଟି ବସନ୍ତ—
ଏତେକ ଏକେ ଲଗି ତାକୁ କଲେ ରୂପବନ୍ତ ?'
ଭାଳିବାକୁ ନ ଥିଲ ମୋ କବିତ୍ୱ କଳ୍ପନା,
ଜୀବନ ଅମୃତ ସ୍ପର୍ଶେ ପ୍ରାଣ ମୋର ବଣା,
ବର୍ଣ୍ଣିବାକୁ ତା ଅମୃତ ମାଧୁରୀ ଗରିମା,
ଦୁର୍ବଳ ଲେଖନୀ ଅଜ୍ଞ ପାଏନାହିଁ ସୀମା ।
ଖୋଜିବ ତୁଳନା ତୁମେ ପ୍ରୀତ ରୂପ ସ୍ୱର୍ଗ,
କହିବ ପଦ୍ମ ପଲାଶ ସମ ତାର ଅଙ୍ଗ,
କାହିଁ ମାନୁନାହିଁ ଉପମା ଅଲଣା,
ତା ରୂପ ବାଖ୍ୟର ହେବ ସେ ଏକା ତୁଳନା ।
ଦେଖିଛୁ ତ ନାଗରିକ ରୂପସୀ ନାଗରୀ,
ମନେ ପଡ଼ୁ ନାହିଁ କେହି ତୁଲ ହେଲପରି ।
ଅଦ ସୃଷ୍ଟି ଅରବିନ୍ଦ ସମ ସେ ଉଜ୍ଜ୍ୱଳ !
ପ୍ରାଣ ପାରିବାର ଲକ୍ଷ୍ମୀ ସର୍ବ ଲୀଳାସ୍ଥଳ !
X X X
ମନେ ପଡ଼େ କବି ଗୁରୁ* ଦେଖି ତୁମେ ଥରେ,
ବିଷାଦ ସଙ୍ଗୀତ ଶୁଣି ପର୍ବତ କନ୍ଦରେ,
ହୋଇଥିଲ ସ୍ତମ୍ଭୀଭୂତ ! ନ ଚଳିଲା ପାଦ !
ଏସନେ ଅମୃତ ପ୍ରୀତ-ରୂପ-ପରମାଦ !
ମରୁ ପ୍ରସ୍ରବଣ ପିକ ସେ ତବ ଜୀବନେ,
ଅଶେଷ କାରୁଣ୍ୟ ପ୍ରୀତ ସହିତ ସ୍ମରଣେ,

*୧୮-୧୯ଶ ଶତାବ୍ଦୀର ବ୍ରିଟିଶ କବି Wordsworth.

ଗାଇଲ୍ ତା ଗୁଣ କେତେ ମାଧୁରୀ ତା ସ୍ୱର;
ମାତ୍ର ଏ ଆନନ୍ଦରସେ ପ୍ରାଣ ଉଠେ ପୂରି !
ଅନନ୍ତ ସୃଷ୍ଟିର ଲୀଳା ବହେ ଏ ନୟନ,
ଅମର ସଙ୍ଗୀତ ଉଚ୍ଛ୍ୱସ୍ତ ଅଧର କମ୍ପନ,
ନିଷ୍କପଟ ଅନବଦ୍ୟ ସରଳତା ମୂର୍ତ୍ତି
ଦେଖିନାହିଁ ଶିଶୁଅଙ୍ଗ ସୌଷ୍ଠବ ଅକୁଣ୍ଠ !
ଏ ରୂପ କୁସୁମ ଭୃଙ୍ଗ କ୍ଷତ କଳୁଷିତ—
କରିନାହିଁ ବୋଲି ଦିଶେ ଉଜ୍ଜ୍ୱଳ ପବିତ୍ର !
ଶୁଣିଥିଲି କବି ରୂପ ବିଷାଦ କ୍ରନ୍ଦନ,
ଦେଖିଥାନ୍ତି ଅଶ୍ରୁ-ଶୁଭ୍ର-ବଦନ-ନନ୍ଦନ ।
ଆନନ୍ଦମୟୀର ନିତ୍ୟ ପବିତ୍ର କଲ୍ୟାଣ,
ବହେ ଯେ ନୟନ ଥରେ କରିଥାନ୍ତି ପାନ !
× × ×
ତୁଚ୍ଛ କରି ଜୀବନର ସକଳ କାରୁଣ୍ୟ
ଗମ୍ଭୀର ଆନନ୍ଦ ଗୀତେ ହେ ଶିଳ୍ପୀ* ନିପୁଣ—
ଗାଇଥାନ୍ତି ଏ ଜୀବନ ଆନନ୍ଦ ଅମୃତ !
ସକଳ ତୁଚ୍ଛତା ରୂପ ସ୍ପର୍ଶେ କ୍ଷଣେ ପୂତ !
× × ×
ଅସୀମ ସାଗରେ ସେବା କୌମୁଦୀ ପ୍ଲାବନ !
ସନ୍ତୁରଉ ବୃନ୍ଦାବନେ ଅବା ବଂଶୀସ୍ୱନ !
ସୁଦୂର ଦିଗନ୍ତ ବାର୍ତ୍ତା ସଞ୍ଚିତ ନୟନେ,
ମର୍ତ୍ତ୍ୟର ଗରିମା ସବୁ ତୁଚ୍ଛ କରି କ୍ଷଣେ,
ଅତନ୍ଦ୍ରିତ ପ୍ରାଣ ରସେ ଶିଶୁ ହୁଏ ବନ୍ଧ
କ୍ଷୁଦ୍ର ବାଳିକାକୁ ଏତେ ଭେଦ ଅଭିସନ୍ଧି—

* ଭକ୍ତ କବି Wordsworth.

ତେଲ କଏ ? ଏ ମାଧୁରୀ ଯତନେ ଶିଖାଇ
ମର୍ତ୍ତ୍ୟ ଅଳେକବା ବୋଲି ଦେଇଛ ପଠାଇ ?
ଦୈନ୍ୟ ଅମା ଅନ୍ଧକାରୁ ମାଧୁରୀ ବିମଳ,
ପଦ୍ମପତ୍ରେ ଅହା ଯେହ୍ନେ ନୀର ଢଳ ଢଳ,
ଲଭିଛୁ ସକଳ ଲୀଳା ଏଥି ସାର୍ଥକତା,
ଯେ ଭଙ୍ଗୀରେ ଚରବନ୍ଦ ଅବାଧ ଦେବତା,
ଧନ୍ୟ ମୁହିଁ ! ଧନ୍ୟ ହେଲା ସାର୍ଥକ ଜୀବନ !
ସଂଶୟ ଶୃଙ୍ଖଳବନ୍ଧ ଶାପ ବିମୋଚନ !
ସକଳ ଜଟିଳ ସୃଷ୍ଟି କ୍ରମେକ୍ରମେ ସରଳ,
ପ୍ରଚ୍ଛନ୍ନ ଏ ଦୃଷ୍ଟି ତଳେ ପୀରତ ମଙ୍ଗଳ,
ସୌନ୍ଦର୍ଯ୍ୟ, ଅମୃତ-ପ୍ରୀତ, ଜୀବନ, ସଂସାର,
ଅପାର ଅନନ୍ଦେ କ୍ଷଣେ ସବୁ ଏକାକାର !
କଏ ତୁମ୍ଭ ପୁଚ୍ଛିବ କି ? କ୍ଷୁଦ୍ର ବନଫୁଲ—
ପଥହୁଡ଼ା ପାନ୍ଥଲାଗି ତୁ ନିତ୍ୟ ଅକୁଳ ?
ଗୁହେଁ ନାହିଁ କେହ୍ନ ତୋତେ ? ଦେଇନି କେ ମୂଲ ?
ମାତ୍ର ତୁମ୍ଭ ଚର ସତ୍ୟ ! ସଙ୍ଗୀତ ଅତୁଳ !
ସହସା "ଏ ସର..." ବୋଲି ଜନନୀ ସୋହାଗୀ
ଡାକିଲା ଅଦର କଣ୍ଠେ ! ସ୍ୱପ୍ନଗଲା ଭାଗି !
ଦେଖିଲି ବାଳିକା କ୍ଷୁଦ୍ର ହୋଇ ଥରଥର,
ଜନନୀ ବସୁଧା ବକ୍ଷୁ ଗୋଟାଏ ପଥର ।
ସକଳ କରମେ ତାର ଢଳ ଢଳ ମୁଖ,
ଅଲକ୍ଷରେ ଲଘୁକରେ ମୋ ଅନ୍ତର ଦୁଃଖ ।
ରହିଛୁ ସ୍ମୃତରେ ଲଖି ରୂପ-ପବିତ୍ରତା,
ତଳେ କି ବାଧିବ ଅଉ ମରଣି ତୁଚ୍ଛତା ?



# ମହାନିର୍ବାଣ*

"ସ୍ନିଗ୍ଧ ଯୁଗ୍ମ ଶାଳ ତରୁ ଛାୟା ମୁଁ ଶୀତଳ,
ବହଇ ଅନିଳ ସ୍ନିଗ୍ଧ ମନ୍ଦ ଅବିରଳ,
ଶ୍ୟାମ ଦୂର୍ବାଦଳ ନବ ନୟନ ନନ୍ଦନ,
ବିରଚ ଆନନ୍ଦ ମୋର ଅନ୍ତିମ ଶୟନ
ଅଦୂର ନିଶୀଥସମ କ୍ଳାନ୍ତ ଅବସାଦ
ଜରା ବ୍ୟାଧି ଏ ନଶ୍ୱର ଜୀବନ ପ୍ରମାଦ
ଘୋଟି ଆସେ ଗୃହକୁଁ ଧୀରେ ଚଞ୍ଚୁ ଅବସନ୍ନ
ବିଫଳେ ଭିକ୍ଷୁଛ କିବା ରଚ ମୋ ଶୟନ
ଶିଥିଳ ଶକଟ ଚକ୍ର ଜୀର୍ଣ୍ଣ ବକ୍ର ଚଢ଼,
ଦୁର୍ଗମ ବନ୍ଧୁର ପଥେ ସଂକୀର୍ଣ୍ଣ ଶକଡ଼,
ଗ୍ଳାଳ୍ଳୁ ଅଶୀତି ବର୍ଷ ବେଶୀ ନୁହେଁ ଆଜ
ମରଣର ପ୍ରାପ୍ୟ ତାକୁ ଦିଅ ଭେଳଥାଜ,
ଉଡ଼ିଯାଉ ପ୍ରାଣବାୟୁ ସହ ସେ ବହନ,
କାହିଁକି ଶୋଚନା ଅଶ୍ରୁ ବିରଚ ଶୟନ ।
ନିର୍ବାଣ ଉନ୍ମୁଖ ଶିଖା ଦିଶେ ସୁମଧୁର
ନିଃଶେଷ ଗରଜୁଁ ତୈଳ ଯେହ୍ନେ ସେ ଅତୁର,
ମିଶିବାକୁ ମହାକାଳ ପ୍ରଶାନ୍ତ ଅନ୍ଧାରେ,
ଧ୍ୱନି ଯଥା ମହାଶୂନ୍ୟ ଶାନ୍ତ ନୀଳିମାରେ,

* ବୁଦ୍ଧଙ୍କର ଅନ୍ତରଙ୍ଗ ଶିଷ୍ୟ, ସୁହୃଦ ଆତ୍ମୀୟ ଓ ଅନୁଚର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଛାୟା ପଛେ ଛାୟା ପରି ତାଙ୍କର ଅନୁଗମନ କରିଥିଲେ ।

ଝରିବା ପାଦପ ଅଙ୍ଗୁ ପଲ୍ଲବ ପତର
ନାହିଁତ ବୈଚିତ୍ର୍ୟ, ନୁହେଁ ପ୍ରକୃତ ଅନ୍ତର,
ଜନମିଲେ ମୃତ୍ୟୁ ଧ୍ରୁବ ଫେରିବ ତରଙ୍ଗ •
ସାଗର ବେଳାରେ ଥରେ ହେଲେ ଗଡଭଙ୍ଗ;
ଜୀବନେ ମାତର ଯାର ଚିତ୍ତ ସମ୍ପ୍ରୟୋଗ,
ସ୍ଥିର ଲକ୍ଷ ଯୋଗୀ ନିଷ୍ଠା ନ ଜାଣେ ବିୟୋଗ ।
ଅଟଳ ସାଧନା ବଳେ ସହଜ ନିର୍ବାଣ
ମରଣ ତା ବନ୍ଦୀସମ କରେ ଜୟଗାନ ।
ଅଗ୍ରସର ସେହି ପଥେ ! ବିଦାୟ ଏଥର !
ଶାନ୍ତ, ଶାନ୍ତ ! ପଡ଼ି ରହୁ ମର କଳେବର !

——

## ବୁଦ୍ଧ ଓ ରାହୁଳ

ଧନ୍ୟ ଅଜ ଜନ୍ମଭୂମି ! ଶାକ୍ୟ ମୁନି ଆଗତ ନଗରେ,
ପୁରପଲ୍ଲୀ ଦୂର ଗ୍ରାମ ନରନାରୀ ଆନନ୍ଦ କେ ଧରେ;
ନିବସନ୍ତି ଶିଷ୍ୟ ମେଳେ ନଗର ଉପାନ୍ତ ବଣବନେ,
ଉପେକ୍ଷିତା ଯଶୋଧାରା କ ଅବା କଳ୍ପନା ରଙ୍ଗି ମନେ —
ପୃଚ୍ଛନ୍ତି ରାହୁଳେ "ବତ୍ସ ଶୁଣିଛୁନା ଆଗତ ତୋ ପିତା ?"
ଅନ୍ଧକାର ଜନନୀଙ୍କ ପ୍ରାଣେ ତାର କାଳଲେ ଯେ ଚିତା
ଆସିଛନ୍ତି ସେ ନିଷ୍ଠୁର ! ତୁଏଁ ପଚ୍ଛେ ମୁହିଁ ନାରଖାର,
ଯାଅ ବତ୍ସ ! ମାଗ ଯାଇ ସନ୍ତାନର ଚିର ଅଧିକାର !
ଗଲେ ଯେତେ ବଂଶେବନେ ସକଳେ ପ୍ରାସାଦେ ହେଲେ ଧନ୍ୟ
ମହା କାରୁଣିକ ବୁଦ୍ଧ ସର୍ବଜୀବ ଆଶ୍ରୟ ପରମ ।

ସମ୍ବଳ ଯାଚକ ଶେଷେ,···"ଦିଅ ମୋର ନାଯ୍ୟ ଅଧିକାର !"
"ଚିର ଭିକ୍ଷୁ ତବ ପିତା ! ଭିକ୍ଷା ବସ୍ତ୍ର ତା ଜୀବନ ସାର !"
ଉଚ୍ଚରିଲେ ତଥାଗତ ମନ୍ଦେ ହସି···
"ଦ୍ୱାରେ ବୁଲି କରିବ କି ଭିକ୍ଷା ?
ବରଂ ଏ ଚୈରିକ ବାସ ଲଭ ଶ୍ରେଷ୍ଠ ନିର୍ବାଣର ଦୀକ୍ଷା !"

## *ପ୍ରକୃତି ପ୍ରଣୟ

### ଅମାବାସ୍ୟା ( ଅନ୍ଧକାର )

୧— ଝାଣନା ଉଚ୍ଛ୍ୱସି ଛୁଟି, ଛୁଟି ବନ୍ଧୁ ମୋହ ଘେନି,
ଲଜ୍ଜା ସରମରେ ମୋର ପୋଡ଼ିଯାଏ ପ୍ରାଣି ।
ରୂପହୀନା କୁତ୍ସିତା ମୁ ଅମାବାସ୍ୟା ସଖି,
ଦିବ୍ୟ ବପୁଷ୍ମନ୍ତ ତୁମେ ଆଲୋକର ସାକ୍ଷୀ ।
ସପ୍ତସିନ୍ଧୁ ମନ୍ଥି ତୁମେ ଅମୃତ ପରମ,
ଦେବଭାବାଞ୍ଛିତ୍ର ଦିବ୍ୟ ଜ୍ୟୋତି ନିରୁପମ ।
ତୁମ ରୂପ ଶୋଭା ଗୁହାଁ ଏ ସୃଷ୍ଟି ଆକୁଳ,
ସ୍ୱର୍ଗ ମର୍ତ୍ତ୍ୟ ଛଣା ସୁଧା ସେ ବଦନେ ଦୋଳ ।
କାହିଁ ତୁମେ ନିରୁପମ ! ମୁହିଁ ରୂପହୀନା !
ଲାଜେ ସଢ଼ିଯାଏଁ ବନ୍ଧୁ ଦେବାକୁ ମୁଁ ଚହ୍ନା ।

* ବୈଜ୍ଞାନିକ ଓ ଅଳଙ୍କାରିକମାନେ ଏବଂବିଧ ପ୍ରଣୟକୁ ସନ୍ଦେହ ଚକ୍ଷୁରେ ଦେଖି ପାରନ୍ତି । ମାତ୍ର କଳ୍ପନାଲୋକରେ ଏହାର ସମ୍ଭାବନା କଠିନ ନୁହେଁ । ପୂର୍ଣ୍ଣିମା "ଆଲୋକ ଦୀପ୍ତ ତରୁଣ—ଅମାବାସ୍ୟା ସର୍ବାବୟବ ଅବଗୁଣ୍ଠିତା ରୂପହୀନା ନାରୀ । ଶୂନ୍ୟଲୋକରେ ଉଭୟଙ୍କର ଅପୂର୍ବ ମିଳନ । ଚନ୍ଦ୍ରଗ୍ରହଣ ସନ୍ଧିରେ ଏପରି କଳ୍ପନା ସମ୍ଭବପର । [ରଚୟିତା]

କି ଦେଖିବ ? ଅନ୍ଧକାର କୁକ୍ଷିତ କାଳିମା ?
କି ଅବା ଜୀବନେ ତାର ଗରବ ଗରିମା ?
ସେ ଲାଗି ପ୍ରତୀଚୀ ଦ୍ୱାର ଅନ୍ତରାଳେ ରହି
ପ୍ରିୟ ବନ୍ଧୁ ରୂପସୁଧା ମରମେ ମରଇଁ !
ସେ ମୋର ପରମ ଭାଗ୍ୟ ! ନ କର ବଞ୍ଚିତା !
ଧନ୍ୟ କର କୁକ୍ଷିତାରେ ଢାଳି ପ୍ରୀତି-ଶତା ।

## ପୂର୍ଣ୍ଣିମା (ଅଲୋକ)

୨— ରହ ଆଜ କ୍ଷଣେ ସହି ହଜଇ ମୋ ଧୃତି,
ଗ୍ରହିଣିଙ୍କୁ ଅଲୋକ ସୁଧା ପାଇନାହିଁ ତୃପ୍ତି !
ତେଣୁ ରେ ସଜନି ଏତେ ବ୍ୟାକୁଳ ବାସନା,
ସେ ଅଞ୍ଜନ କାନ୍ତି ଲାଗି ନୟନ ମୋ ବଣା ।
ନାଥ ଅଙ୍କ ଅଲୋକର ସକଳ ଗୌରବ,
ସାର ହେଉ ବାଷ୍ପ-ସୃଷ୍ଟି-ପୀରତି-ଉତ୍ସବ,
ଅବରି ଦାଅ ଏ ବପୁ ସ୍ନିଗ୍ଧ ବସ୍ତ୍ରାଞ୍ଚଳେ,
ପରାଣ ଶୀତଳ କର ପ୍ରୀତିପୂର୍ଣ୍ଣ ଜଳେ !
ଅଲୋକେ ଅନଳ ତାପ ପୀଡ଼ଇ ସଜନି,
ଲୋଡ଼େ ପ୍ରାଣ ତେଣୁ ଶାନ୍ତ ଶୀତଳ ରଜନୀ,
ନାଭିଯାଉ ମୋର ସତ୍ତ୍ୱ ସ୍ନିଗ୍ଧ କାନ୍ତି ତଳେ,
ଗଳୁ ଏ ଅନ୍ତର ଯଥା ପାଷାଣ ତରଳେ ।
ଅଧର ଚୁମ୍ବନ ଶୁଭ୍ର କ୍ଳାନ୍ତ ଏ ନୟନେ,
ଶୈଶବ ସମାନ ଅଙ୍କ ଭାଗ୍ୟବାନ ମଣେ ।
ଅମାବାସ୍ୟା ? ଅନ୍ଧକାର ? ଅପୂର୍ବ ସୁନ୍ଦର
ପୀରତିଂ କମଳ ସେ ଯେ ଅକ୍ଷୁଣ୍ଣ ଅମର ।

[ ୧୯୩୪ ]



## * ସ୍ମୃତିତର୍ପଣ

୧—ତୁହୁଁ ତୁହୁଁ ଜୀବନର ଯବନିକା ପାତ !
ପୁଣି ଦିବସର ଜନ୍ମ ! ମଙ୍ଗଳ ପ୍ରଭାତ—
ନବଜାତ ଶିଶୁ ସମ ଆନନ୍ଦବିହ୍ୱଳ !
ସଦ୍ୟ ବିକାଶ ପ୍ରାଣ-ବିକଚ କମଳ !
ଜଳ ସ୍ଥଳ ଶ୍ୟାମ ଶୈଳ ଦୂର ଗିରିମାଳ,
ଜନପଦ ପୁର ପଲ୍ଲୀ ଶାନ୍ତ ଚକ୍ରବାଳ,
ଜାଗ୍ରତ ସକଳେ ଶୁଭ୍ର ଆଲୋକ ଆହ୍ୱାନେ !
ଜାଗିଛି ମୁଁ ସୁଗଭୀର ବ୍ୟଥା ବହି ପ୍ରାଣେ !
ଭ୍ରମଇ ନିଭୃତ ଶାନ୍ତ ତଟିନୀ ପୁଲିନେ
ନିଃସଙ୍ଗ ଏକାକୀ ! ବନ୍ଧୁ, ମନେ ପଡ଼େ ଦିନେ ?
ଭ୍ରମୁଥିଲୁଁ ବେଳା ଜଳ ଏଥି ଲଘୁ ମନେ,
ବାର୍ଦ୍ଧକ୍ୟ ତରୁଣ ଅନ୍ତରର ପ୍ରୀତି ଧନେ !
ଆଜ ତୁମେ ନାହିଁ ! ତଳେ ନୁହଇ ବିଶ୍ୱାସ
ଅଜାଣତେ ଝରଇ ଅଶ୍ରୁ ଦୀର୍ଘ ଭଗ୍ନ ଶ୍ୱାସ !

୨—ଏହି ସେ ଏକାକୀ ହଂସ !—ଦୂର ମାନସର ?
ଅତିକ୍ରମି ନଦୀ ଶୈଳ ଚଳେ ଖରତର !
ବହି ମୃତ୍ୟୁ ଗୁରୁ ବ୍ୟଥା ଚଳଇ ନୀରବେ,
ଆଲୋକେ ଅନ୍ଧାରେ ଅଶ୍ରୁ-ଆନନ୍ଦ ଉତ୍ସବେ ।

* ସ୍ୱର୍ଗତ ପୂଜନୀୟ ବିଶ୍ୱନାଥ କର ମହାଶୟଙ୍କ ଉଦ୍ଦେଶ୍ୟରେ ।

—ରଚୟିତା—

ନୀରବେ ଚଳିବା ପଥ କରିଛୁ ସେ ସାର,
ତୁଚ୍ଛ କରି ଆତ୍ମଦୈନ୍ୟ ଅଶ୍ରୁ ହାହାକାର !
ତା ଗତିରେ ପଥ ମୋର ଦିଶଇ ସରଳ
ପ୍ରତୀତ ଅମୃତ ପ୍ରାୟେ ଜୀବନ-ଗରଳ !
ମାତ୍ର ତୁମେ ନାହିଁ ? ବହିଯାଏ ଶାନ୍ତ ନଦୀ—
ଅସ୍ପଷ୍ଟ ପଶ୍ଚିମେ ନୌକା ଚଳେ ନିରବଧି,
ଢଙ୍କାଣି ତଟିନୀ-ସ୍ରୋତେ ପ୍ରଶାନ୍ତ ଗୌରବେ !
ତୁମେ ନାହିଁ ? ପ୍ରତୀତ ତ ହେଉ ନାହିଁ ଲବେ ?
ଅମର ତାରୁଣ୍ୟ ଲୟ ଛିନ୍ନ କରି ଗ୍ରନ୍ଥି !
ଶିର ଅବନତ ମୋର ହସଇ ନିୟତ !

୩—ଜ୍ୱଳନ୍ତ ଚିତାରେ ଦେହ ଆସିଅଛି ଲଦି,
ଆନ ଥର ପରି କେତେ ସହିଅଛି ବଧି !
ବହୁବାର ଅକାତରେ ଦେଇ ମୃତ୍ୟୁ ଦେୟ,
ଆତ୍ମୀୟ ସ୍ୱଜନ ବନ୍ଧୁ ପ୍ରୀତି ସୌଖ୍ୟ-ଶ୍ରେୟ
ଅନ୍ତର ଅଚଳ ଶିଳା ଶୂନ୍ୟ ! ବଡ଼ ଶୂନ୍ୟ !
ମରଣ ରହସ୍ୟ ତେବେ ଭେଦିବା ନୈପୁଣ୍ୟ—
ନ ଲଭିଲି ତଳେ ! ତେଣୁ ତବ ଅଦର୍ଶନେ—
ଶିଶୁ ସମ ଆପଣାକୁ ଅସହାୟ ମଣେ !
ଶିଶୁ, ମୁଁ ମାନବ ଶିଶୁ ! ନିତ୍ୟ ପ୍ରୟୋଜନ—
ଏ ଦୁର୍ବଳ ପ୍ରାଣେ ତବ ବିଶ୍ୱାସ ଦର୍ଶନ !
ପ୍ରୀତିରସାଣିତ ଜ୍ଞାନ ସୂକ୍ଷ୍ମ-ଅନୁଭୂତ,
ଭାସ୍ୱର ଅବିନଶ୍ୱର ସ୍ଥବିର ବିଭୂତ,
ଥିଲା ମୋର ପ୍ରୟୋଜନ !—ଶୂନ୍ୟ ପଥ ତୃପ୍ତି !
ଶୂନ୍ୟ ସେ ସକଳ, ସ୍ୱପ୍ନ—ଅଜ୍ଞ ସ୍ମୃତି ! ସ୍ମୃତି !

୪—ଏକାକୀ ମରାଳ କେଉଁ ଶୂନ୍ୟେ ଗଲା ଉଡ଼ି !
ରହିଗଲା ପଛେ କିସ ? ଅସିଥିଲା ତୁଣ୍ଡି ?
କି ଭାଳି ଅସିଲା ଏଥି ? ପୁଚ୍ଛେଁ ମୁହିଁ ଯନ୍ତ୍ରୀ !
ଉତ୍ତରେ ନିଯୃତ ହସି ! ଶୂନ୍ୟ ! ମହାଶୂନ୍ୟ !
ମହାଶୂନ୍ୟେ ତୁହିଁ ତୋର ବିଳାପ ନିଷ୍ଫଳ ।
ଭ୍ରାନ୍ତ ନର ! ପୋଚ୍ଛୁ ବିରହର ଅଶ୍ରୁଜଳ !
ମରଣେ ସ୍ୱୀକାର କର ! ପ୍ରଣମ ବିଧାନେ !
ତୁହିଁ ଦେଖ ଚିତାନଳ ଜଳେ ତୋର ପ୍ରାଣେ !
ମହାଶୂନ୍ୟେ ପ୍ରାଣବାୟୁ ହସିଯାଏ ଲେଉଟି,
ଭ୍ରମେ ମୁକ୍ତ ହଂସ ନ ଝାଡ଼ଇ ପର ଗୋଟି !
ସାର ଅବିରାମ ଯାତ୍ରା ମହାଶୂନ୍ୟେ ତୁହିଁ,
ପାଥେୟ ସେ ଦୁଃଖ ଅଶ୍ରୁ ସଙ୍ଗୀତଟି ଟାଇ,
ଉଡ଼ିଯିବା ଦେଶାନ୍ତର କରନ୍ତି ସେ ସାର,
ତା ମୁକତି ମନ୍ତ୍ର ଏକା ତୋର ଆପଣାର ।

୫—ନିସ୍ତରଙ୍ଗ ନୀଳାକାଶ ଶୂନ୍ୟ ! ମହାଶୂନ୍ୟ !
କେ କହିବ କାହିଁ ଗଲା ବିମୁକ୍ତ ଶକୁନ ?
ନ ଦଶଇ ପଥଚିହ୍ନ, ତୁହିଁଟି ନିରାଶ !
ରହିଗଲା ଶୂନ୍ୟମାର୍ଗେ ମୁକତି ଆଭାସ !
ସେ ଆଭାସ ଅମୃତର ଅପୂର୍ବ ଇଙ୍ଗିତ !
ଘୋଷେ ମହାଶୂନ୍ୟେ !......ଯଥା ମୃଦଙ୍ଗ ସଙ୍ଗୀତ !
ସପ୍ତ ପାରାବାର ତଳେ ଅହା କି ମଧୁର !
ଗଲା ଉଡ଼ି ଯାଉ ପଛେ, ନୁହେ ମୁଁ ବଧିର !

ଯେ ମୁକ୍ତ ଆଭାସ ମନ୍ତ୍ର ପରମ ସମ୍ବଳ,
ଦୀନ ଏହି ଜୀବନର ! ପ୍ରୀତି-ଅଶ୍ରୁଜଳ—
ଗହନ ଅନ୍ଧାରେ କରେ ପ୍ରାଣ ପରିପ୍ଲୁତ,
ଜାଗ୍ରତ ମୋ ଉଷ୍ଣ ଆଶା ଆଶ୍ୱାସ-ଅମୃତ !
ତେସନେ ତୁମର ଗତି ! ସେ ଅସ୍ପୃଷ୍ଟ ସ୍ମୃତି !
ବହିଆଣେ ମୁକ୍ତମନ୍ତ୍ର, ମଙ୍ଗଳ ବିଭୂତି ।

୬—ବିସ୍ତୀର୍ଣ୍ଣ ପ୍ରକୃତି । ଧାନ୍ୟକ୍ଷେତ୍ର ସୁପ୍ରସାର !
ଶ୍ୟାମଳ ଐଶ୍ୱର୍ଯ୍ୟେ କିବା ରୁଚିର ଉଦାର ।
ସୃଷ୍ଟିର ମଙ୍ଗଳ ତହିଁ ସମ୍ପୂର୍ଣ୍ଣ ପ୍ରକାଶ,
ବିଜନ ଆଲୋକ ଦିବା ଶୈଶବ ଆଭାସ ।
ଏସନେ ସ୍ୱରୂପ ତବ ସମ୍ପୂର୍ଣ୍ଣ ସୁନ୍ଦର,—
ପ୍ରଶାନ୍ତ ଗମ୍ଭୀର ସ୍ୱଚ୍ଛ ମଧୁର ଅନ୍ତର,
ରୁକ୍ଷ ପ୍ରାଣ ଗୁପ୍ତଧନ ଭୁଲିଛି ମୁଁ ପ୍ରାସ,
ତୁଚ୍ଛ କରିଅଛି କାଳ କ୍ରୂର ଉପହାସ ।
ବାର୍ଦ୍ଧକ୍ୟ ତାରୁଣ୍ୟ ପୁଣି ତରୁଣ ସ୍ଥବିର,
ଅଦ୍ଭୁତ ଏସନେ ମର୍ତ୍ତ୍ୟେ ବେଭାର ପ୍ରୀତିର ।
ଡାକିଅଛି ବନ୍ଧୁ ବୋଲି······ସହାସ୍ୟ ନୟନେ—
ତୁହିଁ ମୁଖେ ମୋର ମୌନ । ···ନୀରବ !···ମୁଁ କ୍ଷଣେ—
ପୁଚ୍ଛଇ ବାର୍ଦ୍ଧକ୍ୟ ପ୍ରୀତି ଲାଗେ ଅସମ୍ଭବ ?
ସକଳ ସମ୍ଭବ କରେ ମୃତ୍ୟୁ ଅନୁଭବ ।

୭—ରଖିଛ ତାରୁଣ୍ୟ ଠେକ ମୃତ୍ୟୁଲୋକ ଭେଦ,
ମାତର ବାର୍ଦ୍ଧକ୍ୟ ଦ୍ୱାର ନ ପାରେ ମୁଁ ଛେଦ ।

କାଧେ କାଳ ଉପହାସ ! ମୂକ ପଶୁସମ—
ଢାଳିଦିଏଁ ଅଶ୍ରୁବିନ୍ଦୁ ! ନିଷ୍ଠୁର ନିର୍ମମ—
ନିୟତି ସମ୍ମୁଖେ ମୋର ଦ୍ୱିଗୁଣ କଠୋର
କା ଲାଗି କରିବ ଗର୍ବ ତରୁଣ କିଶୋର ?
କି ବା ତାର ଶୂନ୍ୟପଥେ ସହାୟ ସମ୍ବଳ !
ଆତ୍ମତୃପ୍ତି, ଅଭିମାନ, ଦମ୍ଭ ଅଶ୍ରୁଜଳ ?
ତୁଚ୍ଛ କରେ ସବୁ କାଳ !......

ଅମୃତ ତାରୁଣ୍ୟ

ସମ୍ଭବ ବିଶ୍ୱାସେ ଜ୍ଞାନେ । ତେଣୁ ତବ ପୁଣ୍ୟ,
ସ୍ଥବିରର ଦିବ୍ୟଶାନ୍ତି, ପରମ ଗୌରବ—
ମୋ ଚପଳ ଜୀବନର ! ଶାନ୍ତ ପ୍ରଭା ତବ
ଲୋଡ଼ଇ ଅକୁଳପ୍ରାଣେ ! ଶୁଣଇ ଅନ୍ତରେ
ଅସ୍ପଷ୍ଟ ଆଶ୍ୱାସବାଣୀ ! ମାଏ ଦୂରେ···ଦୂରେ !

୮—ବିସ୍ତୀର୍ଣ୍ଣ ସାଗର ! ପ୍ରଭଞ୍ଜନ ଭୟଙ୍କର !
ଉତ୍ତାଳ ତରଙ୍ଗମାଳ ପର୍ବତ ଆକାର ।
ବିକଟ ଗର୍ଜନ-ହାସ୍ୟେ ଉପୁଜେ ଆତଙ୍କ !
ଦୁର୍ଜୟ ସୈନିକ ସମ, ନିର୍ଭୀକ ନିଃଶଙ୍କ—
କାଟି ଚାଲେ ଲକ୍ଷ ଭେଦି ଆପଣା ସରଣୀ
ସାଗରେ ଅମିତ ବପୁ—ବାଷ୍ପୀୟ ତରଣୀ !
ସ୍ଥିର ଲକ୍ଷ୍ୟ ସେ ବିକ୍ରମେ ଭେଦି ରହେ ହଟି,
ବିଜୟ ଗରବେ ପୋତ ଯାଏ ସେ ଚହଟି !
କ୍ରମେ ଯାତ୍ରା ଶେଷେ ସ୍ଥିର ହୋଇ ଅସେ ଗତି,
ଦୂରେ ଦିଶେ ପୋତାଶ୍ରୟ ! ଆଶ୍ରୟ ମୁକତି !

ସ୍ୱପ୍ନ ସେହି ବଂଶୀସ୍ୱନ ! ତେସନେ ଏ ବନ୍ଧୁ—
ମେଲଣି ନେବାର ବେଳେ, ନିର୍ବାଣ ପୁରନ୍ଧ୍ରୁ—
ସେ କ୍ଷୀଣ ଜୀବନଦୀପ ଗଡ଼ ହେମେ ସ୍ଥିର ।
ଗଣୁଥିଲ ଶେଷ ଶ୍ୱାସ ପାର୍ଶ୍ୱେ ତାଳ ମୀର !

୯—ଅନନ୍ତ ଅଶ୍ରୁ ମୃତ୍ୟୁ ପରମ ଅଶ୍ରମ ।
ଏ ଜୀବନପୋତ ତହିଁ ଲଭିବା ବିଶ୍ରମ—
ନୁହେ ଅଦଭୁତ କିଛୁ !…ମାତ୍ର ତା ଗୌରବ—
ନ ଲଭି ସାଗରବକ୍ଷେ ଲୟ, ପରାଭବ,
ନ ହେଲ ସଂକଲ୍ପ ନୋହି ଭଗ୍ନମନୋରଥ,
ତରଙ୍ଗେ ନ ହୋଇ ଗ୍ରାସ ଗ୍ରହିଲବାର ପଥ,
ଅରଜିଛ ସେ ଗୌରବ ଅକ୍ଳାନ୍ତ ସୈନିକ !
ମରିବାର ଶୁଣା ନାହିଁ ଦୁର୍ଜୟ ନିର୍ଭୀକ ।
ମୁଦିଛ ନୟନ ହସି ଶାନ୍ତପ୍ରାଣାରାମେ
ଲଭିଛ ପରମ ଗତି ଦେବ ଦିବ୍ୟ ଧାମେ ।
ଲଗି ନାହିଁ ଏ ମର୍ତ୍ତ୍ୟର କାଳିମା କର୍ଦ୍ଦମ,
ଭେଦିଛ ଦୁର୍ଗମ ବ୍ୟୂହ; ସାଧିଛ ଧରମ ।
ସତ୍ୟର ପୂଜାରୀ ! ଧନେ ଦେଖି ନାହିଁ ଭ୍ରାନ୍ତ,
ନିର୍ଜୀବ ଜାତିକି ଦୀକ୍ଷା ଦେଲ ଜୀବ ମାତ୍ର ।

୧୦—ମହାଶୂନ୍ୟେ ବଂଶୀଧ୍ୱନି ! ପ୍ରଣବ ସଙ୍ଗୀତ ।
କିଏ କାହିଁ ପାଇଁ କଲା ଧ୍ୱନି ବିଚଳିତ ?
କିଏ ବା ଉତ୍ତର ଦେବ ?……ହେଲ କ୍ଷୀଣଧୃତ—
ମିଶିଲ ସେ ଅବା ନାହିଁ ?……ରହିଗଲା ସ୍ମୃତ !

କାହିଁକି ଡାକୁ ତୁ ଅଶ୍ରୁ ? ଲୁହଁ ବା ଅନ୍ତରେ ?
ଅବିରାମ ସ୍ଫୁରେ ଧ୍ୱନି ! ମିଶେ ଶୂନ୍ୟ ପୁରେ !
ଶୂନ୍ୟ, ମହାଶୂନ୍ୟ ! କିଛି ମିଳେ ନାହିଁ ସଙ୍ଗ !
ଅଦ୍ଭୁତ ଉଦ୍ଭବ ତାର । ରଙ୍ଗ ସ୍ପନ୍ଦିତ ବ୍ୟଥା-
ଦୁର୍ନିବାର ତୃଷା ଜାଳ ନିର୍ବାପିତ ଅହା,
ଆନନ୍ଦ ଅମୃତ ଗତି, ପ୍ରାଣ ପୁରେ ଲୁହାଁ !......
କି ଶୁଭେ ନିଗମ ପୁରେ ? ଅନ୍ତରେ, ବାହାରେ,-
ଶୂନ୍ୟେ, ନୀଳାକାଶେ, କ୍ଷୀଣ ସେ ତଟିନୀ ଧାରେ ?
ସର୍ବତ୍ର ସ୍ଫୁରଣ ତାର ! ନାହିଁ ଅନ୍ତ ଅଦ !
ନିର୍ଦ୍ୱନ୍ଦ୍ୱେ ବାତୁଳ ମନ ରଖ ତା ସମ୍ବାଦ !

୧୧—ପୋଛୁ ବନ୍ଧୁ ସ୍ୱାର୍ଥ ଅଶ୍ରୁ ମୁଦିଲେ ନୟନ,
ନିଭୃତେ ମୋ ଶୂନ୍ୟପୁରେ ସେ ଧ୍ୱନି ସ୍ଫୁରଣ ।
ଅପୂର୍ବ ସେ ଧ୍ୱନି ତୁଲେ ଶାଶ୍ୱତ ବାରତା ।
ଜାଗଇ ଅନ୍ତରେ ଲକ୍ଷ ସ୍ମୃତିର ମମତା ।
ଶାଶ୍ୱତ ଅମୃତ ସୃଷ୍ଟି ଦୀପ୍ତ ପୁଣ୍ୟଲୋକ,
ଲଭେ କି ନଶ୍ୱର ମୋର ଗ୍ଲାନି ବ୍ୟଥା ଶୋକ ?
ମରଇ ବିରହ ବହ୍ନି, ମୃତ୍ୟୁ ଲାଜେ ଲୁଚେ,
ଲୁପ୍ତକର ସଙ୍ଗ ଯେବେ ସେ ଧ୍ୱନି ମୁରୁଛେ ।
ଅପୂର୍ବ ମିଳନାମୃତେ ସୃଷ୍ଟି ଉଦ୍‌ବେଳିତ,
ସବୁ କରେ ଏକାକାର ଅପୂର୍ବ ସଙ୍ଗୀତ ।
ସକଳ ହଜିଲା ଧନ ମିଳେ ମୋର ତହିଁ,
ଲକ୍ଷ କୋଟି ପଦ୍ମଫୁଲେ ହସେ ଜୀର୍ଣ୍ଣ ମହୀ;
ହସଇ ଶ୍ମଶାନ-ଭସ୍ମ, ଶିଖା ଉଠେ ଥର;
ଶିବ ଅଶୀର୍ବାଦ କାର ଶୂନ୍ୟ ପଡ଼େ ଝର ।

୧୨—ସେହି ଶୁଭ ଅଶୀର୍ବାଦେ ଲଭେ ତୁମ ସତ୍ତା
ଶୁଣଇ ନୟନ ମୁଦି ହଜିଲି ବାରତା ।
ସକଳ ଅପ୍ରିୟ ପ୍ରିୟ ମୃତ ଉଠେ ଜାଗି ।
ଅଘଟଣ ଘଟଣ ଏ କଲି କେଉଁ ବିଧି ?
କିଏ ବଜାଇଲା ବଂଶୀ ? ଏ କାର ପ୍ରକାଶ ?
ଦେଖଇଁ ଅଧୁରେ ବନ୍ଧୁ କର ସ୍ମିତ ହାସ !
ପୂର୍ବ ଅନୁରାଗ-ସୁଧା ଲାଗିଛି ଅଧରେ,
ପୂର୍ବପର ଦିବ୍ୟ ଶାନ୍ତ ଦୀପ୍ତ ନୟନରେ !
ଅପୂର୍ବ ଉଜ୍ଜ୍ୱଳ ବିଭା ପ୍ରଶାନ୍ତ ଆନନ,
ମୋ ବିରହ ଗ୍ଲାନି କରେ ତୁଚ୍ଛ ଅକାରଣ ।
ସେ ହାସେ ଝଲସେ ଶତ ଜନମର ସ୍ନେହ,
ପିତୃ ଅଶୀର୍ବାଦ ପୁଣି ସକଳ ମୋ ଶ୍ରେୟ,
ବନ୍ଧୁ ପ୍ରୀତି ଶିବ-ଇଚ୍ଛା କରଇ ପ୍ରସାର ।
ଅଦୃଷ୍ଟ ହେ ଧ୍ୱନିକାର ! ଘେନ ନମସ୍କାର !

୧୩—ଧ୍ୱନିରୁ ଜନମି ବନ୍ଧୁ ମିଶିଛ ଧ୍ୱନିରେ,
ଦେବ ନାହିଁ ଧରା ସ୍ୱାର୍ଥ ଅଶ୍ରୁ ବନ୍ଧନୀରେ ।
ଶୂନ୍ୟର ଶବଦ ତୁମେ ଲଭିଛ ବିଶ୍ରାମ—
ମହାଶୂନ୍ୟେ ! ପୂରିଅଛୁ ସ୍ରଷ୍ଟା ମନସ୍କାମ ।
ବିପୁଳ ତରଙ୍ଗ ସିନ୍ଧୁ ବକ୍ଷୁ କ୍ଷଣେ ଉଠି,
ଭାଙ୍ଗି ବାଲିସ୍ତୂପ ପୁଣି ଯାଇଛୁ ଲେଉଟି ।
କ୍ଷଣିକ ପ୍ରକାଶେ ତବ ସାର୍ଥକ ଜନମ,
ଶୂନ୍ୟ ଭଜ ଭୁଲିଅଛ ମରଲୋକ ଭ୍ରମ !

ଅଜର ଏ ଦିବାସମ ଅଲୋକ-ଚୁମ୍ବନ !
ବିଦ୍ୟୁତ-ଚମକ, ଦିବ୍ୟ-ଦୀପ୍ତି-ଅନୁପମ !
ସ୍ଫୂର୍ତ୍ତି ହୋଇ ମହାଶୂନ୍ୟେ ଲଭିଅଛ ଲୟ,
ଗାଇଛ ଅମୃତ ସୃଷ୍ଟି ସୃଷ୍ଟି-ଧାତା ଜୟ !
ହେ ଅମୃତ ଧ୍ୱନି ଧନ୍ୟ ତୁମର ବିଭୂତି !
ଯାଇଅଛ ଯାଅ ବନ୍ଧୁ ! ଥାଉ ପୁଣ୍ୟ ସ୍ମୃତି ।

୧୪—କୈଶୋରର ମରୁବାତ୍ୟା ମନେ ପଡ଼େ ଅଜ
ପୁରାତନ ଇତବୃତ୍ତ !—ଉଠିଲା ସେ ବାଜ…
ସନ୍ଦେହ ଦୁନ୍ଦୁଭି ମନ୍ଦ୍ରେ ପ୍ରାଣେ ଦେଲା ନାସ,
ଚିର ଅନଭିଜ୍ଞ ଭ୍ରାନ୍ତ କ୍ରୁର ଅବିଶ୍ୱାସ ।
ସନ୍ଦେହ୍‌ଧିତା ଅଟ୍ଟହାସେ ଜାଗିଲେ ପିପାସା
ଶୁଣିବାକୁ ମାନବର ଚିରନ୍ତନ ଭାଷା !
ଜୀବନର ସ୍ୱର୍ଗ ଲାଗି ପରାଣ ବ୍ୟାକୁଳ,
ବିଶ୍ୱାସ ଭରସା ଅଣେ ନେବେ ଅଶ୍ରୁ ଦୂଲ ।
ଏତେ ବଡ଼ ଦେଶ ଗୋଟା ଚଷିଦିଗ ଗୁହିଁ,
ଲୋକ ଭଳି ଜଣେ ଲୋକ ନ ଦେଖିଲି କାହିଁ
ବ୍ୟବସାୟ ବଣିକର ଭିଡ଼ ଚାରିପାଖ !
ନୀଚ ସ୍ୱାର୍ଥ ସ୍ୱଳ୍ପବୃଦ୍ଧି ଜୀବନର ଡାକ—
ଶୁଣିବା ସମ୍ଭବ କେବେ ?……
ଶୁଣିଥିଲି ତୁମେ !
ଲତା-କୁଞ୍ଜ-ପ୍ରସ୍ରବଣ ସମ ମରୁଭୂମେ ।

୧୫—ନିଃସଙ୍ଗେ ଦେଇଛ ସଙ୍ଗ ବଢ଼ାଇଛ ବଳ,
ପରମ ଉଦାର ବନ୍ଧୁ ଫେଡ଼ିଛ ଅନ୍ତର !

ସ୍ନେହ ମୈତ୍ରୀ ଅନୁକମ୍ପା ଦିବ୍ୟ ଭୂମାନନ୍ଦ,
ପରିପୂର୍ଣ୍ଣ ସେ ଅନ୍ତରେ, ସ୍ପୃହଁ ମଲ୍ଲଦ୍ୱନ୍ଦ୍ୱ !
ପିତାର ଅଶ୍ୱାସ ପ୍ରୀତି ବନ୍ଧୁ ଉତ୍ତେଜନା,
ସାଧକର ସତ୍ୟନିଷ୍ଠା ଅମୃତ ମୂର୍ଚ୍ଛନା,
ଦେଖି ତହିଁ ଶାନ୍ତ ପ୍ରାଣ ଅବିଶ୍ୱାସ ଫଣୀ,
ପିଇଛି ଜୀବନ ରସ ପ୍ରମାଦ ନ ଗଣି ।
ଆଜ ତୁମେ ନାହିଁ ପାଶେ ! ଲାଗେ ସ୍ୱପ୍ନ ପରି !
ଶୂନ୍ୟ ପ୍ରାଣ କାନ୍ଦେ ଯେହ୍ନେ ନିଃସଙ୍ଗ କୁରରୀ ।
ସୁନ୍ଦର ଅଛନ୍ତି କେତେ ଦେଖଇ ନୟନ,
ମାତ୍ର ବହଇ କେ କହ ଅନନ୍ତ ଯୌବନ ?
ଖୋଜି ବୁଲେ ମରୁପ୍ରାନ୍ତେ ସ୍ଥାନ କାହିଁ ?...

ହାୟ !...

ବିଦାୟ ତରୁଣ-ବନ୍ଧୁ ବିଦାୟ ! ବିଦାୟ !

୧୨— ଜୀଇ.ଅସିଲାଣି ଲେଲିହାନ ଚିତାନଳ !
କାହାରେ ନୟନ ମୁଦେ ଏକାକୀ କମଳ !
ଯାଏ ନଦୀ ପରପାରେ ନିଃସଙ୍ଗ ରଥାଙ୍ଗ;
ଭବରଙ୍ଗଭୂମି କ୍ରୀଡ଼ା ଧୀରେ ହେଲା ସାଙ୍ଗ ।
ଦିବସ କଳ୍ପନା ଅହା ମିଶିଲା ଅନ୍ଧାରେ ।
ଅନନ୍ତ ଭରସା କାର ରୁଦ୍ଧ କାରାଗାରେ !
ସ୍ପୃହଁ ବନ୍ଦୀ ବହେ ଦଗ୍ଧ-ଦୁଃସହ-ଜୀବନ,
ବିରହ ମରଣ କିଛି ନୁହେଁ ଅକାରଣ ।
ସେହି ଧ୍ୱନି ? ସେହି ବାଣୀ ?......ପରମ ଆଶ୍ରୟ ?
ଯା ଯୋଗୁଁ ଅନ୍ତର ତବ ନିର୍ଦ୍ୱନ୍ଦ୍ୱ ନିର୍ଭୟ ?

ଶୁଣେ ସେ ନିର୍ଝର ବାଣୀ ଅସ୍ପଷ୍ଟ ସନ୍ଧ୍ୟାରେ,
ପ୍ରକାଶ ପରମ ଜ୍ୟୋତି ମୋହ-ଅନ୍ଧକାରେ ।
ସେ ଜ୍ୟୋତି ପ୍ରକାଶ ଯେଉଁ ତୁମେ ଅଗ୍ନିକଣା ।
ଅଜ୍ଞାନ ଲୋଚନେ ଦୃଷ୍ଟି ନୁହେଁ ଅଭ ବଣା ।

୧୭—ନିମୀଳିତ ହେଉ ଦେବା ପଦ୍ମ ନିମୀଳିତ,
ମଉଳୁ ପଛକେ କ୍ଷଣେ ଧ୍ୱନି ଅନ୍ତହିତ,
କୌମୁଦୀ ଝାଉଁଳି ପଡ଼ୁ ଘନ ବନାନୀରେ,
ଅମୃତର ସ୍ମୃତି ଆଜ ଭୁଲି ହେବ କିରେ ?
ତରଙ୍ଗ ଲେଉଟି ଯାଉ ଦିଗନ୍ତ ସାଗରେ,
ସ୍ଫୁରିତ ବିଦ୍ୟୁତ ଆଭା ମିଶୁ ଅନନ୍ତରେ,
ନ ଫେରୁ ପଛକେ ପ୍ରୀତି-ମଦିର-ନୟନ,
ମଉଳୁ କୁସୁମ, ଶୁଖୁ ଝଙ୍କାର-ଜୀବନ,
କଣ୍ଠେ ମରୁ ପଛେ ମୋର ବ୍ୟଥିତର ଭାଷା,
ମରିବାର ନୁହେ ଅଭ ଅମୃତର ଆଶା ।
ଭୁଲି ହେବ ଆଜ ସତେ ଅଦୃଷ୍ଟ-ବିଧାନ,
ଶିବ-ଆଶୀର୍ବାଦ, ବ୍ୟଥିତର ପ୍ରାଣାରାମ ?
ଯେ ବିଧାନ ବନ୍ଧୁ ତୁମେ କରିଛ ସ୍ୱୀକାର,
ନୈରାଶ୍ୟ ମରଣ ଦଳି କରେଁ ନମସ୍କାର ।

୧୮—ଯାଉଅଛ ? ଯାଅ ।···ପୂଜ୍ୟ, ପରମ ଅମ୍ଳୀୟ ।
ଅନ୍ତିମ ବେଳାରେ ନିଃସ୍ୱ ନମସ୍କାର ନିଅ ।
ନ କରୁ ଏ ଅଶ୍ରୁ-ସ୍ୱାର୍ଥ-ମୋହ ଗତିରୋଧ,
ଜାଣିଛ ତା କୁସଂସ୍କାର, ମୃତ୍ୟୁ ପ୍ରତିଶୋଧ ।

ଚିରମୁକ୍ତ ତୁମେ ବନ୍ଧୁ ଲଭି ବ୍ରହ୍ମଭୂତ,
ମରଣକୁ ଅମୃତରେ ଦେଇଛ ଅଦ୍ଭୁତ ।
ଦେଖିଲି ଜୀବନେ ଯାହା ଆନନ୍ଦ ଅମୃତ,
ମୃତ୍ୟୁ ଆଜି କଲା ତାକୁ ପ୍ରାଣେ ଦୃଢ଼ୀଭୂତ ।
ସୁପ୍ରଶାନ୍ତ ଦିବ୍ୟ ଜ୍ୟୋତି ଦିଶେ ନିର୍ବିକାର ।
ସୁଦୂର ଦିବସ ଅଭ୍ର ଆଲୋକ ପ୍ରସାର ।
ଯେ ଆଲୋକ ଯୁଗେ ଯୁଗେ ଲଭଇ ଜନମ
ଯେ ଜ୍ୟୋତି ସଞ୍ଚାରେ ପଥ-କୁଟିଳ-ଦୁର୍ଗମ-
ଅବିଶ୍ୱାସ ଅନ୍ଧକାରେ ଦିଶଇ ସରଳ ।
ଅମୃତ ପ୍ରତୀତ ଆଜି ମରଣ-ଗରଳ ।

୧୯—ଅମୃତ ମରଣ-ନୂର ମଙ୍ଗଳ ଆହ୍ୱାନ !
ଆନନ୍ଦ ଭରସା ଦୂର ପ୍ରଦୀପ ନିର୍ବାଣ !
ମଙ୍ଗଳ ସୃଷ୍ଟିରେ ଦିଶେ ସକଳ ସୁନ୍ଦର,
ପରମ ଆନନ୍ଦ ସ୍ପର୍ଶେ ସବୁ ଅନଶ୍ୱର ।
ଜୀବନ୍ତେ ଯେ ଦୀକ୍ଷା ଦେଲି ମରଣେ ସେ ଗାନ
ଗାଅ ଉଚ୍ଚେ ଆତ୍ମଭୋଳା । ଗାଅ ନିଃସ୍ୱ ପ୍ରାଣ ।
ଅଟଳ ବିଶ୍ୱାସେ ଅଶ୍ରୁ ଭୀତି ହେଉ ଲୟ,
ଗାଏଁ ମୁଁ ଜୀବନ ଜୟ ଅମୃତର ଜୟ ।
ମଙ୍ଗଳ ସେ ଧାତା ମୃତ୍ୟୁ ଯାହାର ବିଧାନ—
ଯେ ଶିବ ପ୍ରକାଶ ତୁମେ ! ଗାଅ ଜୟ ଗାନ !
ତୁଚ୍ଛ ସେ ଶ୍ମଶାନ ଭସ୍ମ, ତୁଚ୍ଛ ଚିତାନଳ ।
ସର୍ବଦ ବିକାଶ ସୃଷ୍ଟି-ଅମୃତ-କମଳ ।
ସେ ଅମୃତେ ଲୀନ ତୁମେ ! ତୁହ ଅସହାୟ,
ତହୁଁ ଲଭେଁ ଦିବ୍ୟଗତି । ବନ୍ଧୁ ହେ ବିଦାୟ !...

—୨୩୦

୨୦—ଖସିଛୁ ଜ୍ୟୋତିଷ୍କ ନଭୁଁ । କେତେ ଦିନ ଅଜ୍ଞ ?
ପୁଚ୍ଛେ ଅପଣାକୁ,···ସବୁ ଯେତେ ଗ୍ଲପ୍ୟାବାଜ୍ଞ ।
ଶୁଣିଛୁ କି ନାହିଁ ଅଶ୍ରୁତ ନିମନ୍ତ୍ରଣ ।
ସହସ୍ର ତାଡ଼ନ ପୁଣି କର୍ମର ପ୍ଲାବନ ।
କି ଉଦ୍ଦେଶେ ଧାଇଁ ଗ୍ଲୁଲେ ମତ୍ତ ଏ ଜନତା ?
ନାହିଁ କି ସେ ଦେଶେ ଜଣା ମରଣର ବ୍ୟଥା ?
ଦୂରେ କାର ଅଟ୍ଟହାସ ?···ପୁଣି ଯାଏ ଶୁଭ—
ପାଞ୍ଚଜନ୍ୟ ସମ କାର ନିଷ୍ଠୁର ଦୁନ୍ଦୁଭି ?
ଅଗ୍ରସର ! ଅଗ୍ରସର ! ନାହିଁ ଅବକାଶ !
ସମ୍ମୁଖେ ମଙ୍ଗଳ ବର୍ତ୍ତି , ଊର୍ଦ୍ଧ୍ୱେ ମହାକାଶ ।
ଭଗ୍ନଙ୍ଗାନ୍ତୁ ସୈନିକ ତୁ । କି ଦେଖୁ ଉଦାସେ
ଅବଧିକ ବର ବୃଥା ମରୁ ଉପବାସେ ।
ସ୍ମୃତିରେ ବଞ୍ଚାସେ ତବ ଆତ୍ମ-ଅନୁଭୂତି ।
ଚରମେ ଝଙ୍କଣେ ସେହି ମଙ୍ଗଳ-ବିଭୂତି ।

୨୧—ସତ୍ୟଧର୍ମ ଆଦରଣ ଲାଗି ଯେ ବାହିନୀ—
ଯୁଝିଲେ ସମରେ, ତୁମେ ଅନ୍ତିମ ସଇନି ।
କାଳ କଷଟିରେ ତେଜ ପ୍ରଭା ପରୀକ୍ଷିତ ।
ଅଟଳ ପର୍ବତ ପ୍ରାୟେ ବୀର୍ଯ୍ୟ ଅପ୍ରମିତ ।
ପଛଦୁଆଁ ଦେବା ଜାଣି ନ ଥିଲ ଜୀବନେ;
ଧନ୍ୟ ଯେ ଦେଖିଛୁ ସତ୍ୟନିଷ୍ଠା ରଣାଙ୍ଗନେ ।
ସଂଗ୍ରାମର ହାନି ଲାଭ କରିବା ଗଣନା,
ଦୁର୍ବଳ ପଦାତି ସମ ନ ଥିଲା ତ ଜଣା ।

ପ୍ରଚ୍ଛନ୍ନ ସେ ଅଗ୍ନି ତେଜ ଧ୍ୟାନନେତ୍ର ତଳେ,
ବିଶ୍ୱାସ ବଳିଷ୍ଠ ଶାନ୍ତ ବଦନ ମଣ୍ଡଳେ !
ସତ୍ୟ-ସେବା ! ତେଜ ତବ ବ୍ରହ୍ମ-ଭୂତ-କ୍ଷୁଧା !
ଧନ୍ୟ ସେ ସ୍ପର୍ଶିଛି ପ୍ରାଣ ସୁରଧୁନି-ସୁଧା ।
ଦିଶେ ନାହିଁ ଆଜ କାହିଁ ସମଯୋଦ୍ଧା ଏକ,
ସାର ହେଉ ଏ ଜୀବନେ ତବ ସ୍ମୃତି ଟେକ ।

୨୨—କାଲି ଅସରାଏ ବୃଷ୍ଟି···ନିର୍ମଳ ଆକାଶ ।
ପରଶେ ପ୍ରଭାତେ ପ୍ରାଣେ ତାର ଶୈତ୍ୟ ଶ୍ୱାସ ।
ଏସନେ ଅନ୍ତରକ୍ଷତ ଲଘୁ କରେ ପରା,
ପ୍ରିୟଜନ ବିରହରେ ଲୋତକ ଅସରା ।
ଅଶ୍ରୁ ଦୀନ ଜୀବନର ବିପୁଳ-ଗୌରବ,
ଅନ୍ଧାର ମାଣିକ୍ୟ ପ୍ରିୟ-ବ୍ୟଥା ଅନୁଭବ ।
ଲଜ୍ଜ ନାହିଁ ଅକାରଣ, ଅହେ ଜଡ଼ବାଦୀ,
ପରମ ଐଶ୍ୱର୍ଯ୍ୟ ଟେକ କ୍ଷଣିକ-ସମାଧି ।
ସ୍ଥାନଚ୍ୟୁତଉଦାସୀନ ନିଃସଙ୍ଗ ପତଙ୍ଗୀ,
ରଜନୀ ଦୁର୍ଦ୍ଦିନ ଅନ୍ତେ କାହିଁ କର ଗତି ?
କେଉଁ ଧ୍ୟାନଲୋକେ ? ଦୂରେ ? ···ଅମୃତ ସନ୍ଧାନେ ?
ତରୁଣ ଦିବସ ଡାକ ଶୁଭିଲ କି ପ୍ରାଣେ ?
ଶାନ୍ତ ତବ ଚିତାନଳ ! ଭସ୍ମ ଦିଶେ ଖାଲି !
ମୁକ୍ତ ବିହଙ୍ଗମ ଦୂରେ ଯାଇଅଛି ଚାଲି !

୨୩—ଅବିରତ ବିଦଗଧ ଏ ମୋ କଳେବର,
ଏ ଇନ୍ଦ୍ରିୟ ଭୂତଗ୍ରାମ ଭସ୍ମ କେତେ ଥର

ନବୀନ ଏ ଦିବାସମ ସ୍ୱରୂପ ପ୍ରକାଶ,
କାଳ ରଖିଅଛି ସ୍ମୃତି ! କାହିଁକି କାରଣ ?
ଶୈଶବ ଲଭିଛି ଲୟ ତରୁଣ ସ୍ୱପନେ,
ତାରୁଣ୍ୟ ସ୍ଥବିର-କାନେ, ସ୍ଥବିର ମରଣେ !
ସର୍ବସ୍ୱ ସ୍ଫୁରିତ ପୁଣ୍ୟ ଜୀବନ-ବିଭୂତି !
ଅମୂଲ୍ୟ ସମ୍ପଦ ନିତ୍ୟ-ପ୍ରାଣ-ଅନୁଭୂତି ।
ଗୋଟି ଗୋଟି ହୋଇ ତସ୍ୱୀ ଖୁଲିଲେ ଭିଜାଣି,
ସାର କର ପ୍ରିୟ-ସ୍ମୃତି ନିତ୍ୟ-ସୁଧା ବାଣୀ ।
ନୀରବତା ଧ୍ୟାନ ଭଙ୍ଗେ କ୍ଷେପଣୀ ଶବଦ,
ତେଣା ନୟନ ମୁଦ ଖୁହାଁ ଅନ୍ତର ସମ୍ପଦ ।
ପରମ ସୁହୃଦ-ପୂଜ୍ୟ-ଦିବ୍ୟ-ଗତ ସ୍ମର,
ଫିଟାଇ ଦେ ନଦୀ-ଘାଟୁ କ୍ଷୁଦ୍ର ତୋର ତରି ।

୧୫—ହେ ଅନନ୍ତଭୂମା ! ସୃଷ୍ଟି-ପ୍ରାଣ-ମୂଳାଧାର ।
କ୍ଷମ ଶତ ଅପରାଧ ମାନସ ବିକାର ।
ଅଜ୍ଞାନ ମାନବଶିଶୁ ଅନଭିଜ୍ଞ ଚିର !
ବିଶ୍ୱାସ ଆଶାରେ ତାର ନତ କର. ଶିର !
ଆନନ୍ଦ ପ୍ରକାଶ ତବ ମଙ୍ଗଳ ବିଧାନ ।
କ୍ଲୀବତ୍ୱ ନ କରୁ କ୍ଷୁଣ୍ଣ ଅବା ସ୍ୱଳ୍ପ ଜ୍ଞାନ !
ଅଭିମାନ ପ୍ରଜ୍ଞା ଦମ୍ଭ ହେଉ ପରାହତ,
ସାର ହୁଅ ଏ ଜୀବନେ ଅମୃତ ଶାଶ୍ୱତ !
ସର୍ବସ୍ୱ ବିକାଶ ତବ ! ହେ ଅଶ୍ରୁତ ଧ୍ୱନି ।
ଜୀବନ ମୃତ୍ୟୁରେ ଶୁଭେ ନିତ୍ୟ ଆଗମନୀ !

ସୁବିପୁଳ ପ୍ରାଣଶକ୍ତି ! କେବେ ପ୍ରକାଶିତ—
ସଲିଳେ ଯେସନେ କୂର୍ମ !...
ପୁଣି ସଂକୁଚିତ !
ଜାଗ୍ରତ ମାତର ସତ୍ତ୍ୱ ! ନିତ୍ୟ ନିରଞ୍ଜନ !
ବିଭୂତିରେ ହସେ ସନ୍ତୁ-ଚନ୍ଦ୍ର-ବୃନ୍ଦାରଣ୍ୟ ।

୧୫—ଇଚ୍ଛାମୟ ! ଇଚ୍ଛାଶକ୍ତି ନ ବୁଝଇ ଦୀନ,
ଅହଂଦୈନ୍ୟ ନିରବଧି କ୍ଷୁଣ୍ଣ ମୁଁ ମଳିନ ।
ଯାଏ ପ୍ରାଣ ଆସେ ପୁଣି ! ଖେଳେ ଊର୍ଣ୍ଣନାଭି
କରୁଣା ପ୍ରକାଶ ତବ ଅଶ୍ରୁ କରେ ଦାବି !
କ୍ଷମ ଅପରାଧ କ୍ଷମ ! ମୁଁ ଅଶ୍ରୁ ଅତୁର !
ହରିଛି ବିଶ୍ୱାସ ଦିବ୍ୟଜ୍ଞାନ ମୃତ୍ୟୁ କ୍ରୂର ।
ଅଜ ଯେ ମାନବ ଆତ୍ମା ହରିଛ କୌଶଳେ—
ବଞ୍ଚିଥିଲି ସେହୁ ପ୍ରୀତି-ପୁଣ୍ୟ-ପ୍ରଭା ତଳେ ।
ଯେ ପ୍ରାଣିସ୍ୱରୂପେ ତବ ସହଜ ପ୍ରକାଶ,
ହଜିବାରେ ସ୍ୱାଭାବିକ ଶିଶୁ-ଅବିଶ୍ୱାସ ।
ପ୍ରସାରିତ ଶକତିକି କଲି ସଙ୍କୁଚିତ !
କ୍ରୀଡ଼ନକ ବିନେ ପ୍ରଭୁ ! ନୁହଇ ବିଚଏ—
ଶିଶୁ କାନ୍ଦିବାର ! ତେଣୁ ଅପରାଧ କ୍ଷମ ।
ମାତର ଅମୃତ ସତ୍ତ୍ୱ ! ସୃଷ୍ଟି ଅନୁପମ ।



## ଭିନ୍ନ ରୂପାନ୍ତର

ସେଥର ବ୍ୟାପିଲା ଗ୍ରାମେ ପ୍ରବଳ ବସନ୍ତ,
ଲୋଟିଲେ ଧରାରେ ଯେତେ ନାହିଁ ତାର ଅନ୍ତ ।
କେତେ ହେଲେ ବିକଳାଙ୍ଗ, ଚକ୍ଷୁ ଗଲା ଫୁଟି,
ଶ୍ରବଣ ବଧିର ହେଲା, ରୂପ ଗଲା ତୁଟି,
ପରମ ଆତଙ୍କ ବ୍ୟାପିଗଲା ଘରେ ଘରେ;
କେତେ ଧୂପ ଆରାଧନା ଦେବୀ ଉଦ୍ଦେଶ୍ୟରେ ।
କେତେ ଜାଲ୍ମଜନ ଗଲ୍ପ ଦେବତା ପ୍ରତାପ,
ସକଳ କହନ୍ତି ମାତ୍ର ଦୈବ ଅଭିଶାପ ।
ରୋଗ ଶେଷେ ପଡ଼ି ପଡ଼ି ଶୁଣେ ମୁଁ ରୂପସୀ,
ବସନ୍ତ ଜ୍ୱାଳାରେ ପାରେ ନାହିଁ ଉଠି ବସି ।
ମାସ ଦୁଇ ପରେ ଦୁର୍ବିପାକ ଅବସାନେ,
ରହିଗଲେ ଯେତେ ତହିଁ ମଧ୍ୟରୁ ମୁଁ ଜଣେ;
ମାତ୍ର ନାହିଁ ପୂର୍ବ ରୂପ, ବିକଳାଙ୍ଗ ମୁଖ,
ଦର୍ଶକ ଆସିଲେ ଯେତେ ପ୍ରକାଶିଲେ ଦୁଃଖ ।
କେ କହେ ସୋହାଗ କଣ୍ଠେ-ଯତ୍ନନେଇ ସ୍ନେହ-
କି କଲା ନିଷ୍ଠୁର ଦୈବ ଚମ୍ପାଫୁଲ ଦେହ !
କେ ପୁଣି କରଇ କେତେ ରୂପର ବ୍ୟବସ୍ଥା,
ସକଳ ଶୁଣି ମୁଁ ହସେ ! ନାହିଁ ମୋର ବ୍ୟଥା !
ନ ଜାଣେଁ କହିବେ କିବା ଅନାଗତ ପତି,
ଅବା ଫେରାଇବେ ମୁଖ ଘୃଣାଭରେ ଅତି !
ଅବା ଅଶ୍ରୁ ଦୀର୍ଘଶ୍ୱାସେ ନ ଚାହିଁବେ ମୁଖ !
ଅସ୍ଥିର ମୋ ମାତା ଭଲ ! ନାହିଁ ମୋର ଦୁଃଖ !

ମୋ ସୁନ୍ଦର ମୁଖେ ଦେଖି ଶତ ଶତ ଦାଗ,
ଘୃଣି ମୁଁ ଦରପଣେ ବଢ଼େ ଅନୁରାଗ ।
ଅପୂର୍ବ ଗରବେ କମ୍ପା ବକ୍ଷ ହୁଏ ସ୍ଫୀତ,
ରମଣୀ ମରମେ କାଳ ଅମୃତ ସଙ୍ଗୀତ—
ସ୍ଫୁରେ ଅନୁକ୍ଷଣେ ! ପୁଲକ ତା ମନ ପ୍ରାଣ !
ଲଭିଛି ମୁଁ ଅଳ୍ପ ମୂଲ୍ୟେ ସ୍ୱର୍ଗର ସନ୍ଧାନ
ନବ ଅଭିସାର ଲାଗି ଅନ୍ତର ଆକୁଳ,
ବସନ୍ତ ଯାଉଛି ଦେଇ କବା ରୂପ ଫୁଲ ।



# *ଦୁର୍ଗରକ୍ଷା

—୧—

କେବଳ କି କୋଳାହଳ ? କୋଳାହଳେ ଗୌରବ ପ୍ରକାଶ ?
ବିରାଟ ଏ ଜାତି ପ୍ରାଣେ ଯେସନେ ଏ ତୀବ୍ର ଉପହାସ !
ତୀବ୍ର ବ୍ୟଙ୍ଗ ! ରଙ୍ଗ, ରସ, ବାହୁସ୍ଫୋଟ, ଅତୀତ ହୁଙ୍କାର—
କାଳ ନିଷ୍ଠୁର ପରଖି ଲଭିବ କି ଏସନେ ନିସ୍ତାର ?
ପ୍ରାଣହୀନ ହୀନବୀର୍ଯ୍ୟ ନାହିଁ ଯାର ତଳେ ଆତ୍ମବୋଧ,
ଅଲକ୍ଷ୍ୟେ ସଞ୍ଚିତ ଭାଗ୍ୟେ ଅଲଙ୍ଘ୍ୟ କାଳର ପ୍ରତିଶୋଧ !
ହୋଇଛି ସହଜ ଲଭ୍ୟ ଜୀର୍ଣ୍ଣ ଦୁର୍ଗ, କାଲି ଅବା ଆଜି,
ପ୍ରଚ୍ଛନ୍ନ ବିଜୟୀ ପଛେ ପରାଭବ ଗ୍ଲାନି ମୃତ୍ୟୁ ଭୟ !
ନିର୍ଜୀବ ସୈନିକ ଯେତେ ସମବେତ କର କୋଳାହଳ
କରୁନାହିଁ ଅନୁଭବ ? ଆତ୍ମଦୈନ୍ୟ ନୁହେ କି ବିକଳ ?
କେ କରିବ ଦୁର୍ଗ ରକ୍ଷା ? ଜୀବନର ନବ ଅଭିଯାନ—

* ନବୋତ୍କଳ ପ୍ରଦେଶର ପ୍ରଥମ ସ୍ମାରକୋତ୍ସବ ଉପଲକ୍ଷେ ।

ଯା ଯୋଗ୍ୟ ସମ୍ଭବ ନିତ୍ୟ ତାହିଁ ସେହୁ ଦୁର୍ଜ୍ଜୟ ପରାଣ ?
ଦୁର୍ବଳ ନିର୍ଜ୍ଜୀବ ହାତେ ଦେଖି ତେଣୁ ବିଜୟ କେତନ—
"ସହାୟ ଦେବତା ତୁମେ !" ରୁଦ୍ଧ ବନ୍ଦୀ କରେ ନିବେଦନ !

—୨—

କହେ ବନ୍ଦୀ ଶାନ୍ତ ନେତେ, ଦୁର୍ବଳ ଜାତିର ଭାଗ୍ୟବିଧି !
ସମ୍ପାଦ ରକ୍ଷିବେ ସତେ ଦେଲ ଅଳ୍ପ ଯେ ଅମୂଲ୍ୟ ନିଧି ?
ପରତେ ନୁହଇ ଉଚେ; ତାହିଁ ନିଷ୍ଠା, ତାହିଁ ବା ଶକତ ?
ତାହିଁ ସେ ପୌରୁଷ ଯାର ତେଜେ ମରେ ଦୀନତା ଦୁର୍ଗନ୍ଧ ?
ସମବେତ ଯୋଦ୍ଧୃ ଯେତେ ଅସ୍ତ୍ରାଳନ-ଚଳାର-ନିପୁଣ,
ବିହ୍ୱଳ ଯେସନେ ଶ୍ୱାନ ପଲ ପାଶେ ନିରେଖି ପିଶୁନ !
ଅର୍ଜ୍ଜିନାହିଁ କହୁ ଜଣେ ନର ଆଖ୍ୟା ମାନବ ଗୌରବ,
ସର୍ବେ କୋଳାହଳପ୍ରିୟ, ଛାଡ଼ି ନାହିଁ ଏ ଜାତି ଶୈଶବ ।
ନ ଦିଶେ ପୌରୁଷ ନିଷ୍ଠା ଦମ୍ଭେ ଯାର ଧରା ଉଠେ ଥରି,
ଉଦ୍ଧାର ସେ ମାନବତ୍ୱ ଅନ୍ଧକାର ମରେ ଯାକୁ ଡରି—
ଯହିଁ ଦିଶେ କାହିଁ ଉଚେ ! ଉପୁଜଇ ତେଣୁ ଶଙ୍କା ଭୟ,
ଦୁର୍ବଳର ସ୍ୱାଧୀନତା ପରାଜୟ ସମାନ ନିଷ୍ଠୁର ।
ସହାୟ ଦେବତା ତୁମେ ଦୁର୍ବଳ ଜାତିର କର୍ଣ୍ଣଧାର
ଦିଅ ବୀର୍ଯ୍ୟ ସତ୍ୟନିଷ୍ଠା ଶିଖାଅ ନିଶାଣ ତୋଳିବାର ।



# ଦଣ୍ଡାଦେଶ

ସ୍ୱେଚ୍ଛାରେ ମୁଁ ବନ୍ଦୀ ରାଜା ! ମୋର ପରୱାଣ—
ତବ ରାଜଦରବାରେ ଆତ୍ମ-ଅପମାନ !
ଯହି ସିଂହାସନେ ବସି କରଇ ବର୍ବର
ଅଜ୍ଞାନ, ତମିସ୍ର, ଦମ୍ଭ, ସ୍ୱାର୍ଥ, ସ୍ୱେଚ୍ଛାଚାର,
ତହିଁ ଶୃଙ୍ଖଳିତ ମୋର ପରମ ଗୌରବ,
ଗାଇନାହିଁ ସ୍ତୁତି ବାକ୍ୟ ସେବକ ଗରବ।
କରନି ଅପାତ୍ରେ ଦାନ ବାବଦୁକପର
ପବିତ୍ର ଅମୂଲ୍ୟବାଣୀ ଯୋଡ଼ହସ୍ତ କରି,
ସେବକ ଆଶ୍ୱାସ। ମୃତ୍ୟୁଭୟ ମହାରାଜ ?
କୁଳିଶୁଁ କଠୋର ପ୍ରାଣ ଯାର, ମୃତ୍ୟୁ ବ୍ୟାଘ୍ର—
ଡରିବ ତାକୁ କିସ ? ପୂର୍ଣ୍ଣ ହେଉ ଅଭିଳାଷ,
ବୃଥା ବାକ୍ୟେ ନ କରନ୍ତୁ ଆତ୍ମ-ଉପହାସ।
ମୃତ୍ୟୁ କାରାଗୃହ ଅବା ଚିର ନିର୍ବାସନ,
ଅକାତରେ ନେବ ବରି ଦୀନ ଅକିଞ୍ଚନ।
ଦୁଃସହ ଏ ରାଜ୍ୟେ ବାସ ! ଯହିଁ ସ୍ୱେଚ୍ଛାଚାର—
ସ୍ୱାଧୀନତା ନାମେ କରେ ଅସତ୍ୟ ପ୍ରଚାର—
ପାଳକ ଆସନେ ଯହିଁ ବସେ ଦାମ୍ଭିକତା,
ଆତ୍ମ-ଅଭିମାନ, ତହିଁ ଶୋଭି ନୀରବତା।
ପଚାରିଲେ ବୋଲି କଲି ନିଷ୍ଠୁର ଉତ୍ତର,
ନିର୍ଭୟେ କହଇ ମାତ୍ର ଇଚ୍ଛା ଯାହା କର।
ନିତ ଦେଖେ ଅସହାୟ ମକ୍ଷିକା ମଶକ
ଅଜ୍ଞାନେ ସଜ୍ଞାନେ ଦଳେ ମାନବ ଭକ୍ଷକ;

ଅସ୍ତ୍ର ପରତନ୍ତ୍ରିଲାଗି ତେସନେ ରାଜନ
ଦଣ୍ଡିବ ପ୍ରବଳ ଇଚ୍ଛା ? ନୋହେ ଅଭାଜନ ।
ଅବା ସେ ଅନ୍ତରେ ହେଲେ କରୁଣା ଉଦୟ,
ଦେବ ଅବା ହେୟଜ୍ଞାନେ ମୁକତ ଅଭୟ,
ମାଗ ରାଜ୍ୟ ନିସୀମାରେ ଅଜ୍ ଜଳସ୍ପର୍ଶ—
ନ କରବ ପଣ ମୋର ଅନ୍ତମ ଅପର୍ଣ୍ଣ ।
ନରକରୁ ବଳି ଘୃଣ ଧିକ୍ କ ସେ ଜୀବନ,
ପରପୁଷ୍ଟ କଟେର ଯାକୁ ଏହୁ ସମୀରଣ—
ଏ ଘୃଣ ମୃତ୍ୟୁବା, ଘୃଣ୍ୟ ଅସ୍ପୃଶ୍ୟ ସମ୍ବଳ,
ନ ପାରବ ଚହ୍ନ ରାଜା ଅଜ୍ ଏଥି ଛଳ ।
ଜନ୍ମଭୂମି ? ସ୍ୱର୍ଗୁଁ ଶ୍ରେଷ୍ଠ ? ନୁହେଁ କଳପନା ।
ଯହିଁ ମୈତ୍ରୀ ନାମେ ସତ୍ୟ-ସମାଧି ରଚନା,
ସେ ମୋର ଜନମ ଭୂମି ? ପଶୁ ଲୀଳାସ୍ଥଳୀ ।
ଲୋଡ଼ା ତହିଁ ବଳବନ୍ତ ପୌରୁଷର ବଳି ।
ଦେବ ଯେବେ ମୁକ୍ତ ରାଜା ମନେ ମୋର କରେ,
ପ୍ରଣମି ଏ ଦେଶେ ନମି ବିଶ୍ୱସ୍ରଷ୍ଟା ପଛେ,
ଖୋଜିବ ଅପଣା ଭୂମି ବିସ୍ତୀର୍ଣ୍ଣ ପ୍ରବାସେ,
ନ ମରଇ ଯହିଁ ପ୍ରାଣ ସତ୍ୟ ଉପବାସେ ।
ମାନବ ନୁହଇ ଯହିଁ ନର-ଭାଗ୍ୟ-ଦାତା,
ଶୂନ୍ୟ ସ୍ୱେଚ୍ଛାଚ୍ଚର, ସେ ମୋ ଜନ୍ମ ଭୂମିମାତା !
ଏସନେ ଉତ୍ତରୁ ରୁଦ୍ଧ ସ୍ତବର ଅମାତ୍ୟ—
ପ୍ରଜ୍ଜ୍ୱଳିତ ରୋଷାନଳେ ଦୀପ୍ତ ରାଜଗାଦ ।
ଶେଷେ ହେଲା ଦଣ୍ଡାଦେଶ !.........
"ରଖ ଦାନ ସାତ—
ଅନଶନେ କାରାଗୃହେ ! ସକଳ ଅଜ୍ଞାତ !

ଦ୍ୱାଦଶ—

ଅଷ୍ଟମ ଦିବସେ ବାନ୍ଧ କରି ଚକ୍ଷୁ, କର,
ନଗରେ ବସାଇ ନେବ ଗର୍ଦ୍ଦଭ ଉପର ।
ରାଜ୍ୟ ଉଚ୍ଛୁଳିବ ହାସେ କରତାଳି ଶବ୍ଦେ
ଘୁରିବ ଏକାକୀ ଶେଷେ ଘନ ବନ ମଧ୍ୟେ ।"
ଦରବାରେ ହେଲା ଘନ କରତାଳି ବୃଷ୍ଟି,
ଶୁଭେ "ସାଧୁ, ସାଧୁ!" ରବ । ବୃଦ୍ଧ ବକ୍ରଦୃଷ୍ଟି—
ନରଭାଗ୍ୟ ବିଧାତାରେ କହେ ନମ୍ରସ୍ୱରେ,
"ଧନ୍ୟ ହେଲି ! ଭୋଗ ରାଜ୍ୟ ମହା ଆନନ୍ଦରେ ।"



## ରିକ୍ସାବାଲା

ଖଟି ଖଟି ଦିନମାନ ଗର୍ଦ୍ଦଭ ସମାନ,
ରହିଛି ପିଣ୍ଡରଗୋଟା ଉଡ଼ିଗଲାଣି ବା ପ୍ରାଣ ।
ଧନୀକ ଅଳିନ୍ଦେ ବସେ ବରଷାକୁ ଡରି,
ଦେଖି ଲାଗେ ଶ୍ମଶାନର ପ୍ରେତ ଆତ୍ମା ପରି ।
ଚୁହାଇ ଚୁହାଇ ବାଆପାଣି ଆସେ ମାଡ଼ି,
ପଥ ପାର୍ଶ୍ୱେ ଧୂଳି ଧୂସରିତ ରିକ୍ସା ଗାଡ଼ି ।
ଆସଇ ବରଷା ଯେହ୍ନେ ଜନନୀ କଲ୍ୟାଣି,
ଉଲ୍ଲସି ଉଠଇ ବସୁନ୍ଧରା ଦଗ୍‌ଧ ପ୍ରାଣ ।
ଶୀତଳ ପବନ ଯେହ୍ନେ ପ୍ରେୟସୀ ନିଶ୍ୱାସ,
ଉଷାର ମଦିର ସ୍ୱପ୍ନ ହରେ ଶତ ତ୍ରାସ ।
ପ୍ରଥମ ଆସାର ସିକ୍ତ ସ୍ନିଗ୍‌ଧ କ୍ଷିତିଗନ୍ଧ,
ବହୁ ଆଣେ ନିଃସ୍ୱପ୍ରାଣେ କି ଅଣା ଆନନ୍ଦ !

ଭୁଲିଲ ସେ କ୍ଷଣେ କ୍ଲାନ୍ତ ଭୁଲେ ଆତ୍ମସତ୍ତ୍ୱ,
ସ୍ତବ୍ଧ ଅକାଶକୁ ଢାଳେ ସ୍ୱଦୂର ମମତା ।
ଅଜି ସେ ନୁହଇ ନିଃସ୍ୱ, ନୁହେ ସେ ଏକାକୀ,
"ନୁହେଁ ଭାରବାହୀ ପଶୁ" ପ୍ରାଣଭରେ ଡାକି;—
ମନେପଡ଼େ ପୁଣି ତାର ନଦୀ ଆରପାରେ
ତା ପିଲାଏ ପଥ ଚାହିଁଥିବେ ଅନ୍ଧକାରେ ।
କେସନେ ବା ଯିବ ଫେରି ? ଭାବେ ମନଦୁଃଖେ—
ରୁଗ୍‌ଣା ତା ଘରଣୀ ବେନି ଶାବକଙ୍କ ମୁଖେ—
ଥିବ କିବା ଗୁଞ୍ଜି ? ଦେଇନାହୁଁ କିଛି କଣି,
ମନ୍ଦ କପାଳକୁ ଅଜିମାନ ଅଣୋତନି—
ପଡ଼ିଛି ତା ଭାଗେ, ମାଲିକର ପାଞ୍ଚଅଣା,
ଗାଡ଼ିର ବାହୁଲ୍ୟ ଦନ୍ଦୁଦନ ବୁଢିକଣା ।
ତା ଭାବନା ଦେଖି ହସି ଉଠେ ସମୀରଣ,
ବାର୍ଦ୍ଧକ୍ୟ-ମୃତ୍ୟୁରେ ଯଥା ତୁଚ୍ଛେ ଯଉବନ ।
ଏକାଳେ ଧନିକ ଗୃହ ମଧ୍ୟୁ ଆସେ ଦାସୀ,
ବାକ୍ୟବାଣେ ଭାଜି ପକେଡ ଅବା ମେଘ ରାଶି ।
ବଜ୍ର କଡ଼ମଡ଼ସମ ହୁଙ୍କାରି ହକାରେ
"କିଏରେ ବସିଛୁ ଭୂତ କିବା ଅନ୍ଧକାରେ ?
ଯା' ଯା', କୋଢ଼ି, ପଙ୍ଗୁ ଭାଷେ ଧନିକ ଗୃହିଣୀ—
"ତଡ଼, ତଡ଼, ରୋଗୀ ଅବା ପଙ୍ଗୁନାହୁଁ ଜାଣି ।"
"ଯାଅ ଉଠି ନିଭକୁଣା ।" ଗର୍ଜେ ପୁଣି ଦାସୀ;
ଗୃହ ସ୍ୱାମୀ କହୁଛନ୍ତି, "ଚୋରଟାଏ ଅସି—
ବସିଅଛୁ କାହୁଁ, ଦିଅ ଥାନାକୁ ପଠାଇ ।"
ଭୃତ୍ୟ ଆସି ଉଚେଇ କହେ, 'କାହୁଁ ପାଜି କାହୁଁ ?'

ଉଠିଯାଏ ଶ୍ରମକ୍ଳାନ୍ତ ଦୀର୍ଘ ଉଚ୍ଛ୍ୱାସେ,
ସ୍ୱପ୍ନ କାହିଁ ଯାଏ ଭାସି ! ପଣ୍ଡୁଚ୍ଛିତ ହୁତାଶେ—
ସ୍ତୁହିଁ ସୌଧଶୀର୍ଷେ, ସ୍ତୁଲେ ପୁଣି ଭିକ୍ଷା ଧରି,
ଗୁଣି ଭାର-ଛାୟା-ପଣ୍ଡ ଭାଗ୍ୟକୁ ଆଦରି ।

[୧୯୩୭]

---

## ଗର୍ଗ—

୧—ବଦଗଧ କଳ୍ପ ମୃତ୍ୟୁ ମାଂସ ଅସ୍ଥିଚୟ,
ମାତର ପୋଡ଼ୁଛି କାହିଁ ରକ୍ତାକ୍ତ ହୃଦୟ ?
ସେହୁ କୃଶ-ବକ୍ଷ ହୃଦ୍ୟା ଦୃଷ୍ଟ୍ରୁ ନୟନ,
ବାଷ୍ପଢ ଲଲାଟ ଶାନ୍ତ କରୁଣ ଲପନ
ଭସ୍ମଶେଷ ଉଠେ ଜଳ ! ଦ୍ୱିଗୁଣ ଉଜ୍ଜ୍ୱଳ !
ପ୍ରଳୟପୟୋଧି ଜଡ଼ ଜୀବନ କମଳ ।
ସେ ଶିର ଦୃଷ୍ଟ୍ରୁ ଅମ୍ବାଶୋଷିତ ଜର୍କ୍ଷର
ଯେସନେ ପରମ ସତ୍ୟ ଅକ୍ଷୂଣ୍ଣ ଅମର ।
ଦେଖିଛି ଯେ ଥରେ ମୁଖ ଶୁଣିଛି ସେ ବ୍ୟଥା,
କୋଟି ନିପୀଡ଼ିତ ପିଣ୍ଡ ସଂଗ୍ରାମ ବାରତା,
ପରତେ ଯିବ କି କେବେ ମୃତ୍ୟୁ ବ୍ୟବଧାନ ?
ପଛୁଡ଼ ଏ ଯାନା ଶେଷେ ଅମୃତ-ସନ୍ତାନ ।
ପରମ ନିର୍ଭୀକ ଶୁଣି ସତ୍ୟ ଜୈବ ବାଣୀ,
ନୈବ୍ରଣ୍ୟ-ସାଗରେ ତଥା ଗୁଲିଛି ଉଜାଣି ।

* କୁର୍ଦ୍ଦ ଦେଶର ସ୍ୱନାମଧନ୍ୟ ସାହିତ୍ୟିକ ।

୨—ଅନଳ ସ୍ଫୁଲିଙ୍ଗ ଅମ୍ଭା ହେଉ ଅଛ ତୁଚ୍ଛ
ନିଷ୍ପେଷଣ ସିନ୍ଧୁ ମଧ୍ୟେ ଗିରିଶୃଙ୍ଗ ଜଡ଼ ।
ଗରଳ ସିନ୍ଧୁରୁ ଆଣେ ଅମୃତକୁ ଛାଣି,
କେ କରିବ ଭସ୍ମ ସତ୍ୟ ଜ୍ୱାଳାମୟୀ ବାଣୀ ?
ହେଲଣି ବୁଦ୍‌ବୁଦ ସମ ଜୀବନ ସାଗରେ,
ଜାଗି କଲ ଶମନ୍ତୁନ ପର୍ବତ ପ୍ରକାରେ ।
ମରିଛି ସକଳ ସୃଷ୍ଟି ସବୁ ଅନାସ୍ଥିର,
ସତ୍ୟ ନିଷ୍ପେଷଣ ସଦା ସ୍ୱପନ ଅସାର ।
ଜୀବନଜାହ୍ନବୀ ଅଗ୍ରେ ଅଣିଲ ହୁଙ୍କାର,
ମରଣ ବସନ୍ତ ଲୋକୁଁ ହୃଦରନ୍ଧ୍ର ଢାଳି ।
ଲକ୍ଷ କୋଟି ନିଃସ୍ୱ ମୁଖେ ଫୁଟାଇଛ ହାସ,
ଊଷର ଭୂମିରେ ପୁଣି ପ୍ରାଣ ପରକାଶ !
ହେ ନିଃସ୍ୱ ବୁଭୁକ୍ଷୁ ବନ୍ଧୁ ! ବିଦାୟ ସମ୍ଭାର,
ନ ଜାଣେ କ ଦେବି ନିଅ ଅଶ୍ରୁ ନମସ୍କାର ।

[୧୯୩୭]

---

## ଭିକ୍ଷୁଗୀତ—

—୧—

ତରଙ୍ଗେ ସେ ତରଙ୍ଗ ରହେ
ଜାଲ ଫାନ୍ଦେ ନ ଦିଏ ଧରା,
ଅଭିମାନ ଗରବ କାନେ
ପକ୍ଷୁ ଫେରି କରେ ଠାପରା ।
ତା ଇଙ୍ଗିତେ ହସଇ ଫୁଲ, .
ଉଷାଲୋକ ନିତି ଅକୁଳ,
ସମୀରଣ ବିଜୟ ବାଣୀ
ଦିବା ରାତ ଘୋଷଇ ପରା ।। ୧ ।

ବ୍ୟଥା ଅଶ୍ରୁ ଦୁଃଖ ଅରତେ,
କହ୍ନ କବା ଯାଏ ଗୁପତେ,
ପରାଣର ଶୋଣିତ ଦାନେ
କରଣି କନ ଶୋକ ପସରା ! । ୨ ।
ସରସୀରେ ଢୋଳନ୍ତି ଦଳ,
ସାତ ଚକ୍ର ଫୁଟେ କମଳ,
ନ ଦଶିଲେ ମୃଣାଳ କଳ
ଦେଖିବା ହଂସ ଫେରେ କି ଭଲ ? । ୩ ।
ବୁଡ଼ିଲେରେ ସାଗର ନୀରେ,
ମାଣିକ୍ୟର ସନ୍ଧାନ ମିଳେ,
ସମ୍ଭବ କି କନାରେ ବୁଲି
ମୃତ୍ୟୁ ତମେ ଜୀବନ ଖରା ? ୪ ।
ଏ ମରତ ବିଷମ ବାଜି,
କେତେ ଅଜ ରହିବୁ ମଜି ?
ବୁଡ଼ଯା ତୁ ସାଗର ନୀରେ
ହସେ ପଛେ ମରଣ ଜରା । ୫ ।
ତୋ ପରାଣ ନିଗମ ପୁରେ,
କବା ଧ୍ୱନି ସ୍ଫୁରେ ମଧୁରେ,
ସବୁ ଶୂନ୍ୟ ଉଠଇ ଭରି
ଭଏଁ ତମେ ତପନ ତରା ! । ୬ ।

---

୨—ନଶବଦ ଶାରଦ ପ୍ରାତେ
ଅଡ଼ଥି କେ ଗଲରେ ଗାଇ !
ରଙ୍ଗି ତୋର ଅନଳ ଖେଳ
ଫେର ଥରେ ଗୁହାଁଲ ନାହିଁ ।

—୨୫୪

ଶୁଣି ତାର କରୁଣ ଭାଷା
ଫୁଲେ ଫୁଲେ ଖେଳିଲା ଆଶା;
ଥିର ହେଲା ବଉଦ ଭେଳା
ଥିର ଡଷା ରହିଲା ଗୁହିଁ ।
ଫେର ଥରେ ଗୁହିଁଲ ନାହିଁ ? ୧ ।
ସରଣ୍ଣି ତୋ ଦେଖିଲ ଭୋଳା,
କାହା ଲଗି ତୁ ଶର ଭୋଳା—
ଚରମ ସାଗର ବେଳାରେ
କି ଭାବନା କଲରେ ବାଇ ?
ଫେର ଥରେ ଗୁହିଁଲ ନାହିଁ । ୨ ।
ଦୂର ପଥ ତୁ ବଇରାଗୀ,
କେତେ ଦାଗେ ହେଲରେ ଦାଗି,
ଅକୂଳେ ସେ ମାଣିକ୍ୟ ଖୋଜୁ
ଏଥି ସେବା ମିଳଇ କାହିଁ ?
ଫେର ଥରେ ଗୁହିଁଲ ନାହିଁ ? ୩ ।
ଧନୁ ଧନ ଯାଏ ରେ ବହି,
ଦୀନତା ତୋ ନୁହଇ କହି,
ନାବ ତୋର ଦଅ ତୁ ମେଲି
ଭବ ନଦୀ ସଙ୍କେତ ପାଇ ।
ଫେର ଥରେ ଗୁହିଁଲ ନାହିଁ ? ୪ ।
ସେ ଯେ ଦୀପ ରଖିଛୁ ଜାଳି,
ସଯତନେ ତଇଲ ଢାଳି,
ନାଭବରେ ଅନ୍ତରେ ଗୁହିଁ
କ୍ଷୀଣ ତେଜ ଯିବ ମିଳାଇ ।
ଫେର ଥରେ ଗୁହିଁଲ ନାହିଁ ? ୫ ।

[ ୧୯୩୬ ]

## ରୂପ ପରିଚୟ

ହେବାକୁ ସେ ରୂପପଦ୍ମ ବିଶ୍ୱେ ପରକାଶ,
ମଙ୍ଗଳର ଅଶୀର୍ବାଦ ଅନ୍ତରେ ବିଶ୍ୱାସ ।
ଜୀବନ ଅମୃତ କଣା ରହିଛି ବା ଲୁଚି
ସକଳ ପ୍ରାଣୀର ପ୍ରାଣ ନେଇବ ଧୂଏ ସାଜି !
ବିଶାଳ ସାଗରେ କ୍ଷୀଣ ବିନ୍ଦୁ କ୍ଷଣିକର
ମାତର ଅବ୍ୟକ୍ତ ରୂପ ଅପୂର୍ବ ସୁନ୍ଦର !
ରୂପ ପୁଣ୍ୟପ୍ରଭା ବଳେ ପ୍ରାଣ ଲଭେ ଗତି,
ଶିବ ସୃଷ୍ଟି ଉଦ୍ଦେଶ୍ୟେ ମୁଁ ଢାଳଇଁ ପ୍ରଣତି !
କ୍ଷଣିକର ପୁଷ୍ପ ତୁମେ ? କ୍ଷଣିକ ସୌରଭ ?
ମାତର ନୁହଇ ଭୁଲ ଅମୃତ ଗରବ ।
ଅମୃତ ପ୍ରମାଣି ତୁମେ, ତୁମରି ଇଙ୍ଗିତ
ସହଜ କରଇ ପ୍ରାଣେ ପରମ ଅସ୍ତିତ୍ୱ ।
ରୂପରାଣି ! ଘେନ ମୋର ପ୍ରଣତି ବିନୟ,
ରୂପ ସଙ୍ଗେ ଆଜି ଲଭ୍ୟ ଆତ୍ମ-ପରିଚୟ !

-o-

## * ବନ୍ଦୀ ଅପର୍ଣ୍ଣା

୧—ଦରିଦ୍ର ଦେଶର ଶିଳ୍ପୀ ଦୃଷ୍ଟି ଅନ୍ତରାଳେ,
ଜନମି ମୁଦିଲ ଆଖି ଲେଖା ଥିଲା ଭାଲେ ।
ଲେଖିଲୁ ବା ନାହିଁ କାଳ ଅମର ଅକ୍ଷରେ,
ତୁମ କୀର୍ତ୍ତି ଗାଥା, କେହି ନ ପୁଛିବେ ଥରେ ।

* ପାରଳାର ସ୍ୱର୍ଗତ ଅନ୍ଧଗାୟକ ।

ନ କରିବେ ଭ୍ରମେ ଯାତ୍ରୀ ଅଞ୍ଚଳ ନିର୍ଦ୍ଦେଶ,
ତୁମର ସମାଧି ସ୍ତୂହିଁ ଭସ୍ମ ଅବଶେଷ ।
କ୍ଷଣିକ ମୂର୍ଚ୍ଛନା ତୁମ୍ଭେ, ପାର ନ ସମଜ୍ଜ
ଜୀବନ ରହସ୍ୟ, ମୌନେ ଶୂନ୍ୟେ ଗଲ ହଜି ।
ଲଭି ସ୍ଥାନ ସେ ଜୀବନେ କରିବା ଗଣନା—
କିବା ଫଳ ? ଛଳେ ମୋତେ ପଡୁନାହିଁ ଜଣା ।
ନୀରବେ ଜନମି ନିଃସ୍ୱ ନିଭୃତ ଗୋପନେ,
ମାତର ଏକଇ କଥା ନିବେ ନାହିଁ ମନେ,—
ଅଜ୍ଞାରେ ଅଲୋକ ଅଶ୍ରୁ ଅମୃତ ଏ ପ୍ରାଣି
ସୁଲଭ ଅନନ୍ଦେ ତହିଁ ପରମ ପ୍ରମାଣ !

୨—କାନନ-ମଲ୍ଲୀକା ଅବା ଶ୍ମଶାନ-ତୁଳସୀ,
କାବ୍ୟ-କୁଞ୍ଜେ କବିକୁଳ କଲ୍ପି ଥାନ୍ତୁ ବସି,
ମୋ ନୟନେ-ମୋ କଳ୍ପନା ନୋହୁ ପଛେ ଯେନା,—
ରୁଧିର ଅମ୍ଳୁତ ଅମ୍ବା ଭଗ୍ନଜାନୁ ସେନା !
ସୁଷ୍ଟିତ୍ତ ଅକ୍ଳାନ୍ତ ପ୍ରାଣେ, ଲଭିନାହିଁ ଖ୍ୟାତି,
ଲକ୍ଷ ନିପୀଡ଼ନେ ଥରେ ଦମିନାହିଁ ଛାତି ।
ନିଷ୍ପେଷଣ ବ୍ୟଥା କ୍ଷତ ସେବୀଣା ଝଙ୍କାରେ,
ହୋଇଛୁ ସୁନ୍ଦର ଇନ୍ଦ୍ରଧନୁ ପରକାରେ ।
ଦୈନ୍ୟ ବର କଲ ତାକୁ ଗୌରବମଣ୍ଡିତ
ସୁନ୍ଦର ପରଶେ ତବ କାଳିମା କୁଣ୍ଠିତ ।
ନିଃସ୍ୱ ବନ୍ଦୀ, ଧନ୍ୟ ତୁମେ ରାଜ ଦରବାରେ !
ଗାଇ ରାଜ ପ୍ରଶସ୍ତି ସେ ଜୀର୍ଣ୍ଣ ବୀଣା ତାରେ ।
କି ଭୟ ଭାବନା ? ସୁଖେ ମୁଦ ହେ ନୟନ,
ଧନ ମାନ ଖ୍ୟାତି ଦେଖି ଅପଣା ସ୍ୱପନ ।

୩—ଦାରିଦ୍ର୍ୟ ଅଶ୍ରୁରେ ବନ୍ଦୀ ତବ ଅଭିଷେକ
କ୍ଷୁର୍ଣ୍ଣ କରି ନାହିଁ ମାନ ତବ ରାଜ ଟେକ ।
ଅପୂର୍ବ ମୂର୍ଚ୍ଛନା ତାନ ସେହି ଜୀର୍ଣ୍ଣ ତାରେ
କୌମୁଦୀବିହାର ପ୍ରାଣ-ଅଶ୍ରୁପାରାବାରେ ।
ନୀରବେ ବହିଛ ଶିରେ ପୂର୍ଣ୍ଣ ରାଜାଦେଶ
ଚିତ୍ତବୃନ୍ଦାବନେ ନିତ୍ୟ ମାଧୁର୍ଯ୍ୟ ଆବେଶ;
ସେହି ତବ ପୁରସ୍କାର ଜୀବନ ଅନ୍ଧାରେ,
ନୋହୁ ତବ ମୂଲ୍ୟ ଦେନା ମର୍ତ୍ତ୍ୟଦରବାରେ ।
ଧନ୍ୟ ସେହି ଦେଶ ମାଟି ଯାର ଅଧିବାସୀ—
ମରେ ନାହିଁ କେବେ ହୋଇ ଅନ୍ନ ଉପବାସୀ;
ଯେ ଦେଶେ ଦାରିଦ୍ର୍ୟ ଦୀକ୍ଷା ପରମ ପ୍ରମାଣ,
ଯହିଁ ନିତ୍ୟ ଲଭେ ନିଃସ୍ୱ ରାଜାର ସମ୍ମାନ,
ସେ ଦେଶେ ନମସ୍ୟ ତୁମେ ! ତବ ଅବସାନ
ଅଶ୍ରୁ-ଅନ୍ଧକାରେ ଆଣେ ଆଲୋକ ସନ୍ଧାନ ।

[ ୧୯୩୬ ]

---

## ଦେଶସେବା

୧—ଦେଶସେବା ନାମେ ଆତ୍ମପ୍ରତିଷ୍ଠା ପ୍ରଚାର,
ନୁହଇ କି ପୌରୁଷର ଘୃଣ୍ୟ ବ୍ୟଭିଚାର ?
ନାହିଁ କି ସମ୍ଭ୍ରମ ଲଜ୍ଜା ନୀତି-ଭୟ ମନେ ?
ବୁଲିଛନ୍ତି ଯେତେ ପଡ଼େ ତହିଁ ମଧ୍ୟେ ଜଣେ—

ତୁହନ୍ତ ମାନବ ଦେହ ! ମୂକ ପଶୁ ସମ
ସରଳ ବିଶ୍ୱାସ ନିଷ୍ଠା ଏକାନ୍ତ ଧରମ ।
ଅଛୁ ନା ସାହସ ବୀର୍ଯ୍ୟ ମାନବ-ନାୟକ,
ତାଙ୍କର ଚାଳକ ହେବ, ତାଙ୍କରି ସେବକ ?
କରିବଟି ପ୍ରାଣପାତ ତାଙ୍କରି ସେବାରେ ?
ଦେବନା ଶୋଣିତ ପିଣ୍ଡ ଦୁର୍ଦ୍ଦିନ ଅନ୍ଧାରେ ?
ଅଛୁ ବା ଯୋଗ୍ୟତା ମନେ କରିଅଛ ପୁଚ୍ଛା ?
ଅବା କ୍ରୀଡ଼ା ଶେଷେ ଆତ୍ମରକ୍ଷା ପଛଘୁଞ୍ଚା ?
ଭୁଲନା ଅଜ୍ଞାନ-ଦଣ୍ଡ-ବଚନ-ବିଧାନ !
ସହସ୍ର ହେଲତ ପ୍ରାଣେ ସୁପ୍ତ ଭଗବାନ ।
୨—ଅନ୍ଧକାର ଯାତ୍ରୀ ହେବା ଜାଣିନାହଁ ଚାଲି,
ପଦେ ପଦେ ଝୁଣ୍ଟିବାର ଲୋକହସା ଖାଲି ।
ଅଜ୍ଞାନର ଦର୍ପେ ଯେବା କାଟିଛୁ ଜୀବନ,
ଆତ୍ମଘାତୀ ହୋଇ ଆନେ କରଇ ବିପନ୍ନ ।
ଯାଇନା ଶୈଶବ ଯାର ହାତେ କ୍ରୀଡ଼ନକ,
ଧୃଷ୍ଟତା ନୁହେ କି ହେବା ଆନର ଚାଳକ ?
ବିଷମ ମାୟାରେ ଯାର ଚକ୍ଷୁ ବିଜଡ଼ିତ,
ଦୂର ସିନ୍ଧୁରୋଳ ଶୁଣି ମୁଗ୍ଧ ପୁଲକିତ,
କାହୁଁ ସେ ଜାଣିବ ପାଶେ ନାଗପାଶ କଥା ?
ବାସ୍ତବ-ସମ୍ପର୍କ ଶୂନ୍ୟ ଜୀବନର ବ୍ୟଥା ?
ବିପନ୍ନ କାତର ବନ୍ଧୁ ଜୀବନ ନିୟନ୍ତା,
ଦୁର୍ଗମ ଅନ୍ଧାର ପଥେ ଶୁଦ୍ଧ ତୁମ କଥା ।
ନିଃସ୍ୱ ଏ କାତର କର ଧରି ଭଗବାନ,
ବିପଥ ଗମନୁଁ ତୁମେ କର ପରିତ୍ରାଣ ।



## ସ୍ମିତପରିହାସ

ପ୍ରସ୍ଫୁଟିତ ଉପବନେ ନାନାଜାତ ଫୁଲ୍,
ଉଦ୍‌ବେଳିତ ପ୍ରାଣ ପାନରସ-ସମାକୁଳ ।
ଅଥବା ତାରୁଣ୍ୟ ହାସ ଜୀବନ ପ୍ରବାହ,
ପ୍ରଶାନ୍ତ ଅନନ୍ଦ ପ୍ରଭା ନାହିଁ ଗାନଦାହ ।
ମୁଗ୍‌ଧ ନେତ୍ରେ ଗୃହୁଁ ବସି ନେତ୍ର ବେନି ସିକ୍ତ,
ଭାଳେଁ ଅତୀତର ସ୍ୱପ୍ନ ! ଆଜ ମୁହିଁ ରିକ୍ତ !
ମନେପଡ଼େ ଦିବ୍ୟ କାନ୍ତି କୁସୁମ ଭୂଷିତ—
ପରିପୂର୍ଣ୍ଣ ପ୍ରାଣରସେ ପ୍ରଣୟ ହସିତ !
ଜୀବନ୍ତ କୁସୁମ ସମ ସୁନ୍ଦର ସମ୍ପୂର୍ଣ୍ଣ,
କାଳର ଶୀତଳ ସ୍ପର୍ଶେ ଆଜ ଯାହା କ୍ଷୁଣ୍ଣ ।
ସକଳ ମାଧୁର୍ଯ୍ୟ ରସ ସକଳ ନବୀନ,
କେସନେ କରଇ କାଳ ଅକାଳେ ମଳିନ,
ଭାବୁଥିଲି ବସି ବସି ! ଯଣେ ରୁଗ୍‌ଣ ପ୍ରିୟା—
କ୍ଷୀଣ ଡାକେ, "ଔଷଧଟା ହେଲନାହିଁ ଦିଅ;
ବେଳ ସେ ଯାଉଛୁ ଗଡ଼ି, ନ ପାରଇଁ ଚାଲି,
ହାୟ ମନ୍ଦ ବୁଦ୍ଧି ! ଜୀଇଁଥାଉ ଯା ନ ମଲି ।
କେଉଁ ଅଡ଼େ ଗଲ ଅବା ?" ଉଠିଲି ଚମକି—
ଅପରାଧୀ ସମ ଗଲା କଲ୍ପନା ଅଟକି ।
କହିଲି, "ଯାଇନି ତାହିଁ ଦେଖୁଥିଲି ବସି,
ଫୁଟିଅଛୁ ଫୁଲ ଯେତେକ ସହସ୍ର ରୂପସୀ—
ବୃନ୍ତଛିନ୍ନ ସ୍ୱପ୍ନ ଜାଲ !" କହେ ଶୁଷ୍କ ହାସେ—
"ଦେଖିନ ମରଣ ତାର ହସୁଥିଲା ପାଶେ ?

ଦେଖିନାହିଁ, ଯେବେ ଦେଖି ଅସ ଅଭ୍ୟାସରେ,
ସଙ୍କେତ ଔଷଧ ଶିଶୁ କ୍ରୂର କାଳ ଉରେ ।"
ପ୍ରିୟା ପରିହାସେ ଅଶ୍ରୁ ସିକ୍ତ ଉଠେ ଫୁଲି,
ସୁଚେହି ମୁଗ୍ଧ ନେତ୍ରେ କରୁଁ ଖସିପଡ଼େ
ଶିଶିରୁ ଔଷଧ ଢାଳେ, ଝରଇ ଲୋତକ,
ହସି ଉଠେ ଯେସନେ ମୃତ୍ୟୁ ସୃଷ୍ଟି ନିୟାମକ !
ଭାବିଲି ମୋ କୁସୁମ କଥା ! ପାରିବନା ଧରି—
ମରଣ ସେ ଫୁଲ ଦେଇ ଅଭିନବ କରି ?
ହସି ପୁଣି କହେ ପ୍ରିୟା "ସେହୁ ଭାଗ୍ୟବାନ ।
ମୃତ୍ୟୁ ଅଶ୍ରୁ ଅନ୍ଧକାରେ ଲଭେ ସେ ପରାଣ !"

[୧୯୩୭]



## ଦଣ୍ଡବିଧାନ

ନବୋଧ ଶିଶୁରେ କରି ନିଷ୍ଠୁର ପ୍ରହାର,
ଅଶ୍ରୁ ତାର ହେଲା ମୋର ହୃଦ ରକ୍ତଗାର !
ଦେଖିଲି ଚାହିଁଲେ ଷଣେ ବିଷଣ୍ଣ ବଦନ
କାତର ନୟନଭଙ୍ଗୀ, ରୁଦ୍ଧ ତା କନ୍ଦନ !
ପଦପଦ୍ମ ଅବାସ୍ତବ ପାରୁନାହିଁ କହି
ଜାଣିବେ ମୋ ଅତ୍ୟାଚାର ନେଇ ଦେଣୁ ବହି,
ତାର କ୍ଷୁଦ୍ର ଶିରେ, ଥରୁଥିଲା କ୍ଷୀଣ ଗାତ୍ର !
ଅହତ ନୟନ ତାର କରେ ଗେଲାଧାତ—
ମୋ ସର୍ବାଙ୍ଗେ ! ଧୃତ ଭୁଲ ହେଉନାହିଁ ଥରେ,
ବିବେକ ବର୍ଗୁର ବୁଦ୍ଧି ଲୁପ୍ତ ଲଜ୍ଜାଭରେ !

ସଙ୍କୀର୍ଣ୍ଣ ବିଶ୍ବର ଦମ୍ଭେ କରଇଁ ଧିକ୍କାର,
ଅସ୍ବକୃତ ପାପ ହାତୁଁ କାହୁଁ ବା ଉଦ୍ଧାର ?
"ଅଜ୍ଞାନର ଭ୍ରମ ଲାଗି ସେ ଦଣ୍ଡ ବିଧାନ !
ବିବେକୀ ଦୁଷ୍କୃତ ଲାଗି କିବା ପରିଣାମ
ଭାଳିଛ କି ଥରେ ?" ପୁଚ୍ଛେ ସନ୍ତାନ ଜନନୀ,
ଦେବି କି ଉତ୍ତର ମନେ ପାରୁନାହିଁ ଜାଣି !!
ବିଶ୍ବରର ଅପରାଧ ପୀଡ଼ଇ ବିଷମ,
ହରିବ କିଏ ସେ ମର୍ତ୍ତ୍ୟ ଅନ୍ତର ଦାହନ ?
କରିଛୁ ବିଶ୍ବର ଯାର ସେ ମୋ ବିଶ୍ବରକ
ଅହତ ନୟନ ତାର ଅସୂଧ ଫଳକ !



## ହରିଜନ !

ମଳିନ ଭୂଷଣ ପୁଣି ନୀଚକୁଳେ ଜାତ,
ମାତର ପଡ଼ଇ ମନେ ମଙ୍ଗଳ ପ୍ରଭାତ,
ଶାରଦ ଶିଶିର ସ୍ନାତ ରହିଁ ନେଇ ଠାଣି,
ଧନ୍ୟ ସିନା ସେହୁ ତୁମେ ଯାର ପ୍ରାଣରାଣୀ !
କୃତ୍ତାରୁପ ହୀନା କହୁ କରେ ଯେ ଫୁତ୍କାର,
ଅବମୃଷ୍ୟକାଷ୍ଠ କରେ ଘୋର ଅବିଚାର—
ଅପଣାର ପ୍ରୀତି ! ଜାଣେ ନାହିଁ ଅକିଞ୍ଚନ—
ସେ ରୂପେ ଉଜ୍ଜ୍ୱଳ ଦେବତାର ସିଂହାସନ ।
ପରମ ମଙ୍ଗଳ ସୌମ୍ୟ ଅନନ୍ଦ ସନ୍ଦେଶ
ବହୁଅଣେ ତବ ନେଇ ଦିଏ ନାହିଁ କ୍ଲେଶ;

ମରୁଦ୍ୟାନ ସମ ପାନ୍ଥ ନେତ୍ର ପ୍ରୀତିକର,
ଶର କ୍ଳାନ୍ତ ହର ଶର ପ୍ରଶାନ୍ତ ସୁନ୍ଦର ।
ବିପଥ ପଥିକ ତୀବ୍ରତମ ତୃଷା ହରି,
କହୁଦଏ ଯାତ୍ରା ପଥ ଦେଇ ନେତ୍ରସୁନ୍ଦରି !

## ବିଜୟା

ଶୋଣିତ ଅପ୍ଲୁତ ଶତ ସତ୍ୟସେନା ଏ ଜାତିର ପ୍ରାଣ,
ବିଜୟ ଗୌରବେ ତବ ଯେନ ଦୀନ ମାଙ୍ଗଳିକ ଗାନ ।
ଦୀର୍ଘ ଅମା ଅବସାନେ କ୍ଷୀଣ ଉଷା ଅଲୋକ ସଞ୍ଚାର,
ସଂଗ୍ରାମ ଉପତଦଗ୍ଧ ଧରା ପରେ ପ୍ରଥମ ଅହାର !
ସେ ପ୍ରଶାନ୍ତ ସନ୍ଧ୍ୟା ସମ ସୁନ୍ଦର ତୁମରି ଜୟଯାତ୍ରା,
କୋଟିମୁଗ୍ଧ କଣ୍ଠ ଗାଏ "ଜୟ ହେ ଭାରତ-ଭାଗ୍ୟଧାତା !"
ପୋଛୁନା ଦୁର୍ଦ୍ଦିନ ଅଶ୍ରୁ, ଏ ଜାତିର ଲଗିନା ପରଶ,
ସଂଗ୍ରାମର କ୍ଷତ ଦାହେ ! 'ପଛଦୁଆଁ ଦୀନ ଆଦରଣ !'
ନିଃସ୍ୱ ଏ ଜାତିର ଶତ ମର୍ମଭବ ଗ୍ଲାନି ଅତ୍ୟାଚାର,
ପକାଇ ପଛକୁ ବୀର ଶୋଣିତକୁ କରିଛ ଫୁତ୍କାର ।
ଶୁଣିଛ ଅଧ୍ୟକ୍ଷ ଡାକ, ହୃଦେ ଏ ଜାତିର ଦୈନ୍ୟ ବୋଧ,
ଭୁଲିଛ ଏକଇ ନିଷ୍ଠା, ଅସତ୍ୟ—ଲୁଣ୍ଠନା ପ୍ରତିଶୋଧ ।
ଡରିନାହଁ ମରଣକୁ ନିର୍ଯାତନ ତବ ଚାହେ ଧୂଳି,
ଅବିଚଳ ନିଷ୍ଠା ଧୈର୍ଯ୍ୟେ ଛିନ୍ନ ପାଦୁ ନିଷ୍ଠୁର ଶାଙ୍କୋଳି ।
ଦରିଦ୍ର ଜାତିର ଆଶା, ହେ ଦୁର୍ଜ୍ଜୟ ନୟନ ସମ୍ପଦ,
ଦିଗ୍ବିଜୟ ଯାତ୍ରାପଥେ ଯେତ ନିଃସ୍ୱ-ସ୍ମରଣ-ପ୍ରଣତ ।
ଜୟ ହେଉ ଅଭିଯାନ ! ଅଗ୍ରସର, ପୁଣି ଅଗ୍ରସର !
ସୈନିକ ଜାଣେର ମୃତ୍ୟୁ, ପୁଣି ଜୟ ! ନୁହେ ଅବସର ।

ଭେଦଛ ଏକଇ ବ୍ୟୂହ, ଷଡ଼ବ୍ୟୂହ ଦଶଇ ସମ୍ମୁଖେ !
ଅଯୂତ ଅମ୍ଳୀଯ୍ ମୂକ ପଶ୍ଚ ସମ ଗ୍ଳାନ୍ତ ଭସ୍ମୁକେ ।



## * ପ୍ରୀତିସ୍ୱରୂପ !

ପ୍ରୀତି ନାମେ ପ୍ରାଣ ତୁଲେ ଲଗାଇଛ ଖେଳା,
ପୀରତି ପାଳନା ନୁହେଁ ପ୍ରାଣ ଅବହେଳା ।
ପ୍ରୀତି ନୁହେ ରକ୍ତ ମାଂସ ବିଳାସର କ୍ରୀଡ଼ା,
ପ୍ରୀତି ଲତା ଅନ୍ତରାଳେ କୁସୁମର ବ୍ରୀଡ଼ା ।
କୁସ୍ମିତ ସୁନ୍ଦର କେବା ପ୍ରୀତି ସ୍ୱପଣୀରେ,
ଟଣୁ ଯିବ ବେଳା, ଲଭ୍ୟ ନୁହେଁ ତୃଣ ନୀରେ ।
ଭଲ ପାଲୁ ଇଚ୍ଛେ ମନ କାଳେ ହୁଏ ଭେଲ,
ଲୋଭନୀୟ ପ୍ରଦୀପଟି ନାହିଁ ବିନ୍ଦୁ ତେଲ,
ଆମ୍ଭ ଅବମୂଲ୍ୟତାରେ ଗୃହ ଅନ୍ଧକାର
ଅବା ସାର ହୁଏ ପ୍ରାଣେ ସହସ୍ର ବିକାର ।
ବହିଯାଏ ବେଳା ମାତ୍ର ହୁଏ ନାହିଁ ପୂଜା,
ଚପଳ ପ୍ରଜ୍ଞାରେ କାହିଁ ଗୂଢ଼ ତତ୍ତ୍ୱ ବୁଝା ?
ଭିନ୍ନ ପ୍ରଣୟିନୀ, ପ୍ରାଣ ମାତର ଅଭିନ୍ନ,
ପ୍ରାଣେ କାହିଁ ବଡ଼ ସାନ ? ନତ ହୁଅ ଦୀନ ।
ଅରୁଚ ଯେ ରୂପ ତୋର ଦେଖିଛୁ କି ଥରେ,
ସୁବର୍ଣ୍ଣ ପ୍ରଦୀପ ଅଭ୍ର ନିଭୃତ ଅନ୍ତରେ ?
ତା ଅଶ୍ରୁ ମୁକୁତା ହାର ଅମୂଲ୍ୟ ସମ୍ପଦ,
ଚିହ୍ନାରି ଗ୍ରାହକ ନୋହୁ କରୁ ଅମ୍ବବଧ ।
ପରମ ପୀରତି ସହିଁ ସୁଲଭ ପ୍ରଣୟୀ,
କାଚ ଭାଳି ମଣି ଫିଙ୍ଗୁ ପଛେ ହେବୁ ଦହି ।

* କୌଣସି ତରୁଣ ପ୍ରଣୟୀଙ୍କ ଉଦ୍ଦେଶ୍ୟରେ ।

ପୀରତରେ ନାହିଁ ଚଳେ ଅଳଙ୍କାର ଗୀତ
ଅଳଙ୍କାର ହୋଇ ବଢ଼ାଇଲ ଅସ୍ମୃଭୀତ,
ସ୍ଥୂଳଜ୍ଞାନ କଷଟିରେ ପ୍ରୀତି ନୁହେଁ ଧରା,
ପ୍ରାଣ ଗାଏ ହୃଏ ଦନ୍ତୁଁ ଦାନ ବିଷଭରା
ନୀରବ ନିଗମ ପୁଟରେ ପୁଣ୍ୟ ପ୍ରାଣ ପୂଜା,
ତେବେ ହେ ପ୍ରଣୟୀ ପ୍ରୀତି ତତ୍ତ୍ୱହେବ ବୁଝା,
କୂଳେ ବୁଲି ନିତି ନିତି ଢେଉ ଗଣିବାର—
ଅଶୋଭନ ବୁଡ଼ ଜଳେ, ଡାକେ ପାରାବର ।
ଗରଳକୁ ସୁଖି କରୁ ଅମୃତ ଭରମ,
ସ୍ଥୂଳଲକ୍ଷୀ ବୁଝଇ କାହିଁ ସେ ତତ୍ତ୍ୱ ନିଗମ ?



## ପ୍ରଣୟ ଲିପି—

କ୍ଷୁଦ୍ର ଜୀବନର କ୍ଷୁଦ୍ରତମ ଇତିହାସ,
ଭସ୍ମ କଲ ! ଅଗ୍ନିଶିଖା କଲା ହେଲେ ଗ୍ରାସ !
ସେଥିଲାଗି ପ୍ରଣୟିନୀ ନୈନ ଛଳ ଛଳ,
ଅପଣା ଅନ୍ତରେ କଳ୍ପି ଶତ ଅମଙ୍ଗଳ !
ସେ ଗର୍ହିତ କର୍ମ ଥାଉ ଦୂରେ ବାରବାର,
ଅତୀତ ପ୍ରଣୟ ସ୍ମୃତି-ପୂଜାର ଆଧାର—
ଭସ୍ମ-କଳପନା ପାପ ! ତେଣୁ ମୁଖ ଭାର !
କହିଲି ମୁଁ ହସି "ଅଗୋ ତୁଚ୍ଛର ପୂଜାରୀ !
ସ୍ମୁହଁ ଥରେ ମୁଖ ଠେକା ହୋଇଣି ଉଷତ,
ପଡ଼ି ରହିଅଛି ଦୀର୍ଘ ଜୀବନର ପଥ !

ପାର୍ଶ୍ୱେ ପ୍ରମୋଦ ଉଦ୍ୟାନ, କେତେ ଛାୟାବୀଥୀ,
ନିତ୍ୟ ନୂତନ ପ୍ରଣୟ ଫୁଲ ଫୁଟେ ନିତି;
ତା ପାଶେ ଝଙ୍କର ମରୁ ! ଭୁଲ ଗୋ ସୁନ୍ଦରୀ—
ପାରିବଟି ତହୁଁ ପ୍ରୀତି ନିତ୍ୟ ନବ କରି ?
ସେ ନିତ୍ୟ ପ୍ରଳୟ ଲାଗି ହୁଅ ଗୋ ପ୍ରସ୍ତୁତ
ଅଦ୍ଭୁତ ଜୀବନେ ନିତ୍ୟ ପ୍ରଣୟ ଅଦ୍ଭୁତ !
ପୁରାତନ ଅତୀତ ଯା ସେ ତ ତୁଚ୍ଛ ଅତି,
ସୁଦୂର ଭବିଷ୍ୟ ଚାହଁ ଚାଲ ଗୋ ପ୍ରଣୟି !
ନିତ୍ୟ ଉଷା ନବ ପ୍ରୀତି ନବୀନ ଯୌବନ,
ଭବିଷ୍ୟ ଆନନ୍ଦ ଚାହଁ ଭୁଲ ପୁରାତନ !
ଭସ୍ମ ଯାହା ଅସୁନ୍ଦର ତହିଁ ଖେଳିବାର,
ପ୍ରଣୟର ନୁହେ ଅର୍ଥ କଳ୍ପନା ବିକାର;
ବିଶାଳ ଜୀବନ ! କ୍ଷୁଦ୍ର ଅତୀତ ପ୍ରଣୟ !
ଧରିବ କେସନେ କହ କରିବ ବା ଜୟ-
ଦୁର୍ଦ୍ଦାନ୍ତ ସୈନିକ ପ୍ରାଣ ? ବିଜୟର ଲିପ୍ସା-
ଜଳେ ଯେଉଁ ପ୍ରାଣେ ତୁଚ୍ଛ ଫୁଲତୋଳା ନିଶା !
ବିରଳ ଉଦ୍ୟାନେ ସ୍ୱପ୍ନ ପ୍ରଣୟ ବିଳାସ
ଦୁର୍ଦ୍ଦମ ପ୍ରଣୟୀ ମୃତ୍ୟୁ ଗଳା ନାଗ-ପାଶ ।
ପ୍ରଣୟର ମୃତ୍ୟୁ ଚାହଁ ? ଲୁପ୍ତ ଧନପରି—
ଲୁଚାଇ ରଖିବ କ୍ଷୁଦ୍ର ସମ୍ପୁଟେ ସୁନ୍ଦରି ?
କ୍ଷୁଦ୍ର କେତେ ପ୍ରୀତି-ଲିପି, ତୁଚ୍ଛ ପ୍ରଗଲ୍ଭତା,
ଲୁଚାଇବ କାହିଁ ତାକୁ ? ଏତେ ଗୋ ମମତା !
ଆସିବ ବାର୍ଦ୍ଧକ୍ୟ ଶୋଷିବାକୁ ପ୍ରାଣରସ,
ଶୋଷିବ କଳ୍ପିତ ପ୍ରୀତି ସ୍ୱପ୍ନର ଆଦର୍ଶ !

କି କରିବ ତହୁଁ ? ଉଠ ପ୍ରସାରି ସେ କର
ରଙ୍ଗି ଲୁକ୍ଷ ହାତେ ହାତ ହେବା ଅଗ୍ରସର ।
ପାଇବ ତ ଗୁଲ ନୁଲେ ? ଦୂରେ ପ୍ରୀତିଶିଖା,
ସେ ପ୍ରୀତିରେ ସତ୍ୟ ହେଉ ଅମୃତର ଦୀକ୍ଷା ।"



## ବାସରଫୁଲ

ଯେ କୁସୁମ ଅଜ ବନ୍ଧୁ ଦେଲ, କଲ ଛୁଲ,
ନ ବୁଝିଲ ସରଳ ପ୍ରାଣର ପ୍ରୀତି ଗନ୍ଧ ।
ଯାର ରୂପ ସ୍ୱର୍ଣ୍ଣ ଗନ୍ଧେ ହେଲ ଗୋ ବ୍ୟାକୁଳ,
ଦେଖିଛ କି ଅନ୍ତରାଳେ ତାର ଅଶ୍ରୁ ଦୂଳ ?
ଦେଖି ନାହିଁ ଯେବେ ବନ୍ଧୁ ନାହିଁ କିଛି ଦେଖି ?
ଦେଖ ଯେବେ ସ୍ମୃତିପଟେ ରଖିବଟି ଲେଖି ?
ଅଜ୍ଞାତ ସରଳ ପ୍ରାଣ ପ୍ରଥମ ମିଳନେ,
ଦେଲ ଯେ କୁସୁମ ଧରି ରଖିବଟି ମନେ ?
ସକଳ ମାଧୁରୀ ତାର ହୋଇ ନାହିଁ ଶେଷ,
ଲୁଚ୍ଛ ଦଳ ବୃନ୍ତ ଲାଗି ତବ ମୋହାବେଶ,—
ଦେଖି ଭୁଲିଲ ମୁଁ ଲାଜେ, ବାସର ଉତ୍ସବ
ସରିଲା ରଜନୀ ଶେଷେ ଛୁଣ୍ଣ ନାରୀଗର୍ବ ।
ମଉଳ ନାହିଁ ସେ ଫୁଲ ସରନି ମାଧୁରୀ,
ବାସର କୁସୁମ ବ୍ୟଥା ଯିବ ନାହିଁ ଭୁଲି ।

[୧୯୩୭]



# କୌଣସି ତରୁଣୀ ଲେଖିକାଙ୍କ ଉଦ୍ଦେଶ୍ୟରେ

ଦରିଦ୍ର ତରୁଣୀପ୍ରୀତ ନୁହେ ବ୍ୟଭିଚାର,
ବୃଥା କ୍ଷମା କର ଜାଣି ଅପବ୍ୟବହାର ।
ଲାଳସାର ପରିତୃପ୍ତି ନୁହେଁ ବାଣୀ ପୂଜା,
ଟପଟେ ସୁଧା! ରଖି କେବେ ହୋଇବ କି ତୃଷ୍ଣା—
ପ୍ରଣୟର ପବିତ୍ରତା ? ପ୍ରାଣର ସୌନ୍ଦର୍ଯ୍ୟ
ତୁମ ବାଣୀ ବ୍ୟବହାରେ କୁଣ୍ଠିତ କଦର୍ଯ୍ୟ !
ତୁମର ରାକ୍ଷସୀ ସ୍ପୃହା ଜିହ୍ୱା ଲେଲିହାନ
ଦଂଶେ କଳପନା ନେନେ ! ଥରେ ମୂକ ପ୍ରାଣ !
ନାରୀ ହୋଇ ଶିଖି ନାହିଁ ଢଳେ ଶିଷ୍ଟାଚାର,
ଚିର ଶୁଭ୍ର ପୂଜ୍ୟ ଛାଡ଼ି କରୁଛ ପ୍ରଚାର—
ନାରକୀ ଧରମ, କରେ ଘାଣ୍ଟୁଛ ନରକ.
ଭାବୁଛ ପ୍ରଣୟୀ ହେବ କଣ୍ଠର ସ୍ତବକ ?
ଶୁଣି ତବ ଉଚ୍ଛୃଙ୍ଖଳ ଲାଳସା ଆହ୍ୱାନ, *
ଲଜ୍ଜିତ ସେ ଲକ୍ଷ କୋଟି ନରନାରୀଗଣ !
ଥରଇ ଦେବତା ଆତ୍ମା ଲଭି ମୃତ୍ୟୁ ବ୍ୟଥା,
ସ୍ପୃହିତ ପ୍ରାଣର ଦେଖି ଅଶ୍ଳୀଳ ନଗ୍ନତା !
ଏ ଭୂମିରେ କୁତ୍ସିତ ସେ ଅଧର ଦଂଶନ,
ରାଜମାର୍ଗେ ଦିବା ଭାଗେ ପଶୁ ଆକ୍ରମଣ !
ପବିତ୍ର କୁସୁମ ଛାଡ଼ି ଦେବତାର ଶିର,
ନର୍କେ ଲୋଟିବାର ଦେଖି ବହେ ନେତ୍ରନୀର !

[୧୯୩୭]



* ପଦ୍ୟଟିରେ ଚୁମ୍ବନ, ଆଲିଙ୍ଗନାଦିର ଖୋଲା ଲିପ୍ସା ସୂଚିତ ହୋଇଥିଲା ।

—୨୫

# ଭିକ୍ଷୁଗୀତ

ଭୁଲିଲେ ତୁ କାଳକୁ ଭେଳା,
କାଳ ତୋତେ ପାରେ କି ଭୁଲି
କେତେ ଧନ ହେବୁରେ ସଙ୍ଗା,
ଆନ ନେବେ ପକାଇ ଧୂଳି ?
ଯିବ ଧନ ସମାନ ତୁ କି
ଭାବ ? କାଳ ଦେଲେରେ ଫୁଙ୍କି,
ଛାୟାବାଜି ଉଭେଇ ଯିବ
ସନ୍ଧ୍ୟା ମେଘ ଯିବ ମଉଳି
ଧୂଳିରେ ଯେ ରଚିଛୁ ଘର,
ଦିଶେ ନେବେ କି ମନୋହର,
ଅଚିରେ ସେ ପଡ଼ିବ ଝଳି
ଛାଳ କର ଗଲେ ରେ ଗୁଳି । ୨ ।
ଭାବ ମନେ ଜୀବନ ନଦୀ,
ବେଗଗତି ଚିର ଅବଧି,
ଭାଳ ଥରେ ମୁହାଣେ ଚଢ଼ା
ପଥ ତୋର ଦେବ ଅଗୁଳି ।  ।
ଦୂରଦେଶୀ ପଥିକ ଅରେ
ବସିଲେ ତୁ ଖେଳିକୁ ଧାରେ,
ପଥ କେତେ ରହିଛି ପଡ଼ି,
ଭୁଲିଗଲୁ ଯିବ କି ଚାଲି । ୪ ।



# ଜନନୀ

୧— ଜନନି ଗୋ ଜନମିଲି ବହୁ ଦୁଃଖଦୀକ୍ଷା !
ଦୁଃଖ ଅଶ୍ରୁ ବେଦନାରେ କ୍ଷୁଦ୍ର ପ୍ରାଣଶିଖା—
ନିଭିଲା ଅଜ୍ଞାତେ ! ଜଣିନାହିଁ କୋଳାହଳ,
ସଂଗ୍ରାମର କ୍ଷତ ଅଶ୍ରୁ ତୁମରି ସମ୍ବଳ !
ସେ ଶୁଷ୍କ ଅଧରେ ଦିନେ ଫୁଟିବାର ହାସ,
ପଡ଼େ ନାହିଁ ମନେ ! ବନେ ମରେ ଫୁଲ ବାସ,
ମରିଛ ତେସନେ, ପ୍ରାଣେ କାର କଣ ତ୍ୟାଗ,
ମୃତ୍ୟୁଠାରୁ ବଳି ବାଧେ ତବ ଅନୁରାଗ !
ନିଶୀଥ ଅନ୍ଧାରେ ବସି ଜାଳିଛ ନୀରବେ
ସୃଷ୍ଟିର ମଙ୍ଗଳ ଦୀପ, ଦେଇଛ ଗରବେ—
ହୃଦୟ ଶୋଣିତ ! ସନ୍ତାନର ମୁଖେ ସ୍ତନ୍ୟ,
ମାରି ଆପଣାକୁ ଅନ୍ୟେ ଦେଇଛ ଜୀବନ !
ସେତିକି ସ୍ମାରକ ତବ ବୁଦ୍‌ବୁଦ ଜୀବନେ !
କରୁଣ ନୟନ-ସ୍ମୃତି ଦହେ ଅନୁକ୍ଷଣେ ।
ଶୁଣିନାହିଁ ଦିନେ କାର ଆଦର ସୋହାଗ,
କେବେ କିନ୍ତୁ ଦେଖିନାହିଁ ଜୀବନେ ବିରାଗ !
ଭାରବାହୀ ପଶୁପରି ବ୍ୟଥା କରି ସାର,
ସକଳ ଦୁର୍ଦ୍ଦିନେ କରି ନାହିଁ ହାହାକାର,
ଚିର ଅବିଚଳ ଚିର ମୂକ ପରବତ,
ସ୍ଫୁରିତ ସେ ମ୍ଳାନ ନେତ୍ରେ ଦୈନ୍ୟର ମହତ୍ତ୍ୱ !
ଶୁଖିନାହିଁ ଏ ଅଧରୁ ତବ ସ୍ତନ୍ୟ ଦାଗ
ଶୈଳସମ ବାଧେ ତେଣୁ ତବ ଅନୁରାଗ !

ଭାବୁଁ ତବ କଥା ଫେରି ଆସେ ମୋ ଶୈଶବ !
କଣ୍ଠୁ ଫାଟିପଡ଼େ ରୁଦ୍ଧ କ୍ରନ୍ଦନର ରବ !
ମାତୃହରା ସନ୍ତାନର ମର୍ତ୍ତ୍ୟେ କାହିଁ ସ୍ଥାନ ?
କେ କରିବ ମାତୃହରା ବେଦନା ସମ୍ମାନ ?
ଝରିବ ଅଜ କା ବକ୍ଷୁଁ ଦୁର୍ଦ୍ଦିନେ ମମତା ?
ଦେଖିବ କାହିଁବା ଅଜ ଦୁଃଖ ଆକୁଳତା ?

୨—ଉପବନେ କେତେ ମ୍ଲାନ ଫୁଲ ପଡ଼େ ଝରି,
ପୁଣି କେତେ ଉଠେ ଫୁଟି ଶିର ଉଚ୍ଚକରି,
ଉତ୍‌ଫୁଲ୍ଲ ତାରୁଣ୍ୟ ବସେ ଯେସନ ତରୁଣୀ
ହାସ୍ୟ-ଲାସ୍ୟେ ମର୍ତ୍ତ୍ୟେ ଆଣେ ସୁଧା ସୁରଧୁନୀ ।
ମୃତ୍ୟୁକୁ ହଠାଇ ପ୍ରଭୁ ହସଇ ଜୀବନ;
ଶେଷ ପରିଣତ ପଛେ ମୃତ୍ତିକା ଶୟନ ।
ଦେଇଛ କି ଚକ୍ଷୁ ଦୃଶ୍ୟ ନଦେଖିବାର ଲାଗି—
ନଶ୍ୱର ଏ ଦେହେ ପ୍ରାଣ ରହିଅଛି ଜାଗି ?
ସକଳର ଅନୁଭୂତ ଦୂର ଦ୍ରଷ୍ଟାରୂପେ
କରଇ ଗୋଚର, ଦୁର୍ଭେଦ୍ୟ ଏ ଅନ୍ଧକୂପେ !
ସୃଷ୍ଟି ପରିଣତ ପ୍ରଶ୍ନେ ନାହିଁ ଅଧିକାର ?
ମାନବ ଦର୍ଶନ ପଛେ ନିଯୁକ୍ତ ଫୁଲାର ?
ଦେଇଛ ସୌନ୍ଦର୍ଯ୍ୟ ବୋଧ କାହିଁକି ମମତା ?
କାହିଁକି ପରାଣେ ଏ ଦୁଃସହ ପ୍ରୀତି ବ୍ୟଥା ?

୩—ବିପୁଳ ସୃଷ୍ଟିର ତୁମେ ପ୍ରାଣ ପାରାବାର,
ସଦା ଉଦ୍‌ବେଳିତ ନିତ୍ୟ ଚିର ନିରାକାର,

ଇନ୍ଦ୍ରିୟର ଅଗୋଚରେ ଅବ୍ୟକ୍ତ ଅଚିନ୍ତ୍ୟ,
ଜାଣି ପ୍ରଭୁ କାହିଁ ପାଇଁ ବିକଳ ଏ ଚିତ୍ତ ?
ଜାଣିଛୁ ଏ ଜୀବ ସୃଷ୍ଟି ସାଗରେ ବୁଦ୍‌ବୁଦ,
କେବେ ଲୀନ ମହାବକ୍ଷେ କେବେ ଉଦ୍‌ବୁଦ୍ଧ ।
ଜାଣେ ମୃତ୍ୟୁ ତୁମ କୋଳେ ପ୍ରଶାନ୍ତ ସୁଷୁପ୍ତି,
ଅଲଂଘ୍ୟ ବିଧାନ ଭୁଲି ଅଳ୍ପ ପରିତୃପ୍ତି—
ଲୋଡ଼େ ସଦା ମୂଢ଼ ମନ ପରମ ନିୟନ୍ତା !
ଆପଣା ନିୟନ୍ତା ହୋଇ ଲଭେଁ ଖାଲି ବ୍ୟଥା ।
ଭୁଲଇଁ ଜନନୀ ତୁଣ୍ଡେ ଦେଇଥିଲେ କ୍ଷୀର,
ବେଦନାର ବହ୍ନି ଜାଗି ଢାଳିଥିଲି ନୀର,
ଥାନ୍ତେ ଚିରକାଳ ପାଶେ ଅଳ୍ପ ତୃପ୍ତି ଲାଗି
ଭୁଲିଯାଏଁ ଆତ୍ମା ଅମୃତର ଅନୁରାଗୀ !

୪—ବିଶ୍ରାମ ଲଭିଛ ତୁମେ ପରମ ଜନନୀ !
କ୍ଷୁଦ୍ର ବୁଦ୍ଧି ସୃଷ୍ଟୁଗତ ପାରେ ନାହିଁ ଚିଣି !
ତେଣୁ ଏ ଦୌର୍ବଲ୍ୟ, ଚିତ୍ତେ ଏ ଅଶ୍ରୁ ବିକାର,
ଜାଣେ ତୁମ ପ୍ରତି ମାତା ମୋର ଅବିଚାର !
ଭାଳେଁ ପୋଛି ଅଶ୍ରୁ କରି ଅଙ୍ଗ ପ୍ରକ୍ଷାଳନ
ତବ ଆତ୍ମା ଶାନ୍ତି ଲାଗି କରିବି ତର୍ପଣ ।
ବହିବି ଜୀବନେ ହସି ତବ ଦୈନ୍ୟ-ଦୀକ୍ଷା,
ଦେଇ ସେ ପ୍ରଦୀପ କରେ ଜାଳିବି ତା ଶିଖା—
ପରମ ଯତନେ, ନିତ୍ୟ କରିବି ସ୍ମରଣ,
ପରମ ତ୍ୟାଗର ଶୁଭ୍ର ପ୍ରଶାନ୍ତ ନୟନ !
ଶାନ୍ତ ହେଉ ଚିତାନଳ ସନ୍ତାନ ଲୋଚନେ ।
ଶାନ୍ତ ହେଉ ଚିତ୍ତ ଗ୍ଲାନି ତବ ପୁଣ୍ୟାଲୋକେ !

ସକଳ ଅପୂର୍ଣ୍ଣେ କ୍ଷୁଣ୍ଣ ଲଭୁ ଗୋ ପୂର୍ଣ୍ଣତା,
ଉଦାସ୍ୟ ଜନନୀ ! ସାର ହେଉ ତବ ବ୍ୟଥା !

୫—ପରମ ଶ୍ମଶାନ ଭୂମି ! ଶବ ବାଦଗନ୍ଧ,
କ୍ଷିତି ଅପ ତେଜ ବ୍ୟୋମ ବାୟୁ ନିତ୍ୟବନ୍ଧ,—
ଅଦରେ ନିୟନ୍ତ୍ର ବର ଦେହୀ ଶେଷ ସତ୍ତା,
ପୋଛ ଶେଷ ଅଶ୍ରୁ ପୋଛୁ ଦିଅ ସବୁ ବ୍ୟଥା !
ହୁଅ ଯୋଗଯୁକ୍ତ ! ବ୍ୟଥା ପରମ ଆନନ୍ଦ !
ଯେ ଆନନ୍ଦ ଲଭି ସୃଷ୍ଟି ନିର୍ବାକ ନିସ୍ପନ୍ଦ !
ନୀରବେ ମଙ୍ଗଳ ବାଧି କରଇ ସ୍ୱୀକାର,
ପରଶେ ମରଣ ଯୋଗେ ଆଜ ନିର୍ବିକାର !
ଏହି ଯେ ପରଶ ସ୍ପର୍ଶେ ଭସ୍ମ-ଶବ-ଗନ୍ଧ,
ପ୍ରାଣପୂତ ପରିପ୍ଲୁତ ! ମୁକ୍ତ ହୁଏ ବନ୍ଧ !
ଯୋଗୀ-ଔଦାସୀନ୍ୟ ଶବ୍ଦେ ଯାଉଛୁ ଚେତାଇ
ଅନ୍ତରାତ୍ମା ଉଠେ କହି "ଅରେ ଦୁଃଖ କାହିଁ ?"
ଏସନେ ଜନନୀ ନିଭି ଗଲ ତୁମ୍ଭ ସତ୍ତା !
ଧନ୍ୟା ମେଘ ଖଣ୍ଡେ ମୋର ଅପୂର୍ବ ମମତା !

୬—କାନ୍ଦୁଛନ୍ତି କେତେ ପ୍ରାଣୀ ଆଜ ତୁମ୍ଭ ଲାଗି,
ତୁମ ସ୍ତନ୍ୟ ପୁଷ୍ଟ ମୋର ପ୍ରାଣ ବଇରାଗୀ
ବହୁଲେ କରଇ ଜୀବନର ଜୟଗାନ !
ଶୂନ୍ୟ ଜୀବନର ପ୍ରଶ୍ନ ଆଜ ସମାଧାନ !
ଯେଉଁ ନିର୍ବିକାର ପ୍ରାଣ ଦୈନ୍ୟ ବାଦବେ,
ଯାର ଶ୍ରେଷ୍ଠ ପୁରସ୍କାର ଲୋକକ ସମ୍ପଦ,

ଦେଇଯାଅ ସେହ୍ନ ପ୍ରାଣ ଏ ରକ୍ତେ ମିଶାଇ,
ନିର୍ବିକାର ଚିତ୍ତେ ସୃଷ୍ଟି ଜୟ ଗାନ ଗାଇ,
ଆନନ୍ଦ ପ୍ରଦୀପ ଜାଳି ମୃତ୍ୟୁ ଅନ୍ଧକାରେ,
ସୃଷ୍ଟିର ମଙ୍ଗଳ ସ୍ୱର ଚିର ନିର୍ବିକାରେ,
ମିଶିଯାଏଁ ହସି ହସି । ଲୀନ ହେଉ ଭୟ !
ଛିନ୍ତ ଅପନଦ ମୋର ଆନନ୍ଦ ଅଶ୍ରୁୟ !
ଯାଇଛ ଜନନୀ ଯାଅ ! ଅଶ୍ରୁ ତୁମ ପଥ···
ଜୀବନେ ସାର୍ଥକ ହେଉ ମାତା ମନୋରଥ ।

[୧୯୩୭]



## ପ୍ରବୁଦ୍ଧ ଧିକାର

ସ୍ୱଳ୍ପ ବୁଦ୍ଧି କ୍ଷୀଣ ଜୀବୀ ନତ କର ମଥା,
ଫୁଲାଇ ଗୁଲନ୍ତୁ ଗଲା ! ଦେଖି ସେ ଉଗ୍ରତା—
ହାସ୍ୟ ଉପୁଜଇ ମନେ ଦେଖି ବ୍ୟବହାର,
ଦୁର୍ଭାଗ୍ୟ ହେବ ଶେଷେ ପ୍ରବୁଦ୍ଧ ଧିକାର !
ହୋଇନି କର୍ତ୍ତବ୍ୟ ଜ୍ଞାନ, ଦାୟିତ୍ୱର ମୋହ,
ହରିଛୁ ଦର୍ଶନ ! ତେଣୁ ଅମୃସମାରୋହ ?
ପଢ଼ନ୍ତୁ ଓଲଟି ହେବୁ ଧବସେ ଜଳକା
ଅଙ୍କାତେ ବସିଲେ ଥରେ କାଳ ଗଲା ଧକ୍କା
ହସିବେ ଜନତା ସିନା ମଣ୍ଡ ଯାକୁ ମଣା ?
ଦେଖି ହେବେ ଖୁସି ତୋର ଭଗ୍ନ କାନ୍ଦଣା ।

—୨୫୪

କାଳହସ୍ତେ ଚୂର୍ଣ୍ଣୀଭୂତ ଶତ ଭୀମ-ଗଦା,
ସମୃଦ୍ଧ ସାକେତ କେତେ ହୋଇଅଛୁ ପଦା,
ସଫଗ୍ର ମାନବ କୀଟ ତର୍ଜନ ଗର୍ଜନ,
କ୍ଷୁଦ୍ର କ୍ଷୁଦ୍ର ତମ ଥରେ ହେଉ ତୋ ସ୍ମରଣ !



## ଭାରତବର୍ଷ——

୧—ପୂରବ ପଶ୍ଚିମେ ରକ୍ଷ-ଦାନବର ଲୀଳା !
ମଧ୍ୟ ଏ ଭାରତ ଭୂମେ ଶୈଳ ପୁଣ୍ୟଶୀଳା,
ଗାଉଛ‌ନ୍ତି, "ସ୍ୱାର୍ଥ-ଚିନ୍ତା ସଦା ଅମଙ୍ଗଳ ।
ଆତ୍ମତ୍ୟାଗେ ସଦା ସୁଖ କୋଟି ଜନ୍ମଫଳ ।"
ଦେଖୁଛୁ ଏ ମୂକ ଧାତ୍ରୀ ଚିରକାଳ ରହୁ,
ସ୍ୱାର୍ଥର ଶୋଣିତ ସ୍ରୋତ ଯାଏ କେତେ ବହୁ,
କେତେ ଜାତି ଅଭ୍ୟୁଦୟ ପଲକେ ପତନ
ସକଳ ନଶ୍ୱର ମେଳେ ଚିର ସନାତନ
ହେ ଭାରତ, ସ୍ମୃତିରେ ତବ ଆତ୍ମତ୍ୟାଗ ଦୀକ୍ଷା !
ପରାର୍ଥେ ଏ ଦେଶ ରାଜା ପଥେ ମାଗେ ଭିକ୍ଷା,
ବନ୍ଧୁ ହିତେ କରେ ତ୍ୟାଗ ରାଜ୍ୟ ନାରୀ ଭୋଗ !
ସନାତନ ଏ ବିଶ୍ୱର ତବ ରାଜଯୋଗ !
ନିର୍ବାଣ ସରବ ହେଲେ ଅମୃତ ଧରମ,
ଏ ପୁଣ୍ୟ ଭୂମିର ମୋର ହେଉ କୋଟି ଜନ୍ମ !

୨—ମାନବର ଦର୍ପେ ଯେବେ ଥରୁଛନ୍ତି ମାଟି,
କୋଟି ଅର୍ଦ୍ଧ କଣ୍ଠ ସ୍ୱରେ ନଭ ଯାଏ ଫାଟି,
ସ୍ୱାର୍ଥର ପ୍ରଶ୍ୱାସେ ଚତୁର୍ଦ୍ଦିଗ କଳୁଷିତ
ବସୁନ୍ଧରା ଶୋଣିତଲିପ୍ସା ! ଶୁଣେ ସେ ସଙ୍ଗୀତ—

"ସକଳ ପ୍ରପଞ୍ଚ ମିଥ୍ୟା ଭୂମା ସତ୍ୟସାର !
ତ୍ୟାଗେ ସୁଖ ସନାତନ, ପ୍ରଶାନ୍ତ ବିକାର !
ତ୍ୟାଗେ ଭୂମା-ଅନୁଭୂତି ! ଅମୃତ ଅନନ୍ଦ
ବିପଥ ମାନବ ଶାନ୍ତ ହେଉ ତବ ଦ୍ୱନ୍ଦ୍ୱ !"
ଜନନୀ ଭାରତ ତବ ସନାତନ ବାଣୀ
ଭରଇ ପ୍ରସ୍ତର ନିତ୍ୟ ପର୍ବତ ବନାନୀ;
ଶୈଳ ଗୁମ୍ଫା ଶିଳା ସ୍ତମ୍ଭ ସର୍ବେ ସମସ୍ୱରେ
ଗାଆନ୍ତି ନିର୍ଭୟେ ସୃଷ୍ଟି ସ୍ୱାର୍ଥ ସଂଘର୍ଷରେ !
ଶମଇ ଶୋଣିତ ତୃଷା, ଅସ୍ତ୍ରଘାତୀ ରଣ,
ହିମାଳୟ ସମ ତବ ସତ୍ୟ ସନାତନ !

## *ଆଧୁନିକ ବର୍ବରତା—

୧— ଥିଲେ ପୁରାତନ ଅହା ଜାତି ଯେତେ ଗୋଟି
ଏକେ ଏକେ ଧରା ପରେ ପଡ଼ିଲେଣି ଲୋଟି !
ବିଷଣ୍ଣ ମଳିନ ଯେହ୍ନେ ଅସ୍ତଗାମୀ ରବି
ସମୁଜ୍ଜ୍ୱଳ ଇତିବୃତ୍ତ ତାଙ୍କ ତୁଲେ ପବି ।
ପୁରାତନ ଜାତି ଶିରେ ନବ୍ୟ ବର୍ବରତା,
ସଗର୍ବେ ପ୍ରସ୍ତରେ ନିଜ ବିଜୟ ବାରତା !
ଦଳି ଅବନତ ଶିର କରେ ରକ୍ତପାନ
ପ୍ରାଣୀର ମର୍ଯ୍ୟାଦା ଅଜ ବୁଝେ ନାହିଁ ପ୍ରାଣୀ ।
ମୂକ ଯେହ୍ନେ ଭଗବାନ ! ନ ହୁଏ ଶ୍ରବଣ
କ୍ଷୁଧିତ ଆତୁର ଜାତି ବିକଳ କ୍ରନ୍ଦନ !

* ଚୀନ୍ ଯାପାନ ଯୁଦ୍ଧ ଉପଲକ୍ଷରେ ।

ଢଳି ପଡ଼େ ପ୍ରାଣୀ ପଥେ ଯେହ୍ନେ ମାଛି ମଶା,
ସଗର୍ବେ ବିଜୟୀ ହସେ ଦେଖି ମ୍ଳାନ ଦଶା ।
ତୁଚ୍ଛ ପଶୁ ପ୍ରାଣେ କେତେ ଗଭୀର ମମତା,
ତା ତହୁଁ କୁତ୍ସିତ ଘୃଣ୍ୟ ନିଷ୍ଠୁର ସଭ୍ୟତା !

୨—ବର୍ବର ସଭ୍ୟତା ! ସ୍ଥିର କର ତୋର ଗତି,
ଶାନ୍ତ ହେଉ ଧ୍ୱଂସ ଲୀଳା ଅସହ୍ୟ ଯେ ଅତି !
ଆଜ ଯେ ବୁଭୁକ୍ଷା ଅଗ୍ନି ଅନେ ଯାଏ ଦହି
କାଲି ସେ ଦହିବ ତୋତେ ପାରିବୁ ତ ସହି ?
ପୁରାତନ ବୋଲି ଯାକୁ କରୁ ଅବହେଳା,
ପ୍ରାଣର ମାଧୁର୍ଯ୍ୟ ତହିଁ ନ କରେ କି ଖେଳା ?
ସଜଳ ସେ ନେତ୍ର ବେନି, କେତେ ତହିଁ ପ୍ରାସ,
ନାହିଁ ଅବା ତହିଁ କେତେ ଯୁଗ ଇତିହାସ !
ଉଚ୍ଛୃଙ୍ଖଳ କୁତ୍ସିତ ଯା' ଯାହା ଅମଙ୍ଗଳ
ଯେତେ ବର୍ବରତା କାଲି ହରିନ୍ତି ସକଳ ।
ଥାପିନ୍ତି ସହସ୍ର ଯୁଗ ମଙ୍ଗଳ ବିଭୂତି
ପୁରାତନ ମାନବର ସୂକ୍ଷ୍ମ ଅନୁଭୂତି !
ସଂହର ସେ ଧ୍ୱଂସଲୀଳା ପୂଜ୍ୟ ହେଉ ପ୍ରାଣ,
ପୂଜ୍ୟ ହେଉ ପୁରାତନ ଶିବ ଅବଦାନ ।

୩—ରଣଡଙ୍କା ତୂରୀଭେରୀ କମ୍ପାଏ ଆକାଶ
ଧ୍ୱନିତ ରୌଦ୍ରରେ ବିଜୟୀର ଅଟ୍ଟହାସ !
କୋଟି ଅସହାୟ ପ୍ରାଣ କାନ୍ଦଇ ଆତୁରେ,
ଦର୍ପୀର ଅମୋଘ ଯନ୍ତ୍ର ଚୂରଇ ନିଷ୍ଠୁରେ ।

ବର୍ବରତା ଶାନ୍ତ ମୈତ୍ରୀ କରେ ପରାହତ,
ପ୍ରତିଷ୍ଠିତ ଯହିଁ ଦିନେ ଖ୍ରୀଷ୍ଟ ତଥାଗତ ।
ବହୁଛି ରକ୍ତର ବନ୍ୟା ଗରଜେ କମାଣ
ପ୍ରକ୍ଷିପ୍ତ ବିଷାକ୍ତ ବାଷ୍ପେ ପ୍ରାଣୀ ଲୟମାନ !
ଆଜ ମଧ୍ୟ ତଥାଗତ ମାଗୁଛନ୍ତି ଭିକ୍ଷା,
ଖ୍ରୀଷ୍ଟ ହୃଦ ରକ୍ତଗାର ପଡ଼ିନାହିଁ ଫିକା,
ଅଦ୍ୟାପି ମାନବ ଦ୍ୱାରେ ଯାଉଛନ୍ତି ଡାକି,
"ସଂହର ସଂହର ଅସ୍ତ୍ର !" ଅଶ୍ରୁପୂର୍ଣ୍ଣ ଆଖି !
କିଏ ବା ଶୁଣିବ ଡାକ ଡାକିଲେ କାତରେ ?
ମାନବ ସେ ନାହିଁ ଆଜ ଆପଣାର ଘରେ !



## ଅଗଭର

•

ତରୁଣ ତାପସ ଅଗଭର
ହୁଅ ଅଗଭର !
ଦୁର୍ଦ୍ଦିନ ତମେ କ୍ଷୁଣ୍ଣ ନୋହୁ ତୋ ଅନ୍ତର ।
କ୍ଷୁଣ୍ଣ ନୋହୁ ତୋ ପରାଣନିଷ୍ଠା,
ଅଗ୍ନି ମନ୍ତ୍ରେ ଲଭ ପ୍ରତିଷ୍ଠା,
ନିର୍ଜୀବ ଶିରେ ପଦାଘାତ କର
ତରୁଣ ନିଶାଣ ତୋଳି ଧର !
ହବ ନିର୍ଭୀକ ଅଗଭର !
ପଶ୍ଚାତେ ତୋର ମୃତ୍ୟୁ ସ୍ଥବିର,
ହସେ ନିର୍ଭୀକ ନତ ନୋହୁ ଶିର,

ପ୍ରାଣ ଅମୃତ ନିତ୍ୟ ଦାୟାଦ —
ଗାଇ ଜୀବନର ମନ୍ତ୍ର—
ଅଗଭର ହୁଅ ଅଗଭର ।
ବଚଶ ଏଇ ସୃଷ୍ଟିର ରସେ ନିତ୍ୟ ତୁ ଅଧିକାରୀ,
ନିର୍ଜୀବ ହୀନ ମିଥ୍ୟା ଦୁଅରେ ଅଜ୍ଞ ପୁଣି ତୁ ଭିକାରୀ ?
ଶୁଷ୍କ ଶୂନ୍ୟ କି ଜାଣେ ତଥ୍ୟ ?
ନିର୍ଜୀବ ସେବା ଜୀବନ୍-ସତ୍ୟ ?
ଶର ସବୁଜ ତୋ ତରୁଣ ସୃଷ୍ଟି !
ଅନନ୍ଦ ତୋର ସହଚର,
ବନ୍ଧ କର ତୋ ଶ୍ରବଣ ଦୁଆର
ଅଗଭର ହୁଅ ଅଗଭର !
ପିଚ୍ଛିଳ ପଥ ? ନାହିଁ ନାହିଁ ଭୟ !
ବିଦ୍ୟୁତ ତୋର ଗତି,
ଶର ଜୀବନ୍ତ ତୋହଲାଗି ସିନା
ବହୁଛି ମର୍ତ୍ତ୍ୟେ ଯୁଗ ଯୁଗ ଭାଗିରଥୀ ?
ପଣ୍ଡ ରହୁ ପଛେ ସେତେ କୁତ୍ସିତ
ବ୍ୟଙ୍ଗ କୁତ୍ସା ମ୍ଳାନ ଇଙ୍ଗିତ—
ତାରୁଣ୍ୟ ଅଧିକାରୀ !
ବନ୍ଧୁ ଗଡା-ଶୂର ମିଥ୍ୟା ଜଡ଼ତା
ଶିର ସିନା ହେବ ଭାରୀ ?
ସୃଷ୍ଟିର ଅପରୂପ ଅନନ୍ଦ,
ନିର୍ଦ୍ଦେଶ କରୁ ତୋ ଗତି ଛନ୍ଦ,
ବଚଶ ! ରସେ ହେ ଶର ! ରସିକ
ବାନ୍ଧ ଜୀବନ ଯନ୍ତ୍ର ।
ଅଗଭର ଅରେ ଅଗଭର ।

ଅଦୂରେ ଉଷାର ମୁଗ୍‌ଧ ଅଲୋକେ
ଫୁଟେରେ ପଦ୍ମଫୁଲ !
ଅନନ୍ଦେ ତାର ମୂଳ !
ଚିର ତାରୁଣ୍ୟ ତୁ ତାର ଦାୟାଦ
ଅତୀତ ଭ୍ରାନ୍ତ ଭୁଲ ।
ସେ କୁସୁମ ବିନା କାହିଁ ତୋ ଶାନ୍ତ ?
ଅତୀତ ତାଡ଼ନା ମିଥ୍ୟା ଭ୍ରାନ୍ତ !
ସତ୍ୟର ସେନା କାହିଁକି ଅଟକ
ରହୁଁ ପଶ୍ଚାତେ ଥରଥର ?
ଅଗଭର ହୁଅ ଅଗଭର ।



## ବନ୍ଦୀ-ବନ୍ଦନା

ଜୀବନ ବନ୍ଧୁ ଜୟ ଜୟ ହେ !
ଜୟ ଚିର ମଙ୍ଗଳମୟ ହେ !
ଦୁର୍ଦ୍ଦିନେ ଝରେ ତବ ଭରସା,
ତମିରେ ତୁମର ପ୍ରୀତ ବରଷା,
କୌମୁଦୀ ଚିତ ପଟେ ସହସା
ଅନ୍ତର ଚିର ନିର୍ଭୟ ହେ !
ଜୟ ଚିର ମଙ୍ଗଳମୟ ହେ । ୧ ।

ଯାତନାର ଦୁଖ ଅବସାନେ,
ପରଶେ ଶୀତଳ ଛାୟା ପ୍ରାଣେ,
ସୃଷ୍ଟି ଉଚ୍ଛଳେ ତୁମ ଗାନେ,

ସକଳ ଗ୍ଲାନି ମୋହ କ୍ଷୟ ହେ,
ଜୟ ଚିର ମଙ୍ଗଳମୟ ହେ । ୨ ।

ଅନ୍ଧାରେ ବିଜୁଳିର ଚମକେ
ତୃଷ୍ଣତା ଭୀତସ୍ୱର ପଲକେ
ନିର୍ଜୀବ ଅଙ୍ଗ ମୋ ପୁଲକେ
ଲଭି ତୁମ ବାଣୀ ବରାଭୟ ହେ ।
ଜୟ ଚିର ମଙ୍ଗଳମୟ ହେ । ୩ ।

ମରୁରେ ବହଇ ପୁଣି ଝରଣା,
ହସେ ଉଷା ଆଲୋକବରଣା,
ମିଥ୍ୟାର ଭୟଭ୍ରାନ୍ତ ଯାତନା,
ସକଳ ମନ୍ଦହାସେ ଲୟ ହେ,
ଜୟ ଚିର ମଙ୍ଗଳମୟ ହେ । ୪ ।

ଜୟ ହେ ପରଶ ମହାସିନ୍ଧୁ !
ସୁବିପୁଳ ମୁଁ ସଲିଳବିନ୍ଦୁ !
ଧନ୍ୟ ଦେଖି ସେ ମୁଖ ଇନ୍ଦୁ
ସକଳ ପାପଗ୍ଲାନିକ୍ଷୟ ହେ !
ଜୟ ଚିର ମଙ୍ଗଳମୟ ହେ । ୫ ।

ଶୁଭ୍ର କୁସୁମ କେତେ ଝରଇ
ନବୀନ କୁଞ୍ଜବନ ଭରଇ
ନିର୍ଝର କଳଗୀତି ସ୍ଫୁରଇ
ଜୀବନ ଜୈବ ବାଣୀ ବହ ହେ
ଜୟ ଚିର ମଙ୍ଗଳମୟ ହେ । ୬ ।

[୧୯୩୮]

---

୨୨୧—

## ଭକ୍ତର ଗର୍ବ

ତୁମର ଗର୍ବ ହେଉ ଏ ଜୀବନେ ସାର;
ଆନ ଯାଗର ବଦଳ ହେଉ ନାରଖାର,
ତୁଟୁ ହେ ଦମ୍ଭ ଅମ୍ଭାର ଅଭିମାନ,
ତୁଚ୍ଛତା ହେଉ ଏ ମରୁରେ ଅଣ ପ୍ରାଣ । ୧ ।

ତୁମରି ଗର୍ବେ ବକ୍ଷ ଗୋ ହେଉ ସ୍ଫୀତ,
ମିଥ୍ୟା ସମୀପେ ନିର୍ଭୟ କର ଚିତ,
ଚିର ମଙ୍ଗଳ ସକଳ ଦୀନତା ହର,
ଧ୍ରୁବ ହେଉ ତବ ବାଣୀ ଚିର ନିର୍ଭର । । ୨ ।

ଅନ୍ତର ମୋହେ ମାନବର ଆରାଧନା,
ତୁମେ କଲେ କେବେ କୁଣ୍ଠିତ ମୋ ରସନା,
କର ହେ ବିକଳ ନିଷ୍ଠୁର ଘାତେ ଜଡ଼
ତୁମର ଗର୍ବ ହେଉ ଏ ଜୀବନ ବଡ଼ । ୩ ।

ତୁମରି ଗର୍ବେ ଅଶ୍ରୁ ଯାଉ ହେ ବହି,
ଅନ୍ୟାୟ ରହୁ ନ ସ୍ତହୁଁ ଘୃଣାରେ ମହି,
ନ ପୂରୁ ଉଦର ଅଙ୍ଗେ ନ ମିଳୁ କନା,
ତୁମରି ଗର୍ବ ନିତ୍ୟ ମୋ ଆରାଧନା । ୪ ।

ନିଃସ୍ୱ ଜୀବନ ହେଉ ଚିର ସମ୍ବଳ,
ତୁଚ୍ଛ ମାନବ-ବନ୍ଦନାରେ କି ଫଳ ?
ତବ ବନ୍ଦନା ଅନ୍ତର କରୁ ପୂତ,
ତୁଚ୍ଛର ମୋହ ଗର୍ବ ଭସ୍ମୀଭୂତ । ୫ ।

[୧୯୩୮]



## ବେଶରଚନା

ରୂପସୀ ରହସି କର ସୁବେଶ ରଚନା,
ନୟନେ ଫୁଟଇ ତବ ବିଚିତ୍ର କଳ୍ପନା !
ବିଚିତ୍ର ସ୍ୱପନ ସେ ଗୋ ବିଚିତ୍ର ରହସ୍ୟ,
ଉଚ୍ଛୁଳେ ଗୋପନେ ତହିଁ ନିତ୍ୟ ସୃଷ୍ଟି ରସ !
ଜାଣେ ନା ଭାବୁଛ ଅବା, ଗୁପ୍ତ ଅଭିସାର ,
ବାସକ ସଜ୍ଜାର ଗୀତ, ରଜନୀ ବିକାର ।
ଦେଖଇଁ ମୁଁ ବ୍ରୀଡ଼ାନତ ସେ ନୟନ ତଳେ
ପ୍ରୀତି-ସ୍ୱର୍ଣ୍ଣ-ଦୀପ ଜ୍ୱଳି ତହିଁ ପ୍ରତିପଳେ !
ମନ୍ଦିର ଅନ୍ଧାରେ ସେ ଗୋ ପରମ କଲ୍ୟାଣ,
ଅକ୍ଳେଶେ ପଡ଼ଇ ଧରା ଦିଗ୍ବିଜୟୀ ପ୍ରାଣ ।
ସକଳ ଜିଗୀଷା ଭୁଲି ନିଜେ ଦିଏ ଧରା,
ମଙ୍ଗଳର ଜୈତ୍ର ବାଣୀ ବେଶସଜ୍ଜା ପରା ?
ସାଜ ଗୋ କଲ୍ୟାଣମୟି ନୁହେ ସେ ଅଳୀକ,
ଦୂରେ ଦୀନ ବନ୍ଦୀ ଗାଏ ସୃଷ୍ଟି ମାଙ୍ଗଳିକ ।



## ପଥେ ଘାଟେ

ପଥେ ଘାଟେ କେତେ ଭରମିଲି ଏକା
ଡାକନାହଁ ସିନା ତୁମରି ଦୁଆରେ,
ପ୍ରୀତ-ବାଣୀ ସେତେ ନ ମାନିଲା ମନ
ମିଶିଲା ଗୋପନ ପ୍ରାଣ ହାହାକାରେ;
ଭରମେ ଭରମି ପାଦଗଲା ଭାଜି,
ଅଖିପାଣି ମଲା ଦେଖି ଛାୟାବାଜି,
ଦୂର ନଭ ଶଶି ପଡ଼ିଲାକି ହାତେ ?
ମିଶିଗଲା ବେଳାକାଳ-ପାରାବାରେ ।୧।

ନ ପୂରିଲା ଆଶା ନ ଶମିଲା ବ୍ୟଥା,
କେତେ କାହିଁ ବାକି ରହିଗଲା କଥା,
ସକଳ ଶୂନ୍ୟତା ଭେଦ ବାଜଉଠେ
ତୁମରି ବିରହ ଶ୍ରାବଣ ଅନ୍ଧାରେ ।୨।

ତୁମରି ବିରହ ଅଜି ସ୍ମୃତଧାର,
ଅସ ପ୍ରିୟତମ ମୋ ଘର ସୁନ୍ଦର,
ପର ପରି ଭଲ୍ କେତେ ହତାଦର;
ପର ପ୍ରୀତ ରସେ ଶମଇ କି ତୃଷା ?
ବଳଇ କି ପ୍ରୀତ ଝର ଫୁଲହାରେ । ୩ ।

---

## *ବଧୂ-ଦର୍ଶନ—

୧— ଦେଖି ଅସିଅଛ କନ୍ୟା ? ହୋଇଛୁ ପସନ୍ଦ ?
ଅବ୍ୟକ୍ତ ସେ ମୁଖପଦ୍ମ ଯେସନେ ପର୍ବଚନ୍ଦ୍ର ?
କବି ସ୍ରଷ୍ଟୁଙ୍କର ତହିଁ ତଳେ ସ୍ଥାନ ନାହିଁ ?
ପରିପୂର୍ଣ୍ଣ ଏ ଜୀବନ ଥରେ ଦେଖିଲେ ସ୍ରୁହିଁ ?
ବନ୍ଧୁଲି ଅଧରୁ ଅବା ରକ୍ତପଡ଼େ ଝରି ?
ରକ୍ତାଭ ସେ ଗଣ୍ଡେ ଯାଏ ପଲକେ ସଞ୍ଚରି—
କେତେ ନବ ଭାବ ପ୍ରୀତି ମମତା ଦ୍ୟୋତକ ?
କ୍ଷଣେ କ୍ଷଣେ ଜାଗେ ଅଙ୍ଗେ ଅପୂର୍ବ ପୁଲକ ?
ନିର୍ଜୀବ ଏ ନାରୀ ସୃଷ୍ଟି ? ନାହିଁ ବା ସ୍ପନ୍ଦନ ?
ସେ ନାରୀ ଜୀବନ ତହିଁ ଅପୂର୍ବ ସ୍ୱପନ ?
ଭାବମୟୀ ସେ ସ୍ରୁହାଣୀ, ସେ ଶିଳ୍ପ ଅତୁଳ ?
ଉଷା ଲୋକେ ଅର୍ଦ୍ଧସ୍ଫୁଟ ମୁଗ୍ଧ-ପଦ୍ମଫୁଲ ?
ପଦ୍ମ ବା କଂଣ୍ଟକ ଥରେ ଦେଖିଗଲ ଜାଣି ?
ଅଥବା ଗୋଲାପ ପ୍ରୀତି ନାଶା ହୁଏ ହାଣି ?

୨—କ୍ଷଣିକର ଦେଖା ! ଶଙ୍ଖ ହେଲ ଶରଦାସ ?
ଜାଣିଛ ତ ବନ୍ଧୁ ନୁହେ ପ୍ରୀତି-ଉପହାସ ?
କ୍ଷଣିକର ଜ୍ଞାନ ! ତହୁଁ ଏତିକ ଗରବ !
ଥିବ ଅବା ଦିବ୍ୟ ଦୃଷ୍ଟି ! ଦେଖିଛ ସରବ ?
ଦେଖିଛ ଅନ୍ତରେ ଦିବ୍ୟ ଦେବତା ମନ୍ଦିର ?
ଲଭିଛ ସେ ପୁଣ୍ୟପ୍ରଭା ରମଣୀ ସୃଷ୍ଟିର ?

ଦେଖିଛ ଗୋପନ ତାର ଅଶ୍ରୁସିକ୍ତ ପ୍ରାଣ ?
ନିତ୍ୟ ସୃଷ୍ଟି ନାଶ ଯହିଁ କରେ ସାମଗାନ ?
ଦେଖିଛ ନାଶର୍ଦ୍ଧ ଶକ୍ତ ଅପୂର୍ବ ସାହସ ?
ପୌରୁଷ ସୁନ୍ଦର ଲଭି ଯା ସ୍ନିଗ୍ଧ ପରଶ ?
ସଂଗ୍ରାମେ ଝାସିବ କାହିଁ ଅଛି ମନେ ବଳ ?
ପୌରୁଷର ଖାଦ୍ୟ ଲାଗି ଅଛି ନା କୌଶଳ ?
ଅବା ସେ ଗୋଲାପ ମ୍ଳାନ ହେବ ସୂର୍ଯ୍ୟ ତେଜେ ?
ଥାପିବାର ସାର ଦୁଗ୍ଧ ଫେନନିଭ ଶେଯେ ?

୩—ମୋ ପୀରତି କଥା ପୁଚ୍ଛ ? ନାହିଁ ଶୁଣା ଜଣା,
କାଳସ୍ରୋତେ ଭେଟ ହେଲା ଅଜ୍ଞାତ ଲଳନା,
ଅର୍ଦ୍ଧ ସ୍ଫୁଟ ସ୍ରୋତ-ଫୁଲ୍ କରେ ନେଲି ତୋଳି,
ବର୍ଷ ଅନ୍ତେ ଭାବରେ ମୁଁ ନ ପାରିଲି ଖୋଲି ।
ତାରୁଣ୍ୟ-ଉଦ୍‌ବେଗ-ବ୍ୟଥା ଦେଲା ନାହିଁ କହୁ
ଅନବଦ୍ୟ ବ୍ରୀଡ଼ା ଦେଖି ଗାନ୍ଧ ହେଲା ଦହୁ !
କରିଛି ସହସ୍ରାଘାତ, ବୁଝିନି ସେ ଅର୍ଥ,
ଅନ୍ନ ପରକାଶ ଲାଗି ଶର ଅସମର୍ଥ !
ନ ବୁଝି ମୋ ନିଷ୍ଠୁରତା ସଜଳ ଲୋଚନ,
ଶିଶୁସମ କରିଛି ସେ ଅସ୍ମସମର୍ପଣ ।
ପରଚାସ୍ତୁ ହେଲା ସେବେ ଶେଷ ମଧୁକାଳ !
ନିଃଶେଷ ତାରୁଣ୍ୟ ଦୀପ୍ତି, ସେ ନର-କଙ୍କାଳ !
ନୁହେ ସେ ଗୋଲାପ, ତେଣୁ ଦେଇ ନାହିଁ ପୀଡ଼ା,
ସକଳ ବିସ୍ମୃତ ମେଳେ ଜୀବନ୍ତ ତା ବ୍ରୀଡ଼ା !

୪—ସହସ୍ର କଳ୍ପନା ମୋହ କରନ୍ତି ସୃଷ୍ଟି,
ତାରୁଣ୍ୟ ବାସନା ପଦେ ହୋଇଛୁ ତା ଚୂର୍ଣ୍ଣ ।
ବୁଝିନି ତା ଅର୍ଥ ସେହୁ ନବୋଧ ବାଳକା,
ମନେ ହସେ ! କେବେ ବସ୍ତ୍ର ଦେଖି ଝଲ୍ମଷିକା !
ଡାକିଲେ ସୋହାଗେ ଥରେ ଏକାନ୍ତେ ରହସି,
"କି ଅବା ଗୁପତ କଥା ?" ତୁଚ୍ଛେ ଯାଏ ହସି ।
ଭଲଅଛୁ ଯେତେଥର କରିବ ମୁଁ ତ୍ୟାଗ,
ଦୃଢ଼ତର କରି ବାନ୍ଧେ ତାର ଅନୁରାଗ ।
ଜୀବନ ସଂଗ୍ରାମେ ଯହିଁ ନ ପାରେଁ ଭରସି,
ଅମୋଘ ଝଙ୍କମ ଦମ୍ଭେ ଢାଲ ଧାଏ କଷି ।
ବ୍ୟର୍ଥତାର ଅବସାଦେ ପଡ଼ିଲେ ମୁଁ ଲସି,
କ୍ଷୀଣ ନେତ୍ର ମ୍ଳାନ ଓଷ୍ଠାଧାରେ ଯାଏ ହସି ।
ଭାଳେଁ ଯହିଁ ଶୂନ୍ୟପାତ୍ର, ରକ୍ତ ମାଂସ କ୍ଷୟ—
କ୍ଷୁଣ୍ଣ ଦୀପ୍ତି, ତହିଁ ପ୍ରୀତିପୂର୍ଣ୍ଣ ପରିଚୟ !
ତ୍ୟାଗ କରେ ଯେଉଁ କର ଟାଣି ଶିଳା ପର
ଜଡ଼ିବେଁ ସଂସାରମରୁ ଦୃଢ଼େ ତାକୁ ଧରି ।
ମଳିନ ତାରୁଣ୍ୟ ମୋହ, ବଢ଼ଇ ବୟସ;
ଦୃଢ଼ତର ମାତ୍ର ପ୍ରୀତି ଦୁର୍ବୋଧ ରହସ୍ୟ !

[୧୯୩୮]



* କୌଣସି ବନ୍ଧୁଙ୍କ ବିବାହୋପଲକ୍ଷେ

## ମାଟିର ଉପହାସ

ତୋଳୁଥିଲି ବାସ ତାଳ ସକଳ ନୈପୁଣ୍ୟ,
ପଡ଼ିନାହିଁ ଛାତ, ଜମା ପାଶେ ଇଟା ଚୂନ;
କେତେ ସୁଖ କଳପନା ଯାଉଥିଲି ଗଣି
କାହିଁ ଉପବନ, କାହିଁ ସ୍ଥାପିବ ଧରଣୀ ।
ଉଜ୍ଜ୍ୱଳ ଦଶିବ ପୁର ପ୍ରିୟା-କାଶ-ହାସେ,
ଅପୂର୍ବ ଆନନ୍ଦ ପୁଣି ଶିଶୁକଣ୍ଠ ଭାଷେ;
ମାଟିରେ ଉଠିବ ଗଢ଼ି ସ୍ୱର୍ଣ୍ଣ ସିହାସନ,
ମାଟିର କୁଟୀର ହେବ ଦେବତା-ଭବନ !
ତାଳି ତାର ମନ ପ୍ରାଣ ଅପୂର୍ବ କୌଶଳ,
ଭାଳିଥିଲି ଫୁଟାଇବ ମରୁରେ କମଳ,
ଶେଷ ହେଲି କ୍ଷଣେ ସବୁ ତା ଫିକର ଫନ୍ଦ,
ଆସିଲି ସେପାରୁ ଡାକ ! କ୍ଷଣେ ହେଲି ଧନ୍ଦ—
ଶିଶୁ ସମ ! ଇଟା ଚୂନ ହସେ ଅନ୍ଧକାରେ !
ଶୁଭେ "ରାମ ନାମ ସତ୍ୟ" ନିର୍ଜନ ନିଶାରେ ।



## *ଜନ୍ମ-ସମସ୍ୟା

ଯୁଗଳ ଛବ ବଦ୍ୟା-ଅର୍ଥୀ ଦୂର ପଶ୍ଚିମ ଯାତ୍ରୀ !
ବାଷ୍ପୀୟ ପୋତେ ତୃତୀୟ ଶ୍ରେଣୀରେ ସ୍ୱଳ୍ପ ଆସନ ପାତ,
କଟାଇ ଦେଲେଣି ସିନ୍ଧୁ ବକ୍ଷେ ସାତୋଟି ରଜନୀ ଦିବା,
ବାହାର ନିଗମ ଅନ୍ଧାର ପଥ ଭବିଷ୍ୟ କାହିଁ କିବା—

* ଡାକ୍ତର ମାୟାଧର ମାନସିଂହଙ୍କର ବିଲାତ ଭ୍ରମଣକାହାଣୀ ପଠନାନ୍ତର ।

କେହ୍ନ ନ ଜାଣଇ ଅଭ୍ୟନ୍ତରେ ବେନି ଜନ ଅଣା ଭଡ଼,
ସେଥିଲାଗି ଶତ ଯାତ୍ରାର ପୀଡ଼ା ବେନି ଜନ ଅଟେ ତୁଚ୍ଛ ।
ତୃତୀୟ ଶ୍ରେଣୀର ଯାତ୍ରୀ ବେଦନା ଅସହ୍ୟ ବେନି ଅଙ୍ଗେ,
ସହଯାତ୍ରୀ ସ୍ୱେ ପୁଚ୍ଛେ ବନ୍ଧୁକୁ ଯୌବନ-ରସ-ରଙ୍ଗେ;—
"ଦରିଦ୍ର ମୁହିଁ ବରିଷ୍ଟୁ ଏ ଦଶା, ନାହିଁ ମୋ ଉପାୟ ଅନ୍ୟ,
ତୁମେ କାହିଁପାଇଁ ସହୁଛ ନର୍କେ ସମ୍ପଦ ଏତେ ଥାଉଁ ?
ଧନିକର ସୁତ ସୁଖର ଦାୟାଦ ସ୍ୱେଚ୍ଛାରେ ବର ଦୈନ୍ୟ ?
ନିଶ୍ଚୃତ ନାହିଁ ଦେବେ ତଳେ ଏଥି ବର୍ବରତାର ସୈନ୍ୟ *।"
"ଜାଣନା ବନ୍ଧୁ।" ଉତ୍ତରେ ଅନ "ଅଭିଜାତ ଛବି ତଳେ,
ଜୀବନ ଦୈନ୍ୟ କରୁଣ-କାହାଣୀ-ମନ୍ଦ-ପ୍ରଦୀପ ଜଳେ !
ଜାଣନା ବରିଷ୍ଟୁ ସ୍ୱେଚ୍ଛାରେ କାହିଁ ନିୟତିର ଉପହାସ
ଦୈନ୍ୟର ବ୍ରତ ବହିଷ୍ଟୁ ସୁଖେ ମୁଁ, ଶୁଣ ମୋର ଇତିହାସ ।"

—୨—

"ତକ୍ଷଶୀଳାର ଅଧିବାସୀ ଅମେ ଚୌଦ ଭଗିନୀ ଭ୍ରାଇ
ଜନକ ଜନନୀ ସହାୟ ଅମର ଅଗପଛ କେହ୍ନ ନାହିଁ ।
ରୁଗ୍ଣା ଜନନୀ, ବୃଦ୍ଧ ପିତା, ବୃତ୍ତି ଅଧ୍ୟାପନା,
ସ୍ୱଳ୍ପ ବେତନ ମିଳେ ଯା ମାତର ଅଯୁରେ ନୁହେ ସେ ଗଣା ।
ଅକାଳରେ ପୁଣି ବୃନ୍ତଚ୍ୟୁତ ଚୌଦରୁ ତିନି ଜଣ
ରହିଗଲୁଁ ବାକି ଯେତେ ଜଣ ସାର ନିଯୁତ ସହିତେ ରଣ ।
ବୃଦ୍ଧ ବୟସେ କରନ୍ତି ପିତା କ୍ଲାନ୍ତିବିହୀନ ଶ୍ରମ,
ଅମରି ସୁଖର ଚିନ୍ତାରେ ସେ ଯେ ନିତ୍ୟ ଗଳଦ୍‌ଘର୍ମ ।
ରୁଗ୍ଣା ଜନନୀ ଅମ ଚିନ୍ତାରେ ଦିନୁ ଦିନ କ୍ଷୀଣତର
ଦିନେ ତାଙ୍କରି ଯତ୍ନ ଚେଷ୍ଟା ଜାଣିନାହିଁ ଅବସର ।

* ସାଧାରଣ ନୌଯାତ୍ରୀ ଦଳ ।

ଅଗ୍ରଜ ମୁହିଁ ସନ୍ତାନ ଗଣେ, ହେଲୁ ଦିନୁ ମୋର ଜ୍ଞାନ—
ଏକଇ ପ୍ରଶ୍ନ ନିତ୍ୟ ଦିବସ ବ୍ୟାକୁଳ କରିଛି ପ୍ରାଣ ।
କି ଲାଭ ଯତ୍ନେ ବ୍ୟର୍ଥ ପ୍ରୟାସେ ମିଳେ କାହିଁ ଅମୃତ—
ଇଚ୍ଛାରେ ଗଳେ ଲଗାଇଲେ ଫାଶି ଦୈନ୍ୟ ସ୍ୱେଚ୍ଛାକୃତ ?
ପିତା ହେଉ ଅବା ନମସ୍ୟ ଗୁରୁ, ଅମୂକୃତ ଯେ ପାପ—
ବିଫଳ ତା ଲାଗି ସମ ଅନୁଭୂତ ବ୍ୟର୍ଥ ମନର ତାପ ।
ଦୁର୍ବହ ଏଇ ସଂସାର ଭାର ବହିଲେ ଯେ ପିତା ଜାଣି
ଅବିବେଚନାର ଫଳ ଭୋଗୁଁ ଆମେ ନିସ୍ପୃହ ଚୌଦ ପ୍ରାଣୀ।
କେବେ ଦିନେ ଦିନେ ଅସହ୍ୟ ହେଲେ ଦୈନ୍ୟ ଅଭାବ ପୀଡ଼ା,
ମୁକ୍ତ କଣ୍ଠେ କହୁଛି ପିଅରେ ଦଳି ମୁଁ ବିନୟ ବ୍ରୀଡ଼ା—
ବେଳସୁଁ ଉପାୟ ଖୋଜନାହିଁ ତୁମେ ଖଟାଇ ଆପଣା ବୁଦ୍ଧି
ନଦୀ ସ୍ରୋତ ପରି ବଂଶ ସହିତେ ଦୈନ୍ୟର ଜ୍ୱାଳା ବୃଦ୍ଧି !
ଥରେ ନୁହେଁ ବାବୁ ତିନି ଥର ଜାଣି କରିଅଛୁ ଦୋଷାରୋପ,
ଦେଖିନି ମାତ୍ର ଜନକ ଜନନୀ ନୟନ କୋଣରେ କୋପ ।
ଅଜ୍ଞାନେ ଦିନେ କହିଲି "ଦିଅନା ଅଝୁରି କେତୋଟି ମାରି
କିବା ପୌରୁଷ ମିଳଇ ଏସନ ହଲାହଲେ ନିତ ଘାରି !"
ସେଦିନ ଦେଖିଛି ଲଜ୍ଜିତ ପିତା ଅବନତ କଲେ ଶିର,
ଅନୁତାପାନଳେ ତୀବ୍ର ଦଗ୍ଧ ମାତର ଶାନ୍ତ ଗିର ।
କହିଲେ "ବାବୁ ମୋ ମନ୍ଦଭାଗ୍ୟ ଦୁନିଆରେ ଆଉ କାହିଁ ?
ଆପଣାର ମୋର ଦୁଷ୍କୃତ ଲାଗି ଆଉ କିଏ ହେବ ଦାୟୀ ?
ଇଚ୍ଛା କରିନି ଚୌଦକୁ କେବେଁ, ଲୋଡ଼ିଥିଲି ତିନି ସ୍ତୁର;
ସ୍ତବକୁ ଚୌଦ ଭଲ ନେକ କାହିଁକି ନ ପାରିଲି ଥରେ ବାରି ।
ଖଟାଇଛୁ ସବୁ ବୁଦ୍ଧି ପ୍ରଜ୍ଞା ପରାହତ ହେଲା ଜ୍ଞାନ,
ଏକଇ ସତ୍ୟ ହୋଇଛି ପ୍ରତୀତ ସୁନ୍ଦରତମ ପ୍ରାଣ !"

—୨୮୦

ସୁନ୍ଦର ମୋର ଚୌଦ କଳିକା ! କେଉଁଣେ ଗଲେ ତନ୍ନ ଅହା ?
ସେହୁ ଶୂନ୍ୟତା ପୂରାଇବ କିଏ ? ସହାୟ ସେ ରଜ-ବାହା !
କରିଛି ତ କେତେ ପ୍ରାୟଶ୍ଚିତ୍ତ ! ପେଷିଛୁ ଶମନ ପୁରେ,
ତନୋଟି ପ୍ରାଣର କମଳ କଳିକା ! ପୁଣ୍ଡୁଅଛୁ ମୁଁ ଅନ୍ତୁରେ !
ଅଭେଦ୍ୟ କ୍ରୂର ନିୟତିର ଦ୍ୱାରେ ପାଇ ନାହିଁ ଉତ୍ତର,
ଦେଲ ଅଜ ବାବୁ ତୋତେ ସ୍ୱାଧୀନତା
ଇଚ୍ଛା ତୋ ଯାହା କର ।
ଇଚ୍ଛା ଯାହାକୁ ଦିଅ ଅଜ ବଳି ମିଶାଇ ଏ ବେନି ପ୍ରାଣୀ !
ଉପାୟ ନ ଦିଶେ !” ରୁଦ୍ଧ କଣ୍ଠ ! ନୟନୁ ଝରଇ ପାଣି !
ହକିଲ ସକଳ ତରୁଣି ଦମ୍ପ ଗୁହିଁ ସେ ଅହତ ମୁଖ,
କରୁଣି ନୟନ ସ୍ପରିଲେ ବନ୍ଧୁ ତୁଚ୍ଛ ସକଳ ଦୁଖ ।
ସୃଷ୍ଟିରେ ମୋର କିବା ପ୍ରୟୋଜନ-ପ୍ରୟୋଜନ କିବା କାର
ବୁଝିଲି ସେ ଦିନ ବନ୍ଧୁ ପ୍ରଶ୍ନେ ନାହିଁ ମୋର ଅଧିକାର ।
ପିତା ନୁହେଁ ମୁହିଁ ! ସେ ଦିନୁ ବରିଲି ପିତାର-ଅମ୍ନ-ଦାନ,
ସୃଷ୍ଟିର ଲାଗି କୃଚ୍ଛ୍ର ସାଧନ ଦୀପ୍ତ କଲା ମୋ ଜ୍ଞାନ ।
ସିନ୍ଧୁ ବକ୍ଷ ଅନ୍ଧାରପରି ଚିର ରହସ୍ୟମୟ,
କ୍ଷୁଦ୍ର ଜୀବନ ! ମାତର ବନ୍ଧୁ ମୃତ୍ୟୁକୁ କରେ ଜୟ !
ତୁଚ୍ଛ ତାଠାରୁ ସ୍ୱାର୍ଥ ଅଶ୍ରୁ, ତୁଚ୍ଛ ଶତ ସମସ୍ୟା,
ଜୀବନର ସ୍ରୋତେ ଭସାଇ ପାରିଲେ
ଅଜ କି ଦୈନ୍ୟ ଦଶା ?”



## *ବନ୍ଦୀ-ବୀର—

ଯୁଝିଛ ଜନମ ଭୂମି ମାନ ରକ୍ଷା ଲାଗି
ଅକ୍ଳାନ୍ତ ପରାଣେ, ସ୍ମୃତି ରହୁଥିବ ଜାଗି !
ଏ ଧରାର ନିପୀଡ଼ିତ ପଦାନତ ବନ୍ଦି
ଶିଖିବେ ତୁମଠୁଁ ବୀର ମରଣ ଆନନ୍ଦ ।
କାହିଁକି କୁଞ୍ଚିତ ଭୂରୁ ? ମୁଖ ଅବସନ୍ନ ?
ବେଦନାର ଛାୟାପାତ ? ସମ୍ମୁଖେ ମରଣ ?
ପଛେ ପୁଣି ମୃତ୍ୟୁ ସେନା ହସଇ ବିକଟ ?
ସମ୍ମୁଖେ ସେ ବଧ ଭୂମି ଅତି ସନ୍ନିକଟ ?
ତହିଁ ତବ ମର ଦେହ ହେବ ଦ୍ୱିଖଣ୍ଡିତ,—
ମିଶିବ ମାଟିରେ ? ସେଥିଲାଗି ସଙ୍କୁଚିତ ?
ଭାଳୁଥିଲ ଅବା ଯୁଦ୍ଧେ ମାରି ଅଗଣନ,
ବରିଥାନ୍ତ ହସି ହସି ବୀରର ମରଣ ?
ବୀରର ମରଣ ନିତ୍ୟ ବୀର କରେ ଦାବି
ମାତ୍ର କାଳହସ୍ତେ ଗୁପ୍ତ ନରଭାଗ୍ୟ ଚାବି ।
ଜାଣେ ସେ ଉତ୍ତ୍ୟକ୍ତ ପ୍ରାଣ ଶୋଣିତ ତୃଷିତ
ଦେଖି ନର ନିଷ୍ପେଷଣ ବିକ୍ଷୁବ୍ଧ ବ୍ୟଥିତ ।
ସଭ୍ୟତାର ଅଭ୍ୟାନ୍ତର ଦୁର୍ନୀତିର ପୀଡ଼ା
କ୍ଷୁବ୍ଧ ଦେଖି ଦୈବ ତୁମେ ଦାନବର କ୍ରୀଡ଼ା !

* ଅବିସିନିଆର ସେନାଧ୍ୟକ୍ଷ ରାସ୍ ଦେସ୍ତା । ସେ ଗତ ଇଟାଲି-ଅବିସିନିଆ ଯୁଦ୍ଧରେ ପରାସ୍ତ ହୋଇଥିଲେ । ପରେ ବନ୍ଦୀ ହୋଇ ଶତ୍ରୁ ହସ୍ତରେ ହତ ହୋଇଥିଲେ ।

—ମ'

ନ ପୂରୁଁ ପିପାସା ଅପେ ପଞ୍ଚଗଲ୍ପ ଧର୍ମ,
ଶସ୍ତ୍ର ହସ୍ତେ ତୁମ ପ୍ରାଣ ସମାଧାନ ପର୍ବ ?
ଯୁଝିଛ ଅକ୍ଲାନ୍ତ ମଦେ ! ସେତକ ଅଶ୍ୱାସ !
ଅନ୍ୟାୟ୍ୟ ମିଥ୍ୟାର ଛଳେ ହୋଇନାହିଁ ଦାସ !
ରହିଅଛୁ ତବ ଜନ୍ମଭୂମି ଝାଣ ମାନ,
ବିଫଳତା ଲଗି ଦୁଷ୍ଟ ଦେବତା ବିଧାନ ।
ମରଣର ଯାତ୍ରୀ ତୁମେ ନାହିଁ କାଳ ପାଶ,
ବୀରତ୍ୱେ ନୁହଇ ମରଣର ଛାୟାପାତ,
ତୁଅ ବୀର ନିର୍ବିକାର ନୁହ ଅଜ କ୍ଷୁଣ୍ଣ;
ଅସୁଛନ୍ତ କୋଟି ସେନା କରିବାକୁ ପୂର୍ଣ୍ଣ—
ଅପୂର୍ଣ୍ଣ ରହିଲ ଯାହା, ଜଳବ ଅନଳ,
ଭସ୍ମ ହେବ ଦିବ୍ୟ ଭୂମେ ମାନବ ଗରଳ !
ସଂଗ୍ରାମର ଅନ୍ତେ ହେଉ ଅଟଳ ବିଶ୍ୱାସ
ସକଳ ପ୍ରପଞ୍ଚ ମେଳେ ଦେବତ୍ୱ ପ୍ରକାଶ ।
ଯାଅ ଦୈବ ସେନା, ଯାଅ ପରମ ନିର୍ଭୀକ,
ତୁମରି ବିଜୟ-ହାସ୍ୟ ବିଜୟୀ ସୈନିକ—
ଦେଖି ହେଉ ସଙ୍କୁଚିତ ! କାଳର ପୂଜାର
ସକଳ ବିକୃତ କରି ଦିଏ ପରିଷ୍କାର ।
ଜାଣେ ନା ଯେ ତୁମ ଭଳି ବୀରର ସମ୍ମାନ
ଚିର ପରାକାନ୍ତ ହେଲେ ବର୍ବର ସମାନ !
ବର୍ବରର ସତ୍ୟ ଧର୍ମ ନୁହେଁ କେବେ ବୁଝା,
ମହାକାଳ ଧର୍ମ ନାମେ ବର୍ବରତା ପୂଜା !

[ ୧୯୩୭



୨୧୩—

## *କୌଣସି ପ୍ରଣୟିନୀଙ୍କ ଉଦ୍ଦେଶ୍ୟରେ

—୧—

ପତଙ୍ଗ ପରଶେ ଫୁଲ୍ ପଡ଼ିବ ତ ଝଡ଼ି,
ଝଡ଼ିବ ଶ୍ୟାମଳ ପତ୍ର ! ପାରିବ କି ଧରି ?
ବିବିଧ ରଞ୍ଜନ ସ୍ପୃହା ବିଫଳ ପ୍ରୟାସ,
ଚିତ୍ରକଳା ଶିଳ୍ପେ କରେ କାଳ ଉପହାସ !
କୁସୁମର ଶେଷ ଦଶା ନ ପାରିବ ଦେଖି,
ତେଣୁ ବାସ୍ତବତା ସତ୍ୟ ଯାଉଛ ଉପେକ୍ଷି ?
ଆପଣା ଅଜ୍ଞତା-ମୋହେ ପିନ୍ଧ ରୂପତୁଳି,
କେତେଦିନ ଜରା ମୃତ୍ୟୁ ନେବେ ଦେବ ଧୂଳି ?
ଶୁଣୁ ନ ଅଦୂରେ ଶୁଭେ କାଳ ଆଗମନୀ ?
କାଚ ହେବ କାଚ ଅଙ୍କ ଦଶଇ ଯା ମଣି ।
କରଗ୍ରାହିଥାନ୍ତ ମଣି ! କାହିଁ ସେ ପୌରୁଷ ?
ଭଲକୁ କରୁଛ ହେଲ, ସତ୍ୟ ବିଷଦୃଶ !
ଯେ ମରଣେ କର ଭୟ ତହିଁ ମ୍ରିୟମାଣ,
ତେବେ ଶିଳ୍ପୀ ହେବ ଲଭ ଅମୃତ ସନ୍ଧାନ !

—୨—

ଝରିଲେ କୁସୁମ ତାର ରୂପ ସଉରଭ—
ଲାଗି ରହେ ଶବ୍ଦ ପଟେ, ତାର ଅନୁଭବ—
ନିର୍ଜନ ନିଶାରେ ପ୍ରାଣ କରଇ ଅକୁଳ,
ମରିଥାଇ କାହିଁ ଉଠେ ସେ ଅତୁଳ ଫୁଲ୍ !

* ଅନ୍ତରଙ୍ଗ ବନ୍ଧୁଙ୍କୁ ଲିଖିତ ଭାଷାନ୍ତରିତ ପତ୍ର ।

ତେସନେ ପ୍ରୀତରୁ ବନ୍ଧୁ ସୁଧା ପାର ଛନି ?
ପ୍ରୀତବନ୍ୟା ତୁମ ଲଗି ବହିବ ଉଜାଣି !
ଯଉବନ ଗଲେ ଜରା ହେବ ଯଉବନ,
ତୁମ ପ୍ରୀତି ଶୁଷ୍କ କାଷ୍ଠ ଅଥବା ଚନ୍ଦନ —
ପଡ଼ିବ ସେ ଧନ ଧରା ! କାହିଁ ପାଇଁ ଡର ?
ପାଷାଣରେ ହେଲେ ଘଷି ପୀରତି ସୁନ୍ଦର !
କାଠକୁ କରୁଛ ଯତ୍ନ, ଦେଖି ନ ଚନ୍ଦନ !
"ଗନ୍ଧ ଗନ୍ଧ ରୂପ" ବୋଲି ହୃଦୟ ସ୍ପନ୍ଦନ —
ଧବସେ ସହସ୍ରଥର । କର ଅତି ଯତ୍ନ !
ବଢ଼ିଯାଏ ଅଶ୍ବଳତା, ନାହିଁ ମିଳେ ରତ୍ନ !

— ୩ —

ଝଡ଼ିବାର ଯାହା ଝଡ଼ୁ ! କାହିଁକି ଅକୁଳ ?
ପୁଣି ଶୂନ୍ୟ ବୃନ୍ତଟିରେ ପରିପୂର୍ଣ୍ଣ ଫୁଲ !
ଗଲେ ପୁରାତନ ନବୀନର ଆଗମନ,
ସବୁ ବିବର୍ତ୍ତନ ମେଳେ ବିକଶେ ଜୀବନ !
ହସନ୍ତ ଦେବତା, ଆଜ କିବା ଭ୍ରାନ୍ତିଭୟ ?
ଆବର୍ତ୍ତନେ ବିବର୍ତ୍ତନେ ଜୀବନର ଜୟ !
ଜୀବନ ଅମୃତ ରୂପ ପୀରତି ବିକାଶ
ମୃତ୍ୟୁ ପୋଛି ଦେଲେ ସବୁ ରହେ ପ୍ରୀତି-ହାସ !
ସେ ରୂପ ଲୋଡ଼ିବ ନାହିଁ ଶୃଙ୍ଗାର ରଚନା,
ସୌର ତାପେ ନବଭ୍ରେବ ତା ପ୍ରୀତି ମୂର୍ଚ୍ଛନା;
ଜାଣେନା ଆଶଙ୍କା, ଭୀତି, ରଖିବା ଗୋପନ,
ଶତ ଘୂର୍ଣ୍ଣି ଝଞ୍ଜା ଜାଣି କରଇ ବରଣ ।

ବଢେ ଶତ ନିଷ୍ଠୁରତା, ଖସଇ କ୍ଷୁଦ୍ରତା,
ରହୁଥାଏ ଅଗ୍ନିଦାହ୍ମ ପୀରତ ମମତା ।

—୪—

ସେ ପ୍ରୀତ ସେ ରୂପ ଛାୟା ଜୀବନର ସାର
ଅନ ଯେତେ ରୂପ ଅଭ୍ର ଖାଲି ହାହାକାର ।
ଭାବୁଛ ଜୀବନ ରସ ପିଇବ ନିଗାଡ଼ି ?
ଜଗତରେ ଯୌବନ ସୃଷ୍ଟି ? ମୃତ୍ୟୁ ମୁଖେ କାଳ ?
ସହଇ କି କାଳ ଏତେ ଆତ୍ମ-ପ୍ରବଞ୍ଚନା ?
ଲତାକୁଞ୍ଜ ଅନ୍ତରାଳେ ଶୃଙ୍ଗାର ରଚନା—
ଲୁପ୍ତ ହେବ ଦିନେ ! ବନ୍ଧୁ ଆସିଲେ ବରଷା !
ଭୁଲିଛ ସେ ଦିନ କିବା ପ୍ରାଣର ଭରସା ?
ପୀରତ ଲଭିବ ସିଦ୍ଧା, ଭୋଗେ ଅକ୍ଷମତା,
ମୃତ୍ୟୁ ତହୁଁ ଶତଗୁଣ ବାଧିବ ସେ ବ୍ୟଥା ।
ଝରିପଡ଼ୁ ଫୁଲ ! ନଦୀ ବହି ଯାଉ ଦୂରେ !
ଭାଙ୍ଗୁ ଭୋଗ ସଂକୀର୍ଣ୍ଣତା ! କୋଟି ପଲ୍ଲୀପୁରେ—
ଉଚ୍ଛୁଳୁ ଆନନ୍ଦ ଗାନ । କ୍ଷୀଣ ସେ ରୂପସୀ—
କୋଟିରୂପେ ତା ମାଧୁର୍ଯ୍ୟ ଉଠୁନା ବିକଶି ।
ଭୟ କିବା ? ରୂପ ଅଭ୍ର ଯେବେ ତାର କ୍ଷୀଣ,
ଅକାଳେ ମରଣେ ପ୍ରୀତ ଲଭିବ ବନ୍ଧନ ।

[ ୧୯୩୮ ]



# ନରଦେବତା

୧—ଶୁଣିଲି ମୁଁ ଅଧୁନିକ ନରପତି ଜଣେ
ଏ ଭାରତ ଭୂମେ—ନୁହେଁ ପ୍ରତେ—ସ୍ୱପ୍ନ ମଣେଁ !—
ଆପଣାର ରାଜ୍ୟେ ଶୁଣି ଦୁର୍ଭିକ୍ଷ ଅସହ୍ୟ—
ତେଜିଛନ୍ତି ସ୍ୱେଚ୍ଛାକ୍ରମେ ବେଳାଏ ଅଶନ ।
ରାଜଭୂଷା ବ୍ୟସନରେ ଦେଇ ଜଳାଞ୍ଜଳି,
କରୁଛନ୍ତି ଆରାଧନା ଦନ୍ତେ ତୃଣ ଧରି—
ଦୁଃସ୍ଥ ପ୍ରଜାବର୍ଗ ଲାଗି; ସ୍ମରି ଅମଙ୍ଗଳ—
ନୟନୁଁ ଝରଇ ଅଶ୍ରୁଧାର ଅବିରଳ !
ଭାଳି ଦାନ-ଧୈର୍ଯ୍ୟ ମୋର ହୃଦଇ ସମ୍ଭାଳି
ଦେବତ୍ୱର ମୋହାବେଶ ଆପେ ଉଠେ ଜଳି ।
ଯେ ଦେଶେ ଏସନ ରାଜା ଚିର ଅକପଟ
ସେ ଦେଶେ ମରଣ ସିନା ମଧୁର ସ୍ୱପନ ?
ଯେ ଦେଶେ ଏସନ ନର-ଦେବତା ମୂରତି
କି ଭୟ ଭାବନା କିସ କରିବ ଦୁର୍ଗତି ?
୨—ଧିକ୍ କି ସେହୁ ରାଜା ଯାର ପରଜା ଅଶେଷ,
ପ୍ରାଣ ସନମାନ ଲାଗି ଯାନ୍ତି ପରଦେଶ ।
ପର ରାଜ୍ୟେ ପଥେ ଘାଟେ କରନ୍ତି ଶୟନ,
ଚିର ଭିକ୍ଷା-ଅଶୀ ଶୂନ୍ୟ ଅଶନ ବସନ,
ଶ୍ୱାନ ଶିବା ସମ ପଥେ ଲଭନ୍ତି ମରଣ,
ଛାଡ଼ି ନିଜ ବସବାସ ପ୍ରବାସ ବରଣି,
ବହନ୍ତି ଅକ୍ଲେଶେ ଶୀତ-ବରଷା-କଷଣି,
ରାଜ-ପୀଡ଼ା ଦୁର୍ନୀତିରୁ ନୁହେ ଯା ଦୂଷଣ ।

ସେ ନର-ପିଶାଚ ତାର ଜନମକୁ ଧିକ,
ଚିର ଭ୍ରାନ୍ତ ତାର ସୁଖ-କଳ୍ପନା ଅଳୀକ ।
ଜାଣି ସେ ବଢ଼ାଏ ଆତ୍ମ-ଅପମାନ-ତାପ
ତା ନାମ ଧରିବା ତୁଣ୍ଡେ ଭଲେ ପ୍ରାଣୀ ପାପ ।
ପାପଗ୍ରହ ବୋଲି ଅପସୃତ ଘୃଣୀ ଜ୍ଞାନୀ
ଜଇଁ ଥାଇ ମରେ ସେହୁ ପାରେ ନାହିଁ ଜାଣି ।

—୦—

ଏ ଭାରତେ କାଲେ ରାଜା—କହେ ଇତିବୃତ୍ତ—
ବିପନ୍ନ ମାନବ ଲଗି ପରମ ଅମୃତ—
ଅଣିବା ଆଶାରେ ତେଜି ଗଲେ ରାଜଗାଦି,
ହୃଦୟଶୋଣିତ ଦାନେ ହେଲେ ସର୍ବତ୍ୟାଗୀ,
ଛେଦଦେଲେ ସ୍ୱହସ୍ତେ ପ୍ରଜା ଲଗି ହୃଦପ୍ରୀତ,
ବରିଲେ ସନ୍ନ୍ୟାସ ! କାଳ ଯାଇଅଛି ବିତ !
ପୁଣ୍ୟଶ୍ଲୋକ ରାଜନ୍ୟଙ୍କ ତୁମେ ବଂଶଧର,
ମରୁଦ୍ୟାନ ଫୁଲ ସମ ଦିଶୁଛ ସୁନ୍ଦର ।
ସେ ଆଦର୍ଶ ଆଜି ଢାଳେ ଅଙ୍ଗାର-ମାଣିକ୍ୟ,
ରକ୍ଷକର ମୀତ ଯହିଁ ସ୍ୱାର୍ଥ ଅରକ୍ଷିକ,
ଶ୍ୱାପଦ-ବୁଭୁକ୍ଷା ଜଳେ ଶତ ରାଜ-ପ୍ରାଣେ !
ପରଜା ଦୁର୍ଗତି ଶୁଣୁଛି କେ ଅବଧାନେ !
ନ ଖାଇ ମରିନ୍ତି ରାଜା, ମରିଛି ଅଖାଦ୍ୟେ
ନମସ୍ୟ ଅମୃତ-ରାଜ୍ୟ ଭୋଗ ନିର୍ବିବାଦେ ।



## ତରୁଣ-ଶକ୍ତି

କାହିଁ ଉଚ୍ଚ ଅଭିଳାଷ, କାହିଁ ଉଚ୍ଚ ଶିର,
କାହୁଁ ସତ୍ୟ-ପ୍ରୀତି, ନିଷ୍ଠା ଅଟଳ ସେ ଚିର !
କାହିଁ ସେ ପୌରୁଷ, ବୀର୍ଯ୍ୟ, ବଳିଷ୍ଠ ସାହସ,
ଅଟଳ ବିଶ୍ୱାସ ପର୍ବତତା ଅଦରଶ !
କାହିଁ ସେହି ସୌମ୍ୟ ମୁଖ ପ୍ରଶାନ୍ତ ସହାସ,
ନୈତିକତା ଜାଣେ ନାହିଁ ଯାର ଅବକାଶ !
କାହିଁ ସେ ସୁନ୍ଦର ଚିର ପବିତ୍ର ତାରୁଣ୍ୟ,
ନିଃସ୍ୱସେବା ବିନୟ ଯା' ଜୀବନ-ନୈପୁଣ୍ୟ !
ହୀନବୀର୍ଯ୍ୟ, ଅସ୍ଖାଳନ, ଘୃଣ୍ୟ ବାମାଚାର,
ଅସଂଯତ ପ୍ରଗଲ୍‌ଭତା ମିଥ୍ୟା ଅଜ୍ଞ ସାର ।
ପ୍ରାଣହୀନ ଏ ତାରୁଣ୍ୟ ଅନ୍ତଃସାରଶୂନ୍ୟ,
କ୍ଲୀବତ୍ୱ ଆଦର୍ଶ ଯାର, ନୈତିକତା ଘୃଣ୍ୟ !
ଅନାଗତ ଇତିହାସ ଦୁର୍ବଳ ଜାତିର—
ନିରେଖି ବେଦନା-ଲାଜେ ନତ ହୁଏ ଶିର ।

[୧୯୩୭]



## *ଶୃଗାଳତନ୍ତ୍ର

କାଟୁଛ ଲାଙ୍ଗୁଳ ଦଳେ ? କରୁନାହିଁ ମନା;
ସଭିଙ୍କର ଚିପ ଗଲା ସେତିକ ଭାବନା !
ଦଳ-ବଳ ଅଛୁ ବୋଲି ଶୋଭେ କି ଉଗ୍ରତା ?
ସ୍ପୃହଣୀୟ ଅଟଇ କି ଅସହାୟ-ବ୍ୟଥା ?

* ଦଳଗତ ଦଳାଦଳିକୁ ଲକ୍ଷ୍ୟ କରି ।

ଅନ୍ନ ସ୍ୱାଧୀନତା ଯେବେ କର ଏଡ଼େ ବଡ଼,
ଅନ ମୁକ୍ତ ହେଲେ କର୍ପା ଦନ୍ତ କଡ଼ମଡ଼ ?
ତୁମେ ଗ୍ଲ ତୁମ ପଥେ, ମୋ ପଥେ ମୁଁ ଚଳେଁ,
ତୁମ ପଥେ ଝାଣି କର୍ପା ବଳେ କର୍ତ୍ତଳେ ?
ଅଦୃଷ୍ଟ ଜୀବନ ପଥେ କଏ ଭଲ ହେଲ—
ସବୁର ଅଜ୍ଞାତ ! ସବେଁ ଖେଳେଁ ବ୍ୟୁଥ ଖେଳ।
କାଟିବ ଲାଙ୍ଗୁଳ ଅଜ ଡର ମୋ ମରଣ
କରବ ମୁଁ କସ କାଲ ହେଲେ ପ୍ରୟୋଜନ ?
ଲାଙ୍ଗୁଳ ଭୂଷିତ, ହୀନ, କେ ସତ୍ୟ ସାର୍ଥକ
ନୁହଁ ତୁମେ, ନୁହଇ ମୁଁ, କାଳ ବିଗ୍ତରକ।

[୧୯୩୮]



## ରକ୍ଷା-ପୂର୍ଣ୍ଣିମା

(ଯେବେ) ଅନ୍ଧାର ମରୁପଥେ ଭରମେ ଏକାକୀ,
ପରାଣର ବନ୍ଧୁ ହେ ଯେଜନାଯାଅ ଡାକି।
ମରୀଚିକା ପଛେ ଛୁଟି
ଚକ୍ଷୁ ମୋ ଗଲେ ଫୁଟି,
ବନ୍ଧୁ ! ଓଗାଡ଼ ପଥ ହେଜ ପ୍ରୀତି ଅଖି !
ଯେଜନାଯାଅ ଡାକି।
ହାଟ କୋଳାହଳେ ହେଲେ
ଶ୍ରବଣ ବଧିର,
ପରାଣ ଗୋପନ ପୁରେ
ଶୁଭୁ ପ୍ରୀତ ଚିର।

ସକଳ ହରଷେ ତୁମ—
କରୁଣ ରାଗିଣୀ,
ବଧୂର ପରାଣବଧୂ—
ଶତ ନେଇ କଣି ।
ମୋ କରୁଣ ଇତିହାସ
ନିତ କରେ ଉପହାସ !
ଚେତନା ମୋ ହେଲେ ଜଡ଼
ହଳାହଳ ଘୂର୍ଣ୍ଣି,
କୁଳିଶକଠୋର ସ୍ୱରେ
ଦେଉଥାଅ ଡାକ ।
ମୋ ଜଡ଼ତା ଅଭିମାନ
ହେଲେ ଯାଅ ଦୂର,
ମଳିନ ବାସନା ଆଶା
ଗଲେ ଦିଅ ଘୁଞ୍ଚି ।
ସକଳ ସ୍ୱପନ ମୋର
ଝଂଟିକାରେ ଉଡ଼ି
ଅନ୍ଧ-ଦୀନତା ଦନ୍ତୁଁ—
ଦନ ଯାଏଁ ଛୁଡ଼ି ।
ଜାଳ ଅଶେଷ ଦ୍ୱାର
ଗୌରବ ନାରଖାର
ବଇଧବ୍ୟ ମୋ ଲୋତକେ
ବାନ୍ଧ ହେ ରାଣି,
ଦେଉଥାଅ ଡାକ ।

[୧୯୩୮]



# ସ୍ତନ

୧—ଦେଖିଲି ଯୁଗଳ ସ୍ତନ, ସୌନ୍ଦର୍ଯ୍ୟ ଅତୁଳ !
ପ୍ରାଣ ପାରାବାରେ ଭାସେ ବେନି ପଦ୍ମ ଫୁଲ—
ଊଷାର ଅରୁଣ ସ୍ପର୍ଶେ ଅର୍ଦ୍ଧ ନିମୀଳିତ,
ଉତ୍ସାରିତ ଅବା ସୃଷ୍ଟି-ନିର୍ଝର-ସଙ୍ଗୀତ—
ପର୍ବତ ଗହ୍ୱରୁ ! କିଛି ନ ହୁଏ ସମଜ,
ମଙ୍ଗଲର ସ୍ୱପ୍ନେ ଚକ୍ଷୁ ବୁଜି ଯାଏ ହଜ ।
ଲକ୍ଷ କୋଟି ଅନାଗତ ଶିଶୁ-ସୃଷ୍ଟି-ଲାଗି
ପରମ ଜନନୀ ତୁମେ ରହିଛ ଗୋ ଜାଗି—
ବୁଭୁକ୍ଷୁ ଏ ସୃଷ୍ଟି କଣ୍ଠେ ଦେବ ବୋଲି ସ୍ତନ୍ୟ,
ଜନନୀର ବ୍ୟାକୁଳତା ଦେଖି ହେଲି ଧନ୍ୟ ।
ନୁହଇ ସେ ରକ୍ତମାଂସ ବାସନା ଇନ୍ଧନ,
କୋଟି ଯୁଗ ବ୍ୟାକୁଳତା ଅମୃତ ସ୍ପନ୍ଦନ ।
ମୋ ଜନନୀ-ସ୍ମୃତି କରେ ଶିର ଅବନତ,
ପ୍ରପଞ୍ଚ ଦଶଇ ଝଟେଣେ ପରମ ଶାଶ୍ୱତ !
—ହୁଅ ତୁମେ ଅନ ନେନେ ତରୁଣୀ ଷୋଡ଼ଶୀ,
ତାରୁଣ୍ୟର ଦର୍ପ ଦମ୍ଭ ପଛେ ପଡ଼ୁ ଖସି;
ଗୁହ୍ଣଁ ସେହ୍ନ ବକ୍ଷ ଶୋଭା ଲେଲିହ ରସନା,
ବିକୃତ ବାସନା ଶତ ବୁଝି କରୁ ବଣା ।
ତୁମେ ମୋର ନିତ୍ୟକାଳ ପରମ ଜନନୀ
ଉଦାର ଯେସନ ମୁକ୍ତ ଶ୍ୟାମଳ ଧରଣୀ !
ନିର୍ବିକାର-ଶୋଭା ସ୍ତୁହ୍ନଁ ମୋ ନେଏ ସଜଳ !
ଅମୃତ ଅଧାର ନୁହେଁ ଜୀବନ ଗରଳ !

ଯୁଗେ ଯୁଗେ ଅବତର ନାନା ରୂପ ଧରି
ଯୁଗେ ଯୁଗେ ସ୍ରବେ ସ୍ତନ ! କ୍ଷୀର ଜଠେ ଭରି—
ବୁଭୁକ୍ଷୁ ସନ୍ତାନ ଲାଗି ! କରୁଣା ଅପାର !
ପୁଣ୍ୟାଲୋକ-ଜ୍ୟୋତ୍ସ୍ନା-ବକ୍ଷେ କାହିଁ ଅନ୍ଧକାର ?
ନିତ୍ୟ ନବ ସୃଷ୍ଟିଲାଗି ଚିର ପୁରାତନ,
ସ୍ପୃହିତ ମଙ୍ଗଳ ଚିର ପ୍ରାଣାଧାର ସ୍ତନ ।

୩—ନୁହଁ ତୁମେ ପ୍ରଣୟିନୀ, ଅବା ସହଚରୀ;
ପରମ ଜନନୀ ତୁମେ ଶୁକ୍ଳା ବସ୍ତ୍ରବରୀ ।
ଶାନ୍ତ ସୌମ୍ୟ ସ୍ନିଗ୍ଧ ନେଇଁ ହୁଏ ପୁଷ୍ଟ ବୃଷ୍ଟି,
ଅପୂର୍ବ ସୁନ୍ଦର ତୁମେ ! ପୁଣି ଶିଶୁ ସୃଷ୍ଟି !
ମୁହୂର୍ତ୍ତକେ ହୁଏ ବେଣି ସ୍ତନ ସ୍ନେହେ ଜଠେ ସ୍ପୃହି
ଖସିପଡ଼େ ନେତ୍ରୁ ମାୟା-ବାସନାର-ଚୂଳି ।
ତା ତୁଲେ ସ୍ପୃହିଇ ମନେ ମୋର ଦିବ୍ୟଜ୍ଞାନ
ବିଶ୍ୱ ସ୍ତନ୍ୟଦାତ୍ରୀ ନାରୀ ! ଚିର ମହୀୟାନ ! *
ନେଇନ ମୋର ନମସ୍କାର ! ହୁଅ ପଛେ କ୍ଷୁଦ୍ର,
ନୁହେଁ ମୁଁ ଷଟ୍‌ପଦ, ନୁହେଁ ପୁଷ୍ପ-ପ୍ରୀତି-ଲୁବ୍ଧ ।
ଦୂର ପାନ୍ଥ ରୂପଲିପ୍ସୁ, ତୃଷାର୍ତ୍ତ ମୋ ପ୍ରାଣ !
ପରମ ଜନନୀରୂପ ଲଭିଛୁ ସନ୍ଧାନ !
ପଙ୍କେ ମୁଁ ଦେଖିଛୁ ପଦ୍ମ ! କି ଭୟ ଭାବନା ?
ଶିଶୁ ଅପରାଧ କ୍ଷମ କରିଛୁ ବନ୍ଦନା ।

—୧୯୮—

* "ମହୀୟସୀ" ବ୍ୟାକରଣ ପ୍ରସିଦ୍ଧ ।

# ପଞ୍ଚଶର

ପଞ୍ଚଶର ! ଜାଣ ନାହିଁ ଅଛି ଷଷ୍ଠ ଶର ?
ସେ ପରମ ଅସ୍ତ୍ର ତୁମ ତହୁଁ ତୀବ୍ରତର ।
ସେ ଅସ୍ତ୍ର ପ୍ରହାରେ ଖସେ ଜୀବନର ବ୍ୟାଧି
ଲଭେ ନିର୍ବିକଳ୍ପ ଆତ୍ମା ପରମ ସମାଧି ।
କେଉଁଠି ଗୂଢ଼ ରହସ୍ୟରେ ଭରେ ସନ୍ଧ୍ୟାନବ,
ନୋହି ଦାହ ବିଶ୍ୱ-ପ୍ରୀତି ପ୍ରାଣେ ଅନୁଭବ ।
ମୋହାବିଷ୍ଟ ହୁଏ ପ୍ରାଣ ପରମ ଅମୃତେ,
ପ୍ରୀତି-କୌମୁଦୀ-ପ୍ଳାବନ ବହି-ପ୍ରାଣେ ଗୁପ୍ତେ ।
ନୁହଇ ସେ ସ୍ୱାର୍ଥ ପ୍ରୀତି, ନାହିଁ ଅଶ୍ରୁବାରି,
ସେ ପ୍ରୀତି ପରଶେ ନର ଶୂନ୍ୟ ପଥଗ୍ରସ୍ତ ।
ଅମଳିନ ନିତ୍ୟ ଅଧରର ସ୍ମିତ ହାସ,
ପ୍ରାଣେ ଭରେ ନନ୍ଦନର କୁସୁମ ସୁବାସ ।
ଅନ୍ଧାରେ ଆଲୋକ ସୃଜେ ! ନ ଯାଏ ସେ ଦ୍ୱନ୍ଦ୍ୱ,
ମଧ୍ୟେ ଅଟକିଲେ ତୁମେ ପଥ ଦିଏ ବନ୍ଧ ।
ସେ ପୀରତି ଶରେ ସ୍ମର ହୋଇ ବିଦଗଧ *
ସେ ବଳେ ଜିଇଛ ପୁଣି ! ନୁହେ ସ୍ମୃତି ଲବ୍ଧ ?
ଏ ସୃଷ୍ଟି ରହସ୍ୟ ସେତ ଅତୁଳ ସମ୍ପତ୍ତି,
ତା ବିନେ ଏ ପଥିକର କାହିଁ ଦିବ୍ୟଗତି ?
ମଉଳଇ ତୁମ ଫୁଲ, ମ୍ଳାନ ସନ୍ଧ୍ୟାଲୋକ !
ତୃଷାର୍ତ୍ତ ଏ ମାନବର ମେଣ୍ଟିବ କେ ଶୋକ ?
ଭସ୍ମ ଅଙ୍ଗ କେ କରିବ ଜୀବନ ସଞ୍ଚାର ?
ନାରୀ ବେ ସମ୍ଭବ ସିନା ରତି-ଅଭିସାର ?

[୧୯୩୮]

* ହିନେନ୍ଦ୍ରଙ୍କର ତୃତୀୟ ନେତ୍ରର ଜ୍ୟୋତି ଜ୍ଞାନ ଓ ପ୍ରୀତି ମଣ୍ଡିତ ।

## ଶୂନ୍ୟବାଦ

ଗୋଟି ଗୋଟି ବୁଦ୍‌ବୁଦ ଭେଲା,
ଗଲ ଭାସି ଶୂନ୍ୟ ଆକାଶେ
କେତେ ଦୀପ ଗଲରେ ନିଭି
ଆଲୋକର କ୍ଷୀଣ ଆଭାସେ ।
ଯବାଧର କାଶ ହାସରେ
ତରୁଣ ପୀରତି ପ୍ରାସରେ
ମଞ୍ଜୁଲ ମଧୁମାସରେ
ଶୂନ୍ୟ ସ୍ତୁହେଁ କରୁଣ ହାସେ । ୧ ।

ଇନ୍ଦ୍ରଧନୁ ସପତ ରଙ୍ଗ,
ନବ ପ୍ରୀତି ଅଭେଦ ସଙ୍ଗ,
ଧୂଆଁ ହେଲ ଶୂନ୍ୟରେ ସବୁ
ସ୍ନୁହ ରହୁ ଅଉ କା ଆଶେ ? । ୨ ।
ଦେଖୁ ଯେତେ ତୁ ସ୍ୱପ୍ନ ବାଜି
ତୋ ପ୍ରୀତିରେ କେହୁ କି ରାଜି ?
ବୃଥା ହୃଦେ ଧରୁଛୁ ଠାଣି
ଦିନ ତୋର ଯାଏ ନିରାଶେ । ୩ ।

ତୁହୁ ଦୂର ସାଗର ନଦୀ
କୂଳେ କାଅଁ ହେଉରେ ଯଦି
ଅକୂଳ ତୁ ପତଙ୍ଗ ପ୍ରାୟେ
ମରିବାକୁ ଅନଳ ଧାସେ ।
ଗଲ ଭାସି ଶୂନ୍ୟ ଆକାଶେ । ୪ ।

[୧୯୩୯]



# * କିସ୍‌ସା ଗୌତମୀ

କହିଲେ କିସ୍‌ସା ଗୌତମୀ, "ପ୍ରଭୁ ! ଭ୍ରମିଲି ଲକ୍ଷ ଘର;
ମୁଠାଏ ତ ଦୂର, ସର୍ଷପ ଏକ ନୁହେଁ ସମ୍ଭବପର ।
ଯେତେ ଯାହିଁ ଗଲି ଅଶ୍ରୁର ଲୀଳା, ମୃତ୍ୟୁ ଅଟ୍ଟହାସ,
ଚୂର୍ଣ୍ଣ କଲା ମୋ କ୍ଷୁଦ୍ର ପରାଣି ପ୍ରସ୍ତର କଲା ଗ୍ରାସ ।
ଦେଖିଲି ସଦ୍ୟ-ସନ୍ତାନ-ହରା-ନୟନୁଁ ଶୁଷ୍କ ନୀର
ଚିରପ୍ରତିମା ସମାନ ଅଟଳ ! ସ୍ତନୁଁ ବହିଯାଏ କ୍ଷୀର !
ଖାଇବାର ଶିଶୁ ଶମଶାନ ପୁରୁଁ ବାହୁଡ଼ି ନ ଆସେ ଭୁଲି,
ଲହୁ ଧାର ପରି ବହେ କ୍ଷୀର ଧାର ଉଲ୍ଲାସେ ଖାଏ ଧୂଳି ।
ସଦ୍ୟ ବିଧବା ଷୋଡ଼ଶୀ ତରୁଣୀ ବର୍ଷେ ହୋଇନି ବିଭା,
ଉତ୍ସବ ବାଜା ନିଭିଛି କି ନାହିଁ ବାଡ଼ିରେ ରାବଇ ଶିବା ।
ଲିଭି ନ ଥିଲା ତା ଶିର-ସିନ୍ଦୂର ନୟନୁଁ କଜଳ ଗାର,
ଗଗନ ଭୂଧର ଭାଙ୍ଗି ପଡ଼ୁଥିଲା ଶୁଣି ତାର ହାହାକାର ।
ଅଶୀତି ବର୍ଷ ବୃଦ୍ଧା ଯୁଗଳ ନୟନକୁ ଦିଶେ ନାହିଁ
ଛାଡ଼ିଯାଇଥିଲେ ଏକ ପରେ ଆନ ଭର୍ତ୍ତା ପିଅର ଭାଇ ।
ଥିଲା ତା ମାତ୍ର ସମ୍ବଳ ଏକ ରାହୁ ପରି ଯୁବା ପୁଅ,
ଅଜ୍ଞାତେ କେବେ ଭସାଇ ନେଇଛି ଅକାଳ ମରଣ ସୁଅ ।
ଅନ୍ଧାଳି ହୁଏ କାହିଁ ଗଲା ତାର ଅନ୍ଧ ଲଉଡ଼ି ପରା,
କାହିଁ ତା ପୁତ୍ର ? ପଥର ଯଷ୍ଟି ? କେହି ଦିଏ ନାହିଁ ଧରା ।

* ବୌଦ୍ଧ ଜାତକରୁ ସଂଗୃହୀତ । ପୁତ୍ରବିରହ-ବିଧୁରା ଗୌତମୀ ବୁଦ୍ଧଙ୍କ ସମ୍ମୁଖରେ ପୁତ୍ରର ଜୀବନ ଭିକ୍ଷା କରିବା ଓ ତଥାଗତ ତାଙ୍କୁ ମୃତ୍ୟୁରହିତ ପରିବାରରୁ ସର୍ଷପ ସଂଗ୍ରହ କରିବା କଥା ସମସ୍ତଙ୍କର ସୁବିଦିତ । କିସ୍‌ସା (ପାଲି)=କୃଶା ବା କ୍ଲିଷ୍ଟା (ସଂ)

—ରଚୟିତା

ତାହାର ସାତୋଟି ସନ୍ତାନ ସବୁ ଗଲେ ଏକ ଏକ କରି
କୋଡ଼େ ବସି ଶିର, ଧାର୍ତ୍ତ ତା ବୁକୁ ଗର୍ବ ବେଦନା ସ୍ମରି ।
ଭର୍ତ୍ତା ତାହାର ପ୍ରବୋଧଇ ବସି 'ଭାଗ୍ୟେ ଯା ଥିଲା ହେଲା ।'
'ଭୁଲିଯାଅ ସଖି ! ଧିକ୍ ବିଧାତା ! କାହିଁକି ଜନ୍ମ ଦେଲା ?
ପୁଣି ପୁରାତନ—ଅନୁରାଗ ପ୍ରୀତି ସଞ୍ଚାର କରେ ବସି
ସାତ-ସନ୍ତାନ-ବିରହୀ-ଜନନୀ-ବେଦନା ପଡ଼ଇ ଖସି ।
ତୁହିଁ ସେ ଦେଖଇ ଯୌବନ-ରସ-ପାତ୍ର ହୋଇନି ଶେଷ
ନିଗାଡ଼ି ପିଇବ ବୋଲି ଧରେ ଅବା ନଭବ ଯାତନା କ୍ଳେଶ ।
କେ ପୁଣି ତରୁଣୀ ପ୍ରଥମ ଗର୍ଭ ହରାଇଗଲାଣି ଭୁଲି
ଅଧର-ନୟନ-ରଞ୍ଜନ-ଅଶେ ଅନୁରାଗେ ଧରେ ତୂଳି ।
ଦ୍ୱିତୀୟର ଲାଗି ପୂଜା-ଅରାଧନା-ମଣ୍ଡନ-ଅଭିସାର !
ନବଯୌବନ-ତୀବ୍ର-ରଭସେ ବିସ୍ମୃତ ହାହାକାର ।୩୦।
ବାରଚରି କେଶ, ଲାଗି ହୁଏ ପୁଣି କସ୍ତୁରୀ ଗୋରଚନା,
ପୁଚ୍ଛନ୍ତି ଉତ୍ସୁକେ ସନ୍ତାନ କଥା, କ୍ଷଣେ ହେଲା ବାଟବଣା !
ଦୀର୍ଘ ଶ୍ୱାସେ କହିଲା, "ଭଗିନି । ଅମର ଭାଗ୍ୟଦୋଷ,
ତୁମେ ଯା ଅମର କବା ହେବ କରି ତାହା ଲାଗି ଅବଶୋଷ?
ଛଅମାସ କାଳ ତା ପିଅର ମୁଖେ ଦେଲେ ନାହିଁ ପାଣି ଅନ୍ନ,
କଳା କାଠ ପରି ମଳିନ ଦଶିଲା ସ୍ୱର୍ଣ୍ଣ ସମାନ ବର୍ଣ୍ଣ !
କିଏ ବା ଶୁଣିଲା ? ପାଗଳ ପରି ଏ ଅହା ଯେତେ ହେଲେ ଝୁରି
କହିଲ ବୁଝାଇ "ଭାଗ୍ୟରେ ଥିଲେ କାଲି ଘର ଯିବ ପୂରି !"
ଦେଖିଲି ଏମନ ଘର ଘର ବୁଲି କେତେ ଛାୟାବାଜି-ଖେଳ,
କାହିଁ ବା ହୃଦୟ ସ୍ତବ୍‌ଧ କାତର କାହିଁ ବା ବାଜେ ଶେଳ ।
ମଦ୍ୟପ ସମ ମୃତ୍ୟୁକୁ ଭୁଲି କେବା ହସିଖେଳି ଗାଏ !
ଯୌବନ-ମଦେ-କ୍ଷଣିକ-ମତ୍ତ-ବିଭ୍ରମ-ଅଙ୍ଗ ଗୃହେ ।

ଛୁଞ୍ଚଗଲେ ନାଶ ବକଲେ କାନ୍ଦେ ଅସହାୟ ଶିଶୁ ସମ
ଏହୁ ତ ଜୀବନ ! ଶିବ ଅନନ୍ଦ ? ଏଥି ଅମୃତ ଭ୍ରମ ?
ସହୁହେବ ଶତ ସନ୍ତାନ-ଶୋକ ! ରହୁଥିବ ରହୁବ ପ୍ରାଣ !
ସକଳ ଶୋକରୁ ବଳି ଅସହ୍ୟ ଆତ୍ମାର ଅପମାନ !
ଲୋଡ଼ା ନାହିଁ ହୃତସନ୍ତାନ ପ୍ରଭୁ ! ମୋ ଭଳି ଛନ୍ତି ଶତ !
ଆତ୍ମାପମାନ-ଅଜ୍ଞାନ-ତମ୍ଭ କଢ଼ାଇ ନିଅ ହେ ପଥ ।
ଲୋଡ଼ା ନାହିଁ ମୋର ଭ୍ରମର ଚିକୁର, ନୟନ ଦୀପ୍ତି-ଛଟା,
ଜୀବ୍‌ ଏ ରୂପ ଅନଳରେ ପୋଡ଼ୁ ହୁଏଁ ଅପେ ହଟହଟା ।
ଅରୁଣ ଅଧର, ରମ୍ୟ ବକ୍ଷ, ରମଣୀସୁଲଭ ବ୍ରୀଡ଼ା !
ରହୁଁ ତା ମୃତ୍ୟୁ କଙ୍କାଳ ହସେ ! କୋଟି କୀଟ କରେ କ୍ରୀଡ଼ା !
ଦୁର୍ବହ ଶତ ରୂପ ମାଧୁର୍ଯ୍ୟ ରମଣୀ-ଗର୍ବ-ଧନ ।—
ଲୋଡ଼ା ନାହିଁ ପ୍ରଭୁ, ପଥ ଦିଅ କହୁ ! କଲି ପଦେ ଅର୍ପଣ ।

× × ×

ମନେ ବହସି ଉତ୍ତର କଲେ କାରୁଣିକ ତଥାଗତ
ଜାଣି ମୁଁ ଭଗିନି ପଠାଇଲି ତହିଁ ପାଇବ ଜୀବନ-ପଥ ।
ନୁହେଁ ମୁଁ ଦେବତା, ମାନବମାନ ! ରକ୍ତମାଂସ ଦେହ !
ମାନବ ପକ୍ଷେ ସମ୍ଭବ ଯାହା ଲଭିବ ଶାନ୍ତ ସ୍ନେହ ।
ଅବର୍‌ ଅଙ୍ଗେ ଚୈରିକ ବାସ ଲଭିବ ସ୍ଥବିର ସଙ୍ଗ,
ଦୁର୍ଦ୍ଦିନ ତମେ ବତାଇବ ପଥ ଅବିନଶ୍ୱର ସଂଘ ।

[୧୯୩୭]



## ଉମା

ଛବିଶ ବର୍ଷର ଉମା; ଛଅଟି ସନ୍ତାନ ।
ଧବା'ଙ୍କି କୋଳାହଳେ ଶୋଷୁଥାନ୍ତି ପ୍ରାଣ ।
କୋଟରେ ପଶିଛି ନେତ୍ର, ପାଣ୍ଡୁର ବଦନ,
ଶୀର୍ଣ୍ଣକାୟ, ରକ୍ତହୀନ, ଶିଥିଳ ଚରଣ;
କପୋଳର ଅସ୍ଥି ଦନ୍ତପନ୍ତି ହୁଏ ବାର,
ମରଣ ଗହ୍ୱରୁ ଅବା ଅସନ୍ତି ବାହାର ।
ଅର୍ଦ୍ଧେକ ଉପର କେଶ ହେଲାଣି ପଳିତ,
ନିର୍ଜୀବ ସେ ନାରୀ ! ତେଣୁ ହୁଏନି ବିଚଳିତ ।
ଛଅଟି ଅସ୍ମଜ ରକ୍ତମାଂସ ଯାନ୍ତି ଶୋଷି,
କାହାକୁ ଜଗତେ ଧନେ ନ କରେ ସେ ଦୋଷୀ ।
କୁକ୍କୁଟ ଶାବକ ସମ ରହୁଥାନ୍ତି ଘେରି
ଅଜୀବନ ବନ୍ଦୀ ପଦେ ସେ'ବା ଲୁହା ବେଢ଼ି !
ଭୋଜନ ଶୟନ ଲଗି ନ ଧଅନ୍ତି ତର,
ଘଟେ ଦୁର୍ଘଟଣା ହେଲେ କ୍ଷଣେକ ଅନ୍ତର ।
ଅସ୍ତବ୍ୟସ୍ତ କଲେ କେବେ ସନ୍ତାନ ତାହାର
ଗୋରୁ କୁକ୍କୁରରୁ ବଳି କରଇ ପ୍ରହାର ।
ଧବା'ଙ୍କି ବାକ୍ୟବାଣ, ଦଶନ କାମୁଡ଼ା,
ନିଖାଦରୁ ଚଢ଼ା ସ୍ୱରେ ଫୁଲେ ନାକ ପୁଡ଼ା ।
କାନ୍ଦିବାକୁ ନେହେ ଭଲେ ନ ଥାଏ ଲୋତକ,
ଦଣେ କ୍ଷଣଲଗି ରୁପ ଯେସନେ ଘାତକ !
ସ୍ୱାମୀ ମସିଜୀବୀ, ମାସେ ବେତନ ପ୍ଚାଳଶ,
ବାକ୍ୟ ରୁପ ବ୍ୟବହାରେ କଠୋର କୁଳଶ !

ଧରେ ନାହିଁ ମନ ତାର ଗୃହେ କଦାଚନ
ନିତ୍ୟ ନବ ଆନନ୍ଦର କରେ ଆୟୋଜନ ।
କର୍ମଶେଷେ ମଦ୍ୟପାନ ଯାଯାବର ଦୀକ୍ଷା,
ଅର୍ଦ୍ଧରାତ୍ରେ ଫେରି କରେ ସତୀତ୍ୱ ପରୀକ୍ଷା ।
ଅର୍ଦ୍ଧାଙ୍ଗିନୀ ଧର୍ମପତ୍ନୀ ମୁହେଁ ଦିଏ କାଳି
ଦୁର୍ବଳା ରମଣୀ ନିଏ ସକଳ ସମ୍ଭାଳି ।
କଣ୍ଠ ଆଭରଣ ତାର ପ୍ରହାର ଧିକ୍କାର,—
ସେ ଲଗି ସନ୍ତାନ ଦିଏ ସେହି ପୁରସ୍କାର ।

X X X

ଏହି ସେହି ଉମା !.............

ବୟସ ଦଶଟି ବରଷ,—

ଶିକ୍ଷା ରୂପେ ଗୁଣେ ଯେବା ଥିଲା ଆଦରଣ,
ଦକ୍ଷିଣେ ଗ୍ରାମେ ଶୁଭ ଉଚ୍ଚ ପରଶଂସା,
ନିଜ୍ଜଳ ମରୁଥିଲେ ତାରୁଣ୍ୟ ଲାଲସା—
ଦରଶନ ମାତ୍ର ଲାଗି ! ସେ ଉମା ଉତ୍ତମା-
ଆପଣା ରୂପର ଏକା ଥିଲା ସେ ଉପମା !
ଏ ସେହି ଚଞ୍ଚଳା ଉମା !......

ସା ନୟନ ଭଙ୍ଗୀ—

ଯାହିଁ ମୁଗ୍ଧ ହେଉଥିଲା କାନନ କୁରଙ୍ଗୀ !
ପ୍ରାଣଭରି ହାସ୍ୟେ ଲାସ୍ୟେ ତା ଗଣ୍ଡ ଛଟକେ—
ଲେଖନୀ ମୂନରେ କାବ୍ୟ କବିତା ଅଟକେ !
ଗନ୍ଧବହ ଥରୁଥିଲା ଦେହ ଗନ୍ଧେ ତାର,
ତା ଭାରତୀ ଢାଳୁଥିଲା ତାରୁଣ୍ୟ ଝଙ୍କାର ।
ଥୋପି ପଡୁଥିଲା ଜବା ଅଧରୁ ରକତ,
କୃତକୃତ୍ୟ କବି, ଶିଳ୍ପୀ, ପ୍ରେମିକ ଭକତ !

—୩୦୦